ଇତିହାସର ସମୀକ୍ଷା

ITIHASARA SAMIKSHYA




ଲେଖକ : ପ୍ରୀତୀଶ ଆଚାର୍ଯ୍ୟ

ଆଂଚଳିକ ଶିକ୍ଷା ପ୍ରତିଷ୍ଠାନ, ଭୁବନେଶ୍ୱର-୭୫୧୦୨୨

Written by : Pritish Achrya

Regional Institute of Education, Bhubaneswar-751022

ପ୍ରକାଶକ : ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ - ୭୫୩୦୦୨

Published by : ORISSA BOOK EMPORIUM, Cuttack-2

ପ୍ରଥମ ପ୍ରକାଶ : ଶ୍ରୀଗୁଣ୍ଡିଚା, ୨୦୦୭

1st Edition : Srigundicha, 2007

ପ୍ରଚ୍ଛଦ : ଚିତ୍ର ରଞ୍ଜନ ଜେନା

ଲିପି ସଂଯୋଜନା ଓ ମୁଦ୍ରଣ : **ଅଲ୍ଟ୍ରା ଇମ୍ପ୍ରେସନ୍**, ସୂତାହାଟ, କଟକ-୧

Type set & Printed at : Aultra Impression, Sutahat, Cuttack-1

ISBN : 81-8421-090-6

Price : **Rs.80.00**

# ଅଗ୍ରଲେଖ

ଅତୀତର ଘଟଣାଗୁଡ଼ିକୁ ନେଇ ଇତିହାସ । ଆଜି ଏହା କେବଳ ରାଜନୀତି, ରାଜବଂଶ ବା ରାଜା-ରାଜୁଡ଼ା ଯାଏଁ ଆଉ ସୀମିତ ନୁହେଁ । ଇତିହାସର ପରିଧି ଅତି ବ୍ୟାପକ ହୋଇଛି । ବ୍ୟକ୍ତିବିଶେଷ, ଶାସନକର୍ତ୍ତା, ଶାସନ ବ୍ୟବସ୍ଥା ଉପରେ ଗୁରୁତ୍ୱ ଦିଆନଯାଇ ଲୋକମାନଙ୍କ ଉପରେ ଇତିହାସରେ ଗୁରୁତ୍ୱ ଦିଆଯାଉଛି । ଇତିହାସ ଅଧ୍ୟୟନ କରିବା ନୀରସ ହୋଇପାରେ, କାହାପାଇଁ ବା ସୁଖପାଠ୍ୟ ହୋଇପାରେ; କିନ୍ତୁ ଇତିହାସ ଲେଖିବା ସହଜ ନୁହେଁ । ତାହା ମନଗଢ଼ା କାହାଣୀ ନୁହେଁ, ପୂରାପୂରି ତଥ୍ୟ ଆଧାରିତ । ସମୟ କ୍ରମ ଇତିହାସର ମେରୁଦଣ୍ଡ । ପୁରାତନ ଯୁଗର ଇତିହାସ ରଚନା ପାଇଁ ପ୍ରାଚୀନ ଅଭିଲେଖ । ମୁଦ୍ରା, ମୂର୍ତ୍ତି, ମନ୍ଦିର, ପ୍ରତ୍ନତାତ୍ତ୍ୱିକ ଅବଶେଷ ଆଦି ସ୍ରୋତ ସାମଗ୍ରୀ ହୁଏ । ମଧ୍ୟକାଳୀନ ଯୁଗର ଇତିହାସ ଅଭିଲେଖ, ସମକାଳୀନ ଗ୍ରନ୍ଥ, ପରିବ୍ରାଜକମାନଙ୍କ ବିବରଣୀ ଉପରେ ଆଧାରିତ । ଆଧୁନିକ ଯୁଗର ଇତିହାସ ଲେଖିବା ପାଇଁ ସରକାରୀ ନଥିପତ୍ର ରିପୋର୍ଟ, ସରକାରୀ ଓ ବେସରକାରୀ ଦସ୍ତାବେଜ ଉପରେ ଗୁରୁତ୍ୱ ଦିଆଯାଇଥାଏ । ବିଭିନ୍ନ ଉପାଦାନକୁ ବିଶ୍ଳେଷଣ କରି ଜଣେ ଗବେଷକ ନିଜ ଦୃଷ୍ଟିକୋଣରୁ ଇତିହାସ ଲେଖିଥାଏ । ଯେଉଁଠାରେ ତଥ୍ୟର ଅଭାବ ରହିଛି ସେ ‘‘ସମ୍ଭବତଃ’’ ‘ବୋଧ ହୁଏ’ ଆଦି ଶବ୍ଦ ବ୍ୟବହାର କରେ; କାରଣ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ତା’ ପାଖରେ ସଂପୂର୍ଣ୍ଣ ପ୍ରମାଣ ନାହିଁ । ଇତିହାସର ଲକ୍ଷ୍ୟ ହେଲା ସତ୍ୟର ଉଦ୍‌ଘାଟନ । ମିଛର ଏଠି ସ୍ଥାନ ରହିବା କଥା ନୁହେଁ; କିନ୍ତୁ ବେଳେବେଳେ ଇତିହାସ ଲେଖକ ପୂର୍ବାଗ୍ରହଗ୍ରସ୍ତ ହୋଇ ସତ୍ୟକୁ ପ୍ରକାଶ କରନ୍ତି ନାହିଁ । କୁହାଯାଏ ଭଗବାନ ବି ସତ୍ୟକୁ ବଦଳାଇ ପାରିବେ ନାହିଁ; କିନ୍ତୁ ଇତିହାସର ସତ୍ୟକୁ କେତେକ ଐତିହାସିକ ବଦଳାଇ ଦିଅନ୍ତି । ଧର୍ମ, ରାଜନୀତି, ଜାତୀୟବାଦୀ, ଆଞ୍ଚଳିକର ମନୋଭାବକୁ ନେଇ ଜଣେ ଜଣେ ଐତିହାସିକ ତାଙ୍କର ମତକୁ ଉପସ୍ଥାପନ କରିଥାନ୍ତି ଯେଉଁଥିରେ ତାଙ୍କର ସଂକୀର୍ଣ୍ଣ ଦୃଷ୍ଟିକୋଣ

ହିଁ ପ୍ରତିଫଳିତ ହୋଇଥାଏ । ତେଣୁ ସେହି ଇତିହାସ କଦାଚିତ୍ ନିରପେକ୍ଷ ବା ନିର୍ଭରଯୋଗ୍ୟ ଇତିହାସ ହୋଇ ନପାରେ । ମଣିଷ ମନରେ କୌତୂହଳ ବା ଜାଣିବାର ଇଚ୍ଛା ଥିବା ପର୍ଯ୍ୟନ୍ତ ଇତିହାସର ଉପାଦେୟତା ଓ ପ୍ରାସଙ୍ଗିକତା ରହିଥିବ । ଇତିହାସର ଶିକ୍ଷା ଅନ୍ୟ ଏକ ପ୍ରସଙ୍ଗ । ଅତୀତର ଭୁଲକୁ ଜାଣି ମଧ ବର୍ତ୍ତମାନକୁ ସୁଧାରିବା ପାଇଁ ବେଳେ ବେଳେ ପ୍ରୟାସ କରାଯାଏ ନାହିଁ । ତେଣୁ କୁହାଯାଏ ଇତିହାସର ମୂଲ୍ୟ ନାହିଁ । ଇତିହାସ କୌଣସି ଶିକ୍ଷା ଦିଏନାହିଁ । ସାଂପ୍ରତିକ ସମସ୍ୟାର ସମାଧାନ କରିବା ଇତିହାସ ଅଧ୍ୟୟନ କରିବାର ଲକ୍ଷ୍ୟ ନୁହେଁ । ସମୟ ବଦଳିବା ସାଂଗରେ ସମାଜରେ ନୂତନ ସମସ୍ୟା ଦେଖାଦିଏ । ତାକୁ ବୁଝିବାପାଇଁ ଐତିହାସିକ ପୃଷ୍ଠଭୂମି ସହ ପରିଚିତ ହେବା ଦରକାର । ତେଣୁ ଇତିହାସକୁ କେବେ ଉପେକ୍ଷା କରାଯାଇ ନପାରେ ।

ଅଧ୍ୟାପକ ଡକ୍ଟର ପ୍ରୀତୀଶ ଆଚାର୍ଯ୍ୟ 'ଇତିହାସର ସମୀକ୍ଷା' ନାମରେ ଏହି ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି । ପାଣ୍ଡୁଲିପିଟି ମତେ ପଢ଼ି ମତ ଦେବାପାଇଁ ଦେଲେ । ଏହି ପୁସ୍ତକଟି ତାଙ୍କର ୩୦ଟି ପ୍ରବନ୍ଧର ଏକ ସଂକଳନ । ପ୍ରତ୍ୟେକଟି ପ୍ରବନ୍ଧ ଇତିହାସ ଉପରେ ଆଧାରିତ । ପ୍ରଥମରେ ଦିଆଯାଇଥିବା ୮ଟି ପ୍ରବନ୍ଧରେ ଇତିହାସ ତତ୍ତ୍ୱ ସଂବଧରେ ଅତି ସରଳ ଭାଷାରେ ଆଲୋଚନା କରିଛନ୍ତି । କାହାରି ପାଇଁ ବୁଝିବା କାଠିକର ହେବନାହିଁ । ପୁସ୍ତକଟିର ନାମକରଣ କରିଛନ୍ତି 'ଇତିହାସର ସମୀକ୍ଷା' । ଇତିହାସ ତଥ୍ୟ ଆଧାରରେ ଲେଖାଯାଇଥିବାରୁ ସମୟ କ୍ରମେ ନୂତନ ତଥ୍ୟ ମିଳିଲେ ଐତିହାସିକର ଧାରଣା ବଦଳି ଯାଇଥାଏ । ତେଣୁ ଯଥାର୍ଥରେ କହିଛନ୍ତି ଯେ ଐତିହାସିକ ସିଦ୍ଧାନ୍ତ କେବେ ଅନ୍ତିମ ସତ୍ୟ ହୋଇ ନପାରେ । ତେଣୁ ଐତିହାସିକ ସିଦ୍ଧାନ୍ତକୁ ପୁନଃ ସମୀକ୍ଷା କରିବାକୁ ହେବ । ସମୀକ୍ଷା, ପୁନଃ ସମୀକ୍ଷା ତଥା ବସ୍ତୁନିଷ୍ଠ ଆଲୋଚନା ଆଦି ଐତିହାସିକ ସତ୍ୟକୁ ଜାଣିବା ପାଇଁ ସହାୟକ ହୋଇଥାଏ । ତେଣୁ କୌଣସି କଥା ବା ସତକୁ ସଂପୂର୍ଣ୍ଣ ସତ୍ୟ ବା ଅନ୍ତିମ କଥନ ବୋଲି ଗ୍ରହଣ ନକରି ଯୁକ୍ତି ବା ବିଶ୍ଳେଷଣ ପରେ ଗ୍ରହଣଯୋଗ୍ୟ କି ନୁହେଁ ତାହା ବିଚାର କରିବା ଉଚିତ । ସମୀକ୍ଷା ଓ ଯୁକ୍ତିନିଷ୍ଠ ଦୃଷ୍ଟିକୋଣ ଇତିହାସର ମୂଳ । ତେଣୁ ଇତିହାସରେ ସର୍ବଦା ସମୀକ୍ଷା ଓ ସମାଲୋଚନାର ଆବଶ୍ୟକତା ରହିଛି ।

ଅଧ୍ୟାପକ ଆଚାର୍ଯ୍ୟ ୧୮୫୭ ଗଣ ସଂଗ୍ରାମକୁ ଆଲୋଚନା କରି କହିଛନ୍ତି; ବିଦ୍ରୋହ ପରିବର୍ତ୍ତେ ତାକୁ 'ମହାସଂଗ୍ରାମ' ବୋଲି କହିବା ଉଚିତ ହେବ । ବିଦେଶୀ ଶାସନ ବିରୋଧରେ ଭାରତର ଗଣ ଅସନ୍ତୋଷର ଏହା ଏକ ପ୍ରତିଫଳନ ଥିଲା । ଯୁକ୍ତିଟି ମତେ ଗ୍ରହଣଯୋଗ୍ୟ ମନେହେଲା ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସଶସ୍ତ୍ର ସଂଗ୍ରାମର ଭୂମିକା ଦେଖାଇବା ପାଇଁ ସେ ଅହିଂସ ଓ ସହିଂସ ଆନ୍ଦୋଳନ ଉପରେ ଆଲୋଚନା କରିଛନ୍ତି । ଆଉରେଙ୍ଗଜେବ୍‌ଙ୍କର ଚରିତ୍ରର ଅନ୍ୟ ଦିଗ ଉପରେ ଆଲୋଚନା କରି ଏକାଧିକ ଦୃଷ୍ଟିକୋଣରୁ ଜଣେ ବ୍ୟକ୍ତି ବା ଘଟଣାକୁ ବିଚାର କରାଯାଇପାରେ ବୋଲି ସେ କହିଛନ୍ତି । ଏହା ଖୁବ୍ ଠିକ୍ କଥା । ପୁସ୍ତକରେ ବିଶିଷ୍ଟ ଇତିହାସ ପୁରୁଷ, ଗାନ୍ଧୀ ଗୋପବନ୍ଧୁଙ୍କ ସହିତ ପ୍ରଖ୍ୟାତ ସାହିତ୍ୟିକ ଫତୁରାନନ୍ଦ, ଶିକ୍ଷାବିତ୍ ସୂର୍ଯ୍ୟକାନ୍ତ ଦାସ, ସମାଜବାଦୀ କିଶନ ପଟ୍ଟନାୟକଙ୍କୁ ସ୍ଥାନ ଦେଇ ସେ ଯୁକ୍ତି ବାଢ଼ିଛନ୍ତି ଯେ ସମାଜର ସାମଗ୍ରିକ ନିର୍ମାଣରେ ପ୍ରତ୍ୟେକ ବର୍ଗର ଲୋକଙ୍କର ମହତ୍ୱପୂର୍ଣ୍ଣ ଭୂମିକା ରହିଛି । କାହାରିକୁ ଇତିହାସ ଅନ୍ୟମାନଙ୍କଠାରୁ ଅଧିକ 'ମୁଖ୍ୟ' ବା ଅଧିକ 'ଗୌଣ' ବୋଲି କହି ନପାରେ ।

ସବୁଠାରୁ ବଡ଼କଥା ହେଲା, ଅଧାପକ ଆଚାର୍ଯ୍ୟ ପୁସ୍ତକଟି ଓଡ଼ିଆ ଭାଷାରେ ଲେଖିଛନ୍ତି । ଇତିହାସ ବିଷୟକୁ ଅନେକ ନିବନ୍ଧ ମୁଖ୍ୟତଃ ଇଂରାଜୀ ଭାଷାରେ ପ୍ରକାଶିତ ହେଉଛି । ତେଣୁ ଗବେଷଣାଲବ୍ଧ ଜ୍ଞାନ ସାଧାରଣ ପାଠକଙ୍କ ପାଖରେ ପହଞ୍ଚି ପାରୁନାହିଁ । ଏହା ଖୁବ୍ ଦୁଃଖର କଥା । ଉଲ୍ଲେଖଯୋଗ୍ୟ ଯେ ମହାରାଷ୍ଟ୍ରରେ ରାଜୱ୍ୟାଡ଼େ ନାମକ ଜଣେ ବିଦ୍ୱାନ ବିଭିନ୍ନ ବୈଦେଶିକ ଭାଷାରେ ପାରଙ୍ଗମ ଥିଲେ ମଧ୍ୟ ସଂକଳ୍ପ କରିଥିଲେ ଯେ ସେ ନିଜ ମାତୃଭାଷା ମରାଠିରେ ଇତିହାସ ଲେଖିବେ । ଆଜିକାଲି ଓଡ଼ିଶାରେ ଓଡ଼ିଆ ଭାଷାରେ ଇତିହାସ ଲେଖିବା ବା ଇତିହାସ ସମ୍ବନ୍ଧରେ ଆଲୋଚନା କରିବା କ୍ୱଚିତ ଦେଖାଯାଏ । ଏହା ଆମ ବୁଦ୍ଧିଜୀବୀଙ୍କ ଦୁର୍ବଳତାକୁ ଦେଖାଏ । ଡକ୍ଟର ଆଚାର୍ଯ୍ୟଙ୍କର ଏହି ପ୍ରୟାସ ସେହି ଦୃଷ୍ଟିରୁ ନିଶ୍ଚିତ ରୂପେ ଅଭିନନ୍ଦନୀୟ । ସେ ଓଡ଼ିଆ ସାହିତ୍ୟରେ ଜଣେ ସୁପ୍ରତିଷ୍ଠିତ ଲେଖକ ହୋଇଥିବାରୁ ଏହି ପୁସ୍ତକଟି ସୁଖପାଠ୍ୟ

ହୋଇପାରିଛି । 'ଇତିହାସର ସମୀକ୍ଷା'ର ସରଳ ଭାଷା ଓ ଗଭୀର ଭାବ ଗୌରବ ବଢ଼ାଇ ଦେଇଛି । ତାଙ୍କର ଯୁକ୍ତିସିଦ୍ଧ ଦୃଷ୍ଟିକୋଣ ବାସ୍ତବିକ ପ୍ରଶଂସନୀୟ । ପୁସ୍ତକଟିକୁ ପଢ଼ିଲେ ବୁଝିହେବ ଯେ ଇତିହାସ ଆଦୌ ଘୋଷାପାଠ ନୁହେଁ; ବରଂ ଯୁକ୍ତିତର୍କର ପାଠ । ମୋର ଦୃଢ଼ ବିଶ୍ୱାସ 'ଇତିହାସର ସମୀକ୍ଷା' ଇତହାସ ସମ୍ବନ୍ଧରେ ନୂତନ ଦିଗନ୍ତ ଉନ୍ମୋଚନ କରିବା ସହିତ ଓଡ଼ିଆ ଭାଷା ସାହିତ୍ୟକୁ ସଂବୃଦ୍ଧ କରିବ । ତା'ଛଡ଼ା ଛାତ୍ର, ଗବେଷକ ଓ ସାଧାରଣ ପାଠକଙ୍କର ଏହା ଖୁବ୍ ଆଦରଲାଭ କରିବ । ନୂଆ ପାଠକକୁ ଏହା ଇତିହାସ ପଠନ ପ୍ରତି ଆଗ୍ରହୀ କରାଇବ ଏବଂ ଅନୁଭବୀ ଅଭିଜ୍ଞ ପାଠକକୁ ପଠିତ ଇତିହାସ ବିଷୟକ ପ୍ରସଙ୍ଗକୁ ଅନ୍ୟ ଏକ ଦୃଷ୍ଟିକୋଣରୁ ଦେଖିବାକୁ ପ୍ରରୋଚିତ କରିବ । ଡକ୍ଟର ଆଚାର୍ଯ୍ୟ ଯୁବକ ଲୋକ । ଓଡ଼ିଆ ଭାଷାରେ ଏହି ଧରଣର ଆହୁରି ଇତିହାସ ସଂବନ୍ଧୀୟ ପୁସ୍ତକ ମାନ ରଚନା କରି ଭବିଷ୍ୟତରେ ବ୍ୟାପକ ଇତିହାସ ଆଗ୍ରହୀ ଗୋଷ୍ଠୀଟିଏ ଗଢ଼ିବାରେ ସହାୟକ ହୁଅନ୍ତୁ- ଏହା ହିଁ ମୋର କାମନା ।

କରୁଣା ସାଗର ବେହେରା
ପୂର୍ବତନ ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ପ୍ରାକ୍ତନ କୁଳପତି ଫକୀରମୋହନ ବିଶ୍ୱବିଦ୍ୟାଳୟ,
ବାଲେଶ୍ୱର



# ମୁଖବନ୍ଧ

'ଇତିହାସ' ମାନେ ହେଲା ଅତୀତ ଓ ତା'ର ଅଧ୍ୟୟନ । ସୃଷ୍ଟିର ଆରମ୍ଭ କାଳରୁ ନେଇ ବିଗତ ଦିନ ଯାଏଁ ଯେଉଁ ବିସ୍ତୃତ ଅତୀତ, ସେ ସବୁଯାକ ଇତିହାସର ବିଷୟବସ୍ତୁ - ରାଜାଠାରୁ ପ୍ରଜା ଯାଏଁ, ଗଛଠାରୁ ଲତା ଯାଏଁ, ପୁଣି ପାଣିଠାରୁ ପବନ ଯାଏଁ । କେବଳ ରାଜାଙ୍କ ପରି ପ୍ରଭାବଶାଳୀ ଲୋକ ବା ମଣିଷ ପରି ପ୍ରଭାବଶାଳୀ ଜୀବ ଯାଏଁ ଇତିହାସର ପରିଧି ସୀମିତ ନୁହେଁ । ପାଣି ପବନର ବି ଯେହେତୁ ଅତୀତ ଅଛି, ଇତିହାସ ବି ଅଛି । ଏତେ ବିଶାଳ ପରିଧିର ଅତୀତକୁ ନିର୍ଦ୍ଦିଷ୍ଟ ସମୟର ବଂଧନୀ ମଧ୍ୟରେ ଖଣ୍ଡ ଖଣ୍ଡ କରି ନ ବାନ୍ଧିଲେ ଅତୀତର ବହୁଧା ଚରିତ୍ରକୁ ଚିହ୍ନି ହୁଏ ନାହିଁ । ଅତୀତ ଅବଶ୍ୟ ଗୋଟାଏ, ହେଲେ ତା' ଭିତରେ ଖଣ୍ଡମାନ ରହିଛି । ସେହି ଐକିକ ଖଣ୍ଡଗୁଡ଼ିକୁ ସମୟର ବଂଧନୀରେଁ ବାନ୍ଧିଲେ ଦେଖି ହୁଏ । ଠିକ୍ ସେମିତି ସ୍ଥାନର ଚୌହଦୀରେ ବି ସ୍ଥାପିତ କଲେ, ବୁଝିବା ସହଜ ହୁଏ । ସ୍ଥାନର ବନ୍ଧନୀରେ ଦେଖିଲେ ତାହା ଅମୁକ ଦେଶର ବା ଅମୁକ ରାଜ୍ୟର ଇତିହାସ ହୁଏ । ଠିକ୍ ସେମିତି ସମୟରଂ ବନ୍ଧନୀରେ ତାକୁ 'ପ୍ରାଚୀନ ଅତୀତ', ଅତି ପ୍ରାଚୀନ ଅତୀତ, ନିକଟ ଅତୀତ, ଆଦି କାଳାଂଶରେ ନାମିତ କରି ହୁଏ । ଇତିହାସର ଶବ୍ଦରେ ଅଭିବ୍ୟକ୍ତ କଲେ ସେ ହେବ 'ପ୍ରାଗ୍-ଐତିହାସିକ ଯୁଗ', 'ପୁରାତନ ଯୁଗ', 'ମଧ୍ୟ-କାଳୀନ ଯୁଗ', 'ବର୍ତ୍ତମାନ ଯୁଗ' ବା 'ସମସାମୟିକ ଯୁଗ' ବା ଆଉ କେଉଁ ଯୁଗ । ତାକୁ ଆହୁରି ସାନ ସାନ ଖଣ୍ଡରେ ଭାଗକଲେ, ଶତାବ୍ଦୀ, ଅର୍ଦ୍ଧ-ଶତାବ୍ଦୀ, ଦଶଂଧି, ବର୍ଷ, ମାସ ବା ତାରିଖ ଆଦି ଶବ୍ଦର ବ୍ୟବହାର କରିବାକୁ ହେବ । ଅତୀତକୁ ବୁଝିବାପାଇଁ ଆବଶ୍ୟକ ପଡୁଥିବା ଏହି 'ସମୟବୋଧ' ହେଲା ଇତିହାସର ଏକ ବିଶିଷ୍ଟ ଚରିତ୍ର । ଇତିହାସର ଅଧ୍ୟୟନରେ ତାକୁ ବାଦ ଦିଆଯାଇ ପାରେନା । ସାଂଗରେ ଏକଥା ମଧ୍ୟ ସତ ଯେ କେବଳ ଅନେକ ଗୁଡ଼ିଏ 'ତାରିଖ' ଏବଂ 'ମସିହା'କୁ ମୁଖସ୍ଥ କରିଦେଲେ ଇତିହାସ ଅଧ୍ୟୟନ ପୂରା ହୋଇଯାଏନା, ମନରେ ସମୟବୋଧ ଆସେନା ।

'ସମୟବୋଧ' ହେଲା ଏକ ସାଧାରଣ ବୁଦ୍ଧିର କଥା । ତାକୁ ଆୟତ୍ତ କରିବାକୁ ହେଲେ ମୋଟା ମୋଟା ଇତିହାସ ଗ୍ରନ୍ଥ ପଢ଼ିବାର ଦରକାର ପଡ଼େନା । ଆଦୌ ପାଠ ନ ପଢ଼ି ସୁଦ୍ଧା ଜଣେ ବ୍ୟକ୍ତିର ସମୟବୋଧ ରହିବା ଆଦୌ ଆଶ୍ଚର୍ଯ୍ୟଜନକ କଥା ନୁହେଁ । ଜେଜେମା' ସ୍କୁଲ, କଲେଜର ମୁହଁ ମାଡ଼ିନି, ଇତିହାସ ବହି ପଢ଼ିନି । ତା' ସତ୍ତ୍ୱେ ତା' ପେଡ଼ିର କାହାଣୀରେ ସମୟବୋଧ ଅନ୍ତର୍ନିହିତ

ହୋଇ ରହିଥାଏ । ତାକୁ ଜଣା ସମୟବୋଧ ବିନା ତା' କାହାଣୀର ମହତ୍ତ୍ୱ ବୁଝିହେବ ନାହିଁ । ତେଣୁ ନିଜର ଅସରା ପେଡ଼ିରୁ କାହାଣୀଟିଏ ଖୋଜି କହେ, 'ବହୁତ ଦିନ ତଳର କଥା । ଅମୁକ ରାଜ୍ୟରେ ଅମୁକ ନାମରେ ଜଣେ ରାଜା.... ।' କାଳ, ସ୍ଥାନ, ପାତ୍ର କେହି ବାଦ ପଡ଼ନ୍ତିନି ତା' ଗଢ଼ା କାହାଣୀରେ । ଜେଜେମା' ସ୍ଥାନରେ ଯେତେବେଳେ ଅତୀତର କାହାଣୀ କହିବାକୁ ଇତିହାସକାର ବସେ, ସେ କହେ 'ଅମୁକ ଶତାବ୍ଦୀରେ ବା ଖ୍ରୀଷ୍ଟାବ୍ଦରେ... ।' ବହୁତ ଦିନ ତଳ କଥା ବା ଖ୍ରୀଷ୍ଟାବ୍ଦର ଉଦ୍ଧରଣ ଏଠି ସମୟବୋଧକୁ ଦର୍ଶାଏ । ଘଟଣାଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟର ବନ୍ଧନୀ ମଧ୍ୟରେ ବାନ୍ଧି ରଖିବା ସକାଶେ ତା'ର ଉଦ୍ଧରଣ ହେଲା ଏକ ଆବଶ୍ୟକ । ଅନ୍ୟଥା ଇତିହାସ ତାର ମହତ୍ତ୍ୱ ହରାଇବ ।

ଯଦିଓ ଇତିହାସ ହେଲା ଅତୀତର ଏକ ସତ୍ୟ ଆଧାରିତ କାହାଣୀ (ଏବଂ ସେହି ମର୍ମରେ ଜେଜେମା'ର ମନଗଢ଼ା କାହାଣୀଠାରୁ ଭିନ୍ନ ।) ବର୍ତ୍ତମାନଠାରୁ ଏହା ଆଦୌ ବିଚ୍ଛିନ୍ନ ନୁହେଁ । ତେଣୁ, ଜେଜେମା' ପେଡ଼ିରେ ସମଗ୍ର ଅତୀତର କାହାଣୀ ଥାଏନା । ମନୋନୀତ କେତୋଟି ମାତ୍ର କାହାଣୀ ରହିଥାଏ । 'ଉପସ୍ଥିତ ସମୟ'ରେ ଦରକାର ମନେ ହେଉଥିବା କାହାଣୀଟିକୁ ସେ ଖୋଜି ବାହାର କରେ । ସାମନାରେ ବସିଥିବା ଶ୍ରୋତା, ଜେଜେମା'ର ମନରେ ଥିବା ସାମାଜିକ ମୂଲ୍ୟବୋଧ ଏବଂ ସ୍ଥାନୀୟ ପରିବେଶ ସମସ୍ତେ ମିଶି 'ଉପସ୍ଥିତି ସମୟ'ର ପରିଧି ନିରୂପଣ କରନ୍ତି । ଇତିହାସକାର ପାଇଁ ମଧ 'ଉପସ୍ଥିତ ସମୟ' ଇତିହାସର ବିଷୟ ନିର୍ବାଚନ କରେ । ଅର୍ଥାତ୍ ମୋଟ ଅତୀତରୁ ବର୍ତ୍ତମାନ ସମୟ ପାଇଁ ପ୍ରାସଂଗିକ ନିର୍ଦ୍ଦିଷ୍ଟ କେତୋଟି ଅତୀତର ଘଟଣାକୁ ନିର୍ବାଚିତ କରି ସେ ଲୋକଲୋଚନକୁ ଆଣେ । ଅର୍ଥାତ୍ 'ବର୍ତ୍ତମାନ' ସ୍ଥିର କରେ ଅତୀତର କେଉଁ ଘଟଣାଟିକୁ ମହତ୍ତ୍ୱ ଦିଆଯିବ । 'ଅତୀତ'ର ମୋଟ ପରିଧି ଯେହେତୁ ଅତ୍ୟନ୍ତ ବିଶାଳ, ବର୍ତ୍ତମାନ ନିମନ୍ତେ ପ୍ରାସଂଗିକ ବିଷୟ ନିର୍ବାଚନ କରିବା ହେଲା ଇତିହାସର ଏକ ବଡ଼ ଆବଶ୍ୟକତା । ଶ୍ରୋତାର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଯଦି ଜେଜେମା' ପେଡ଼ିରୁ ଗପ ନ ବାହାରେ, ତା' ଗପ ଶୁଣିବାରେ କାହାରି ମଜା ରହେନା । ଠିକ୍ ସେମିତି ବର୍ତ୍ତମାନକୁ ଦୃଷ୍ଟିରେ ନ ରଖି ଯଦି ଇତିହାସକାର ବିଷୟ ନିର୍ବାଚନ କରେ ନାହିଁ, ତା'ର ଗବେଷଣା, ତା'ର ଲେଖା ଇତିହାସ ପାଠକ ମନରେ ଆଗ୍ରହ ସୃଷ୍ଟି କରି ପାରେନା । ତେଣୁ, ଇତିହାସକାରର କାମ ହେଲା ବର୍ତ୍ତମାନକୁ ଠିକ୍ ରୂପେ ଚିହ୍ନିବା ଏବଂ ତଦ ଅନୁଯାୟୀ ଅତୀତକୁ ଅଣ୍ଡାଳିବା । ଆଜି ଆମେ ପ୍ରାଚୀନ ଭାରତରେ ରାଷ୍ଟ୍ରବାଦ ଖୋଜୁଛନ୍ତି, କାରଣ ବର୍ତ୍ତମାନରେ ରାଷ୍ଟ୍ରବାଦ ହେଲା ଏକ ଯୁଗାନ୍ତକାରୀ ବିଚାର । ଠିକ୍ ସେହିଭଳି ଆମେ

ଯେହେତୁ ସାଂପ୍ରତିକ ସମାଜରେ ସାଂପ୍ରଦାୟିକତାକୁ ନେଇ ଚିନ୍ତିତ, ତାକୁ ଚିହ୍ନିବା ପାଇଁ ଅତୀତକୁ ଗୋୟେଂଦା ପରି ଅଣ୍ଡାଳନ୍ତି । ଏହି ପରିପ୍ରେକ୍ଷୀରେ ଇତିହାସ ଅଧ୍ୟୟନରୁ 'ଭବିଷ୍ୟତ' ବି ବିଚ୍ଛିନ୍ନ ରହେନି, କାରଣ 'ବର୍ତ୍ତମାନ' ଦୃଷ୍ଟିରେ 'ଅତୀତ' ଉପରେ ଗୋୟେଂଦାଗିରି ପଛରେ ପ୍ରମୁଖ ଉଦ୍ଦେଶ୍ୟ ହୁଏ 'ଭବିଷ୍ୟତ'କୁ ସୁଖଦ, ସଂବୃଦ୍ଧ କରିବା । ଉଦ୍ଧୃତ ଉଦାହରଣରେ, ସାଂପ୍ରଦାୟିକତାର ବିଷଜ୍ୱାଳାରୁ ବିମୁକ୍ତ କରିବା । ଏହି ସୂତ୍ରରେ 'ଅତୀତ' 'ବର୍ତ୍ତମାନ' ଓ 'ଭବିଷ୍ୟତ' ତିନିହେଁ ଯୋଡ଼ାଯୋଡ଼ି ହୋଇ ରହିଥାନ୍ତି ଇତିହାସରେ । ପ୍ରାଚୀନ, ମଧ୍ୟକାଳୀନ ଓ ଆଧୁନିକ ନାଁରେ ଖଣ୍ଡଖଣ୍ଡ ହେଲା ପରେ ବି ଯେମିତି ତିନିହେଁ ମିଶାମିଶି ହୋଇ ରହନ୍ତି, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟ ସେମିତି ଗୋଟାଏ ଅପରର ପରିପୂରକ ହୋଇ ରହନ୍ତି । ସେହି ଦୃଷ୍ଟିରୁ ଇତିହାସକୁ ସମୟର ଏକ ସାମଗ୍ରିକ ଅଧ୍ୟୟନ ବୋଲି କହିଲେ ବିଶେଷ ଭୁଲ୍ ହେବାର ନାହିଁ । 'ସମୟ' ପରି 'ସ୍ଥାନ'ର ମଧ୍ୟ ଇତିହାସରେ ଘୋର ପ୍ରାଧାନ୍ୟ ରହିଛି । ସ୍ଥାନ ଆଧାରରେ ଇତିହାସ ଦେଶ ଇତିହାସ, ମହାଦେଶ ଇତିହାସ ବା ଗାଁ ଇତିହାସ ନାଁରେ ଭାଗ ହୁଏ । ଅନେକ ଗାଁ ଇତିହାସ ମିଶିଲେ ବିଶ୍ୱ ଇତିହାସ ହେବେ, ପୁଣି ଗାଁ ଇତିହାସକୁ ବିଶ୍ୱ ପରିପ୍ରେକ୍ଷୀରେ ଦେଖିବାର ଆବଶ୍ୟକତା ରହିଛି । ମଣିଷକୁ 'ରାଷ୍ଟ୍ର', 'ଅଞ୍ଚଳ'ର ପାଚେରୀ ମଧ୍ୟରେ ରୁଦ୍ଧ କରିଦେଲେ, 'ବିଶ୍ୱମାନବ'ର ପରିକଳ୍ପନା ଏକ 'ସ୍ୱପ୍ନବିଳାସ' ମାତ୍ର ହେବ ।

ଇତିହାସ ପାଠରୁ କାହାକୁ ଅବ୍ୟାହତି ମିଳି ନ ପାରେ । ଇତିହାସ ଗବେଷଣା ଆମର ନିଶା ହୋଇ ନ ପାରେ, ଇତିହାସର ଆଲୋଚନା ଆମର ପେଷା ହୋଇ ନ ପାରେ, ତା' ସତ୍ତ୍ୱେ ଡାକ୍ତର, ଇଂଜିନିୟର୍ ଠାରୁ ଆରମ୍ଭ କରି ଚାଷୀ, ମଜୁରିଆ ଯାଏଁ, ନିଜ ଅଲକ୍ଷ୍ୟରେ ହେଉ ପଛେ, ଇତିହାସ ପଢ଼ନ୍ତି, ଇତିହାସର ବ୍ୟବହାରିକ ଉପଯୋଗ କରନ୍ତି । ତେଣୁ ଡାକ୍ତର ପାଖକୁ ମୁଣ୍ଡବ୍ୟଥା ନେଇ ପହଂଚିଲେ, ଆଗ କରି ପଚାରନ୍ତି, କେବେଠାରୁ ହେଲା ମୁଣ୍ଡବ୍ୟଥା ? ଅର୍ଥାତ୍ ମୁଣ୍ଡ ବ୍ୟଥାର ଅତୀତରେ ଥିବା ଚେରକୁ ସେ ଖୋଜନ୍ତି । ରୋଗର ନିରାକରଣ ପାଇଁ ଚେରକୁ ଅଣ୍ଡାଳିବା ଏକ ବଡ଼ ଆବଶ୍ୟକତା । ଠିକ୍ ସେମିତି ଜମିରେ ବିହନ ବୁଣିବା ଆଗରୁ ଚାଷୀ ପରଖି ନିଏ ଗତବର୍ଷମାନଙ୍କରେ ସେହି ଜମିରେ କେଉଁ କିସମର ବିହନ ବୁଣା ହୋଇଥିଲା, ବା କେଉଁ ସମୟରେ ବୁଣା ହୋଇଥିଲା । ଅତୀତର ଏହି ଅଧ୍ୟୟନ ତା' ଚାଷକୁ ଯଥୋଚିତ କରେ । ଜଣେ ଚିନ୍ତକ ବ୍ୟକ୍ତି ଭାବରେ ଇତିହାସକାର ମଧ୍ୟ ସେମିତି ସାଂପ୍ରତିକ ସମୟରେ ସାମାଜିକ ସମସ୍ୟାର ସମାଧାନ କଳ୍ପେ ଇତିହାସ ଅଧ୍ୟୟନ

କରେ । ମୋଟ କଥା ହେଲା, ଇତିହାସକୁ ନେଇ ଏ ଯେଉଁ ଦୃଷ୍ଟିଭଙ୍ଗୀ, ତାକୁ ହୃଦୟଙ୍ଗମ କରି ପାରିଲେ ଇତିହାସ ପାଠ ବହି ଆମ ମନରେ ଡର ସୃଷ୍ଟି କରି ପାରେନା, ବରଂ ଆଗ୍ରହ ସୃଷ୍ଟି କରେ । ମନରେ ଆତ୍ମବିଶ୍ୱାସ ଜାତ ହୁଏ ଯେ, ଆମେ ସମସ୍ତେ– ଜେଜେମା'ଠାରୁ ଆରମ୍ଭ କରି ଡାକ୍ତର ଯାଏଁ– ଇତିହାସ ପଢ଼ନ୍ତି, ଇତିହାସର ଉପଯୋଗ କରନ୍ତି । ନିଜ ନିଜ ସ୍ତରରେ ନୂଆ ଇତିହାସ ସୃଷ୍ଟି କରନ୍ତି । ଇତିହାସକାର ଆମଠାରୁ 'ବଡ଼' ବା 'ଅଧିକ ଜ୍ଞାନୀ' ହୋଇ ନ ପାରେ । ସାମାଜିକ ସଂରଚନାରେ ଆମେ ସମସ୍ତେ 'ଇତିହାସ ପୁରୁଷ', କେହି କମ୍ ବା କେହି ବେଶି ନୁହନ୍ତି । ଅତୀତକୁ ନେଇ ଜିଜ୍ଞାସା ପାଳୁଥିବା ଐତିହାସିକ ମଧ୍ୟ ଆମ ଭଳି ଜଣେ ।

ଇତିହାସର ଏତେ ବେଶି ଆବଶ୍ୟକତା ରହିଥିବାର ଦାବି ଶୁଣିଲେ ଇତିହାସ ପାଠ ବହି ପଢୁଥିବା ସ୍କୁଲ ଛାତ୍ରଟି ହୁଏତ ଆମ କଥାକୁ ହସି ଉଡ଼େଇ ଦେଇ ପାରେ । କାରଣ ପାଠବହିର ଇତିହାସ ତାକୁ ଜୀବନ ଜୀଇଁବା ସକାଶେ ସେତେ ଉପଯୋଗୀ ମନେ ହୁଏନା । ସାମାଜିକ ଜୀବନର ତନ୍ତୁଗୁଡ଼ିକୁ ପରସ୍ପର ସାଙ୍ଗରେ ଯୋଡ଼ିବା ବେଳେ ତା' ଇତିହାସ ବହି ଥୋକମାଲ ଯୋଗାଇ ପାରେନା । ଇତିହାସ ତା' ପାଇଁ ଏକ ଘୋଷାପାଠ, 'ତାରିଖ', 'ନାଁ' ଏବଂ 'ଯାଗା'ର ଏକ ଅସରନ୍ତି ତାଲିକା । ସେହି 'ନାଁ'ଗୁଡ଼ିକ ପୁଣି ଏମିତି ରୂପରେ ଚର୍ଚ୍ଚିତ ଯେ, ସେମାନେ କେବେ ପାଠକ ଭଳି ହାଡ଼ ମାଂସଧାରୀ ମଣିଷ ଥିଲେ ବୋଲି ଅନୁମାନ କରି ହୁଏନା । ଏକା ମାତ୍ରାରେ 'ଯାଗାଗୁଡ଼ିକ' ମଧ୍ୟ ଅପରିଚିତ । ଜାଣି, ଛାତ୍ରର ନିଜ ଗାଁ, ନିଜ ଅଂଚଳ ଇତିହାସରେ କସ୍ମିନ୍‌କାଳେ ସ୍ଥାନିତ ହେବାର ଯୋଗ୍ୟତା ଲାଭ କରି ପାରିବେ ନାହିଁ । ଅର୍ଥାତ୍ ପାଠ ବହି ଓ ଜୀବନ ମଧ୍ୟରେ ଛାତ୍ରଟି ସଂବଂଧ ଦେଖି ପାରେନା ବୋଲି ଇତିହାସ ପାଠ ତା' ପାଇଁ ବୋଝ ହୁଏ । ଏସବୁ ସମସ୍ୟାକୁ ବାଦ ଦେଲା ପରେ ଆସେ ପାଠ ପରଷା ଯାଇଥିବା ଶୈଳୀର ସମସ୍ୟା । ଜେଜେମା' କାହାଣୀ ଭିତରେ ପିଲା ଯେଉଁ ମାତ୍ରାରେ ବୁଡ଼ି ରହନ୍ତି, ଇତିହାସ ପାଠ ବହି ତା'ର ଶତାଂଶ ବି ତାକୁ ନିଜ ଭିତରେ ସମାହିତ କରିପାରେନା । ଇତିହାସ ପାଠ ବହି ଶିକ୍ଷାର୍ଥୀ ଜୀବନରେ ଯଦି ବୋଝ ପ୍ରମାଣିତ ହୋଇଛି, ପ୍ରାପ୍ତ ବୟସରେ କି ତାହା ନୂଆ କରି ଆଗ୍ରହ ସୃଷ୍ଟି କରି ପାରିବ ? ଅର୍ଥାତ୍ ବହି ଓ ଜୀବନ ମଧ୍ୟରେ ଆମେ ସଂବଂଧ ଦେଖିପାରନ୍ତି ନି ବୋଲି ଇତିହାସ ସାମାଜିକ ପାଠ ନ ହୋଇ ସମାଜ ପାଇଁ ବୋଝ ହୋଇଯାଏ । ଅବଶ୍ୟ ଏହାର ବ୍ୟତିକ୍ରମ ବି ଅନେକ ସମୟରେ ଦେଖାଯାଏ । ସେହି ଶୃଙ୍ଖଳା ପାଠ ବହିରୁ ଛାତ୍ରଟିଏ ରସ କାଢ଼ି ନେଉଥିବାର ଦେଖାଯାଏ । ଅନ୍ୟଥା ଏବେ ସବୁ ଗମ୍ଭୀର ଇତିହାସ ଲେଖାଯାଇ ନଥାନ୍ତା, ଗବେଷଣା ସଂଭବ ହୋଇ ନଥାନ୍ତା ।

ଇତିହାସ ପାଠକୁ ନେଇ ଏ ଯେଉଁ ଅର୍ନ୍ତଦ୍ୱନ୍ଦ – ଆମେ ପ୍ରତ୍ୟେକେ ସ୍ୱଭାବତଃ ଜଣେ ଜଣେ ଇତିହାସସ୍ରଷ୍ଟା ଅଥଚ ଇତିହାସ ପାଠ ବହି ଦେଖିଲେ ଡର ମାଡ଼େ; ଆମେ ସମସ୍ତେ ନିଜ ନିଜ ସ୍ତରରେ ସ୍ୱଭାବତଃ ଇତିହାସର ଉପଯୋଗ କରନ୍ତି, ଅଥଚ ଇତିହାସ ବହି ଆମର ପେଡ଼ିରେ ସାଇତା ହୋଇ ରହେ, ଅସ୍ପୃଶ୍ୟ ହୁଏ, ଆମର ସମସ୍ତଙ୍କର ସମୟବୋଧ ରହିଛି, ଅଥଚ ଇତିହାସ ଆମ ପାଇଁ 'ତାରିଖ' ଓ 'ସନ୍'ର ଏକ ବିରକ୍ତିକର ଲମ୍ବା ତାଲିକା ଇତ୍ୟାଦି ଇତ୍ୟାଦି- ତାକୁ ଧ୍ୟାନରେ ରଖି ଏହି 'ଇତିହାସର ସମୀକ୍ଷା' ପାଣ୍ଡୁଲିପିଟିର ପରିକଳ୍ପନା କରାଯାଇଛି । ଏଥିରେ ଇତିହାସ ତତ୍ତ୍ୱକୁ ନେଇ କେତୋଟି ଆଲୋଚନା ରହିଛି । ରାଷ୍ଟ୍ର, ଅଂଚଳ ଓ ବିଶ୍ୱ ଇତିହାସରୁ କେତୋଟି ପ୍ରସଙ୍ଗ ରହିଛନ୍ତି । ଅତୀତ ଯେମିତି ଗୋଟାଏ, ବିଶ୍ୱମାନବ ବି ଜଣେ । ଅତୀତକୁ ଯେମିତି ପ୍ରାଚୀନ, ମଧ୍ୟକାଳୀନ, ଆଧୁନିକ ଆଦି କାଳଖଣ୍ଡର ଆଧାରରେ ଆମେ ଅଲଗା ଅଲଗା କରି ଦେଖନ୍ତି, ବିଶ୍ୱମାନବକୁ ସେମିତି 'ଦେଶ', 'ମହାଦେଶ' ଓ 'ଅଂଚଳ' ଆଧାରରେ ଦେଖିବାର ଆବଶ୍ୟକତା ପଡ଼େ । ହେଲେ ଏହାର ଅର୍ଥ ନୁହେଁ ଯେ ମଣିଷକୁ ରାଷ୍ଟ୍ର, ଅଞ୍ଚଳ ଆଦିର ଅଭେଦ୍ୟ ପାଚେରୀ ଭିତରେ ଅବରୁଦ୍ଧ କରି ଦିଆଯିବ, ବିଶ୍ୱ ଦୃଷ୍ଟିରୁ ତାକୁ ବଂଚିତ କରାଯିବ । ଅନେକ ଅଂଚଳର ଇତିହାସ ମିଶି ଯେମିତି 'ବିଶ୍ୱ ଇତିହାସ' ହୁଅନ୍ତି, ପ୍ରତ୍ୟେକ ଆଂଚଳିକ ଇତିହାସକୁ ସେମିତି ବିଶ୍ୱଦୃଷ୍ଟିରେ ଦେଖିବାର ଆବଶ୍ୟକତା ରହିଛି । ଏକ ସୀମିତ ଅଂଚଳ ମଧ୍ୟରେ ଅବରୁଦ୍ଧ ହୋଇ ରହିବା ଏବଂ ଗୋଟାଏ ନିର୍ଦ୍ଦିଷ୍ଟ ଜାତି ବା ଧର୍ମର ସୀମିତତା ମଧ୍ୟରେ ବାଂଧି ହୋଇ ଅନ୍ୟ ଜାତି, ଅନ୍ୟ ଧର୍ମ ପ୍ରତି ଅସୂୟାଭାବ ପ୍ରକଟ କରିବା ମଧ୍ୟରେ ବୋଧହୁଏ ବିଶେଷ ପାର୍ଥକ୍ୟ ନୁହେଁ । ଉଭୟେ ଏକ ମାତ୍ରାରେ ଅଯୌକ୍ତିକ ।

ପାଣ୍ଡୁଲିପିରେ କେତେଜଣ ଇତିହାସ ପୁରୁଷ ମଧ୍ୟ ସ୍ଥାନିତ । ତନ୍ମଧ୍ୟରେ 'ବିଶାଳକାୟ' ଇତିହାସ ପୁରୁଷ ଗାନ୍ଧି, ଗୋପବନ୍ଧୁ ଅଛନ୍ତି ତ ଅପେକ୍ଷାକୃତ 'ସାଧାରଣ ପୁରୁଷ' ଫତୁରାନନ୍ଦ, ସୂର୍ଯ୍ୟକାନ୍ତ ଦାସ ବି ଅଛନ୍ତି । ପ୍ରତ୍ୟେକ ଜଣେ ଜଣେ ସ୍ୱୟଂସଂପୂର୍ଣ୍ଣ ବ୍ୟକ୍ତିତ୍ୱ । ଏକ କାଳଖଣ୍ଡର ସାମଗ୍ରିକ ନିର୍ମାଣରେ କେହି କାହାରିଠାରୁ କମ୍ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରି ନାହାନ୍ତି । ମୋଚି, କମାର ବା ବଢ଼େଇ, ରୋଷେଇଆକୁ ପାଣ୍ଡୁଲିପିରେ ସ୍ଥାନ ଦେଇପାରିଥିଲେ ହୁଏତ ପାଣ୍ଡୁଲିପିଟି ଅଧିକ ବଳିଷ୍ଠ ହୋଇପାରିଥାନ୍ତା । ଠିକ୍ ସେମିତି ମଧ୍ୟକାଳୀନ ଭାରତ ଇତିହାସରେ 'ଖଳନାୟକ'ର ଭୂମିକା ପାଇଥିବା ଔରଙ୍ଗଜେବଙ୍କୁ ନେଇ ମଧ୍ୟ ଏକ ସଂକ୍ଷିପ୍ତ ଆଲୋଚନା ରହିଛି । ତାକୁ ରଖିବା ପଛରେ ଉଦ୍ଦେଶ୍ୟ ହେଲା ଯେ, ଔରଙ୍ଗଜେବ ପରି ଏକ ଚରିତ୍ରକୁ ମଧ୍ୟ ଏକାଧିକ ଦୃଷ୍ଟିକୋଣରୁ ଦେଖାଯାଇପାରେ । ହାଡ଼

ମାଂସଧାରୀ ମଣିଷ ଜଣେ ସେ । ସଦାବେଳେ ସେ 'ଖଳନାୟକ' ହୋଇ ନପାରନ୍ତି, ଯେମିତି ଆପାଦ ମସ୍ତକ କେହି 'ଆଦର୍ଶ ନାୟକ' ହୋଇ ନପାରେ । ବ୍ୟକ୍ତି ବିଶେଷଙ୍କୁ ନେଇ ଏହି ଆଲୋଚନା ଗୁଡ଼ିକ ଜୀବନୀ ଭିତ୍ତିକ ନୁହେଁ, ବରଂ ଏକ ଦୃଷ୍ଟିକୋଣକୁ ଇଙ୍ଗିତ କରେ ।

ପାଣ୍ଡୁଲିପିରେ ସ୍ଥାନିତ ପ୍ରସଙ୍ଗଗୁଡ଼ିକ ଇତିହାସର ମୋଟ ପ୍ରସଙ୍ଗରୁ ସାମାନ୍ୟ କେତୋଟି ମାତ୍ର । ଆମ ଦୃଷ୍ଟିରେ ଯଦି ଏହି ପ୍ରସଙ୍ଗମାନ ଚର୍ଚ୍ଚା ଯୋଗ୍ୟ, ପ୍ରମୁଖ, ଆଉ କାହା ପାଇଁ ଭିନ୍ନ କେତୋଟି ପ୍ରସଙ୍ଗ ପ୍ରମୁଖ ହେବାରେ କିଛି ଅସ୍ୱାଭିକତା ନାହିଁ । ପୁଣି ଏହି ପ୍ରସଙ୍ଗମାନଙ୍କୁ ଭିନ୍ନ ଦୃଷ୍ଟିରେ ମଧ୍ୟ ଦେଖାଯିବାରେ କିଛି ବିଚିତ୍ରତା ନାହିଁ । କୌଣସି ପ୍ରସଙ୍ଗକୁ ନେଇ ଏକାଧିକ ଦୃଷ୍ଟିକୋଣ ରହିବା ପ୍ରସଙ୍ଗଟିର ସ୍ୱାସ୍ଥ୍ୟପକ୍ଷେ ହିତକର କଥା । ମୋଟ ଇତିହାସକୁ ଜାଣିବାରେ, ବୁଝିବାରେ ଏହା ବାଧକ ନୁହେଁ, ବରଂ ସହାୟକ ହୁଏ । ଆଲୋଚ୍ୟ ପ୍ରସଙ୍ଗଗୁଡ଼ିକର ବହୁ ରୂପକୁ ଦେଖିବାରେ ଏହା ସାହାଯ୍ୟ କରିବ ।

ପୁଣି, ଇତିହାସର ଏହି ସମୀକ୍ଷାକୁ ନୂଆ କିସମର ଇତିହାସ ଗବେଷଣା ବୋଲି ଦାବି କରାଯାଇ ନ ପାରେ । ପାଣ୍ଡୁଲିପିରେ ସ୍ଥାନିତ ପ୍ରତ୍ୟେକଟି ପ୍ରସଙ୍ଗରେ ଅଧିକ ଯୁକ୍ତିନିଷ୍ଠ, ଅଧିକ ବସ୍ତୁନିଷ୍ଠ ଗବେଷଣାମାନ ପୂର୍ବରୁ ଦିଆହୋଇ ସାରିଛି । ପ୍ରଖ୍ୟାତ ନାଁ କରା ଐତିହାସିକମାନେ ସେସବୁକୁ ନେଇ ଗମ୍ଭୀର ଆଲୋଚନାମାନ କରି ସାରିଛନ୍ତି । ସେସବୁ ଗମ୍ଭୀର ଆଲୋଚନାର ଏକ ସରଳ ଉପସ୍ଥାନ ଭାବରେ ଯଦି ପାଣ୍ଡୁଲିପିଟିକୁ ଦେଖାଯାଏ, ତା' ବି ଲେଖକ ପାଇଁ ବଡ଼ କଥା ହେବ । ତା' ସତ୍ତ୍ୱେ ଏହିଭଳି ଏକ ସମୀକ୍ଷା ପୁସ୍ତକର ମହତ୍ତ୍ୱ ଆମ ସ୍ଥୂଳ ବୁଦ୍ଧିରେ ଊଣା ହେବ ନାହିଁ । ଗମ୍ଭୀର ଇତିହାସ ପାଠକ ପାଇଁ ଯଦି ଉଚ୍ଚାଙ୍ଗ ଗବେଷଣା ଓ ସମୀକ୍ଷାର ଆବଶ୍ୟକତା ରହିଛି, ସାଧାରଣ ପାଠକ ପାଇଁ ମଧ୍ୟ ଏହିଭଳି ଏକ ସାଧାରଣ ସମୀକ୍ଷାର ଆବଶ୍ୟକତା ରହିଛି । ବହୁ ସଂଖ୍ୟକ ସାଧାରଣ ସମୀକ୍ଷା ଓ ଆଲୋଚନା ବିନା ସମାଜରେ ଉଚ୍ଚାଙ୍ଗ ଗବେଷଣାର ଆଦର ସର୍ବଥା ଊଣା ହେବାର ଡର ରହିଥାଏ । ଏମିତିରେ ବି କୌଣସି ସମାଜରେ ସାଧାରଣ ପାଠକ କେବେ 'ସଂଖ୍ୟାଲଘୁ' ନୁହେଁ । ତେଣୁ, ତାକୁ ଲକ୍ଷ୍ୟରେ ରଖି କୌଣସି ପାଣ୍ଡୁଲିପିର ପରିକଳ୍ପନା କସ୍ମିନ୍‌କାଳେ ଅହେତୁକ ହୋଇନପାରେ ।

ପାଣ୍ଡୁଲିପିରେ ସ୍ଥାନିତ ସମୀକ୍ଷାଗୁଡ଼ିକ ପୁସ୍ତକ ଆକାରରେ ପ୍ରକାଶିତ ହେବା ଆଗରୁ ବିଭିନ୍ନ ପତ୍ର-ପତ୍ରିକାରେ ଛପା ହୋଇ ସାରିଛି । ବିଭିନ୍ନ ଆଲୋଚନା ସଭାରେ ମଧ୍ୟ କେତୋଟି ପ୍ରସଙ୍ଗର ବିସ୍ତୃତ ଚର୍ଚ୍ଚା ହୋଇଛି । ପାଠକ ଓ ଶ୍ରୋତାମାନଙ୍କର

ପ୍ରତିକ୍ରିୟାକୁ ଆଧାର କରି ଏବେ ପୁସ୍ତକ ଆକାରରେ ପ୍ରକାଶନ ବେଳେ ସେଗୁଡ଼ିକୁ ପରିପୁଷ୍ଟ କରିବାକୁ ଯତ୍‌ସାମାନ୍ୟ ପ୍ରୟାସ କରାଯାଇଛି । ପତ୍ରିକାରେ ପ୍ରକାଶନ ବେଳେ ମିଳୁଥିବା ସୀମିତ ସ୍ଥାନକୁ ନଜରରେ ରଖି ପ୍ରତ୍ୟେକ ଆଲୋଚନାର କଳେବର ନିରୂପିତ ହୋଇଛି । ବେଳେବେଳେ ମନେ ହୋଇଛି, ଆଉ ଟିକିଏ ଅଧିକ ସ୍ଥାନ ମିଳିଥିଲେ, ହୁଏତ ସମୀକ୍ଷାଟି ଅଧିକ ସ୍ପଷ୍ଟ ହୋଇଥାନ୍ତା । ସ୍ଥାନର ଅଭାବରେ 'ବିଚାରା'କୁ ଅଯଥା ସାନ କଳେବର ନେବାକୁ ପଡ଼ିଲା । ସାଂଗରେ ଏକଥା ବି ମନେ ହୋଇଛି ଯେ କେବଳ କଳେବର ବୃଦ୍ଧିରେ କାହାରି ମହତ୍ତ୍ୱ ବଢ଼ିଯାଏନା । ଢେଙ୍କେମା'ର ଗପ 'ଲମ୍ବା' ହେଲେ ଶ୍ରୋତାର ଧୈର୍ଯ୍ୟଚ୍ୟୁତି ଘଟେ । ଏହି ସୂତ୍ରରେ ପୁସ୍ତକଟିରେ ପ୍ରତ୍ୟେକ ଆଲୋଚନାକୁ ଯାହା ବା କଳେବର ମିଳିଛି– ତହିଁରେ ଆମର ଅସନ୍ତୁଷ୍ଟ ହେବାର ନାହିଁ । ପ୍ରସଙ୍ଗଟିକୁ ନେଇ ଏହା ଯେହେତୁ ଅନ୍ତିମ କଥନ ନୁହେଁ, ପାଠକ ଆଗକୁ ଅଧିକ ପଢ଼ିବ, ଅଧିକ ଜାଣିବ । ସେ ଦିଗରେ ପାଣ୍ଡୁଲିପିଟି ଏକ ସାମାନ୍ୟ ପ୍ରୟାସ ମାତ୍ର । କେବଳ 'ମେଦବୃଦ୍ଧି' ଦ୍ୱାରା ଅନ୍ୟର ଦୃଷ୍ଟି ଆକର୍ଷଣ କଲେ ପାଣ୍ଡୁଲିପିର ଉଦ୍ଦେଶ୍ୟ 'ପରାସ୍ତ' ହେବ- ଏଥିରେ ଦ୍ୱିରୁକ୍ତି ନାହିଁ ।

ଓଡ଼ିଆ ସାହିତ୍ୟରେ ଶବ୍ଦର ପ୍ରୟୋଗକୁ ନେଇ ଅନେକ କଟକଣା ରହିଛି । ସାହିତ୍ୟିକ ଯେଉଁ ଉଦାରତାର ସହ ଇଂରାଜୀ ଶବ୍ଦଗୁଡ଼ିକୁ ଗ୍ରହଣ କରନ୍ତି, ସେହି ଉଦାରତା ଅନ୍ୟ ଭାରତୀୟ ଭାଷାର ଶବ୍ଦମାନଙ୍କ ପ୍ରତି ପ୍ରାୟତଃ ଦେଖାଇ ପାରନ୍ତି ନାହିଁ । ବ୍ୟକ୍ତିଗତ ଭାବରେ ମୋର ସାମାଜିକ ପରିଧି ଓଡ଼ିଶା ବାହାରେ ହିନ୍ଦୀ ଯାଏଁ ରହିଛି । ତେଣୁ, ଅଭିବ୍ୟକ୍ତି ବେଳେ ଓଡ଼ିଆରେ ଶବ୍ଦ ନ ପାଇଲେ ସ୍ୱଭାବତଃ ମାନସିକ ସ୍ତରରେ ମୁଁ ହିନ୍ଦୀକୁ ଚାଲିଯାଏ । ଓଡ଼ିଆର ସମାନର୍ଥକ ଶବ୍ଦଟିଏ ଇଂରାଜୀରେ ଖୋଜିବା ଅପେକ୍ଷା ଆଉ ଏକ ଭାରତୀୟ ଭାଷା ହିନ୍ଦୀରେ ଖୋଜିବା ମତେ ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଏହାଦ୍ୱାରା ଓଡ଼ିଆ ଭାଷା ଭଣ୍ଡାର ଅଧିକ ସହଜରେ ବ୍ୟାପକ ହୋଇପାରିବ ବୋଲି ମୋର ଅନୁମାନ । ସେହି ସୂତ୍ରରେ ପୁସ୍ତକରେ କେତୋଟି ହିନ୍ଦୀ ଶବ୍ଦ ବି ରହିଛନ୍ତି । ମୋର ସାମାଜିକ ପରିଧି ଅନ୍ୟାନ୍ୟ ଭାରତୀୟ ଭାଷା ଯାଏଁ ରହିଥିଲେ, ଇଂରାଜୀ ବଦଳରେ ହୁଏତ ସେହି ଭାଷା-ସାହିତ୍ୟରୁ ମଧ ଶବ୍ଦ ଆଣିଥାନ୍ତି । ପ୍ରଦତ୍ତ ହିନ୍ଦୀ ଶବ୍ଦଗୁଡ଼ିକ ଓଡ଼ିଶାର ଲୌକିକ ସ୍ତରରେ ଅ-ପ୍ରଚଳିତ ନୁହଁନ୍ତି । ପୁଣି, ସେଗୁଡ଼ିକର ଓଡ଼ିଆ ପର୍ଯ୍ୟାୟବାଚୀ ଶବ୍ଦ ମୋତେ ମିଳିନି, ହେଲେ ଓଡ଼ିଆ ବିଦ୍ୱାନମାନଙ୍କୁ ସ୍ୱ-ଭାଷାରେ ହୁଏତ ମିଳିପାରେ । ତା' ସତ୍ତ୍ୱେ ଅନ୍ୟ ଭାରତୀୟ ଶବ୍ଦର ପ୍ରୟୋଗକୁ ନେଇ ମୋର ଯୁକ୍ତି ବୋଧହୁଏ ଅବାନ୍ତର ନୁହେଁ ।

ପାଣ୍ଡୁଲିପିର ପରିକଳ୍ପନାଠାରୁ ଆରମ୍ଭ କରି ପ୍ରକାଶନ ଯାଏଁ କେତେଜଣ ବନ୍ଧୁଙ୍କର ଅଦୃଷ୍ଟ ସହଯୋଗ ରହିଛି । ସାନଭାଇ ତୁଲ୍ୟ ସିଦ୍ଧାର୍ଥ ମହାପାତ୍ର ପାଣ୍ଡୁଲିପିରେ ସ୍ଥାନିତ ପ୍ରାୟ ଲେଖାକୁ ଭ୍ରୂଣ ଅବସ୍ଥାରେ ଦେଖିଛନ୍ତି । ନିଜର ଯୁକ୍ତି ବଳରେ ସଂବୃଦ୍ଧ କରିଛନ୍ତି, ଲେଖାଟିକୁ ଶେଷ କରିବା ପାଇଁ ତାଗିଦ କରିଛନ୍ତି, ତଥା ଅନେକଥର ଲେଖାର ଭାଷା-ସଂପାଦନା କରିଛନ୍ତି । ସାହିତ୍ୟିକ ଡ଼କ୍ଟର ବିଜୟାନନ୍ଦ ସିଂହ ଲେଖାଗୁଡ଼ିକ ପତ୍ରିକାରେ ପ୍ରକାଶିତ ହେଲା ପରେ ଅନେକଥର ମତାମତ ଦେଇଛନ୍ତି । ସେଗୁଡ଼ିକୁ ଆମୂଳଚୂଳ ପଢ଼ି ପାଣ୍ଡୁଲିପିଟିର ପରିକଳ୍ପନା କରିଛନ୍ତି, ତଥା ତା' ପାଇଁ ପ୍ରକାଶକ ଖୋଜିଛନ୍ତି । 'ଓଡ଼ିଶା ବୁକ୍ ଏମ୍ପୋରିୟମ୍'ର ଶିବାଶିଷ କର ମୋ ପାଇଁ ପୁସ୍ତକ ପ୍ରକାଶକ କମ୍ ଏବଂ ବନ୍ଧୁ ଅଧିକ । ଆହୁରି ଅନେକ ବନ୍ଧୁ ଅଛନ୍ତି, ଯେଉଁମାନେ ମୋର ପରିଚିତ ବୋଲି ମୋର ଲେଖା ଦେଖିଲେ ପଢ଼ନ୍ତି ଏବଂ ପଢ଼ିସାରି ମତାମତ ଦିଅନ୍ତି । ଅରୂପ ଅଭିଷେକ, କିଶୋର ମେହେର ହେଲେ ସେହିଭଳି ଜଣେ ଜଣେ ଅତି ଆଦରର ବଂଧୁ । ତାଙ୍କ ପରି ବନ୍ଧୁଙ୍କ ଯୋଗୁଁ ଅନେକ ଅପରିଚିତ ସ୍ଥାନରେ ପତ୍ରିକାରେ ପ୍ରକାଶିତ ଲେଖାଟି ମତେ ପରିଚିତ କରାଇଦିଏ । ସେତେବେଳେ ଛାତି କୁଣ୍ଢେ ମୋଟ ହେଇଯାଏ । ଲାଗେ, ଲେଖିବା ମୋର ସଫଳ ହେଲା । ଲାଗେ, ଲେଖା ଯୋଗୁଁ କାଗଜ, କାଳି ନଷ୍ଟ ହେବା ଜନିତ ସାମାଜିକ ଅପବ୍ୟୟ ସେତେବେଳେ ଭରଣା ହୋଇଗଲା । ଲେଖାଟିଏ ଲେଖି ଦୁନିଆଁକୁ ବଦଳେଇ ଦେବାର କୌଣସି ମହତ୍ତ୍ୱାକାଂକ୍ଷା ମୋର ନାହିଁ । ତା' ସତ୍ତ୍ୱେ, ଗୋଟାଏ ଲେଖାର ମାଧ୍ୟମରେ ଯଦି କେତେଜଣ ନୂଆ ସାଙ୍ଗ ମିଳିଗଲେ ଲେଖକ ପାଇଁ ତାହା ଖୁବ୍ ବଡ଼ ଉପଲବ୍ଧି ନିଶ୍ଚୟ । ଲେଖକର ସାନ ଦୁନିଆଁଟି ସେମାନଙ୍କ ସହ ବନ୍ଧୁତା ଆଧାରରେ ଅଚାନକ ବଡ଼ ହୋଇଯାଏ । ଏଥିରୁ ଅଧିକ କେଉଁରୂପେ ବା ସେମାନେ ଆଉଜଣକୁ ସାହାଯ୍ୟ କରିପାରିବେ ଯେ ! ଓଡ଼ିଆ ସାହିତ୍ୟ-ସେବାରେ 'ପଇସା' ନାହିଁ, 'ସମୟ' ନଷ୍ଟ ହୁଏ, ବାରଂବାର ପ୍ରକାଶକ-ସଂପାଦକଙ୍କ ପଛରେ ଆତ୍ମ-ସମ୍ମାନକୁ ଉପେକ୍ଷା କରି 'ଗୋଡ଼େଇବାକୁ ପଡ଼େ'- ହୁଏତ ଏହିସବୁ ଅଭିଯୋଗ ସତ ! ତା' ସତ୍ତ୍ୱେ ବୋଧହୁଏ ଏହି ଉପଲବ୍ଧି ଆଶାରେ ଲେଖକଟିଏ ଲେଖିବା ଛାଡ଼ିପାରେନା । ତା'ର ଆଶା, ଲେଖା ମାଧ୍ୟମରେ ସେ ଆହୁରି କେତେଜଣଙ୍କୁ ଭେଟିବ, ଆହୁରି କେତେ ଯାଗାକୁ ଜାଣିବ, ସମୟର ଆହୁରି ବ୍ୟାପକ ପରିଧିଟିକୁ ଅଣ୍ଡାଳି ପାରିବ । ପାଣ୍ଡୁଲିପିର ପ୍ରକାଶନ ଅବସରରେ ସେହି ସମସ୍ତ ବନ୍ଧୁଙ୍କୁ ମୁଁ ସ୍ମରଣ କରୁଛି, ସେମାନଙ୍କଠାରେ ବିନମ୍ର କୃତଜ୍ଞତା ଜଣାଉଛି ।

● ପ୍ରୀତୀଶ ଆଚାର୍ଯ୍ୟ

# ସୂଚୀ

ପୃଷ୍ଠା





# ଇତିହାସ ପାଠ କାହିଁକି ?

ସ୍କୁଲ ପଢ଼ା ବେଳର କଥା । ସମୟ ହେବ ଉଣେଇଶ ଶହ ସତୁରି ଦଶକ । ଇତିହାସ ବହିଟିଏ ଥାଏ, ତାର ପାଠମାନ ଇତିହାସ ପୁରୁଷମାନଙ୍କର ନାଁରେ ନାମିତ । 'ଅଶୋକ', 'ଖାରବେଳ', 'କନିଷ୍କ', 'ବାବର' ଓ 'ଆକବର' ପ୍ରମୁଖ । ଭାରତୀୟ ପ୍ରଶାସନିକ ଏବଂ ପୂର୍ତ୍ତ ବିଭାଗ ସ୍ଥାପନ କରିଥିଲେ ବୋଲି ଇଂରେଜ ବଡ଼ଲାଟ୍ 'ଲର୍ଡ୍ କର୍ଣ୍ଣୱାଲିସ୍'ଙ୍କ ନାମରେ ମଧ୍ୟ ଗୋଟାଏ ପାଠ, ପୁଣି ଅମାନୁଷିକ ସତିଦାହ ପ୍ରଥା ଲୋପ କରିଥିବାରୁ 'ଲର୍ଡ୍ ବେଣ୍ଟିକ୍'ଙ୍କ ନାମରେ ଗୋଟାଏ ପାଠ । ମୋର ଯାହା ମନେ ପଡ଼େ ମହାତ୍ମା ଗାଂଧିଂକ ନାଁରେ କୌଣସି ସ୍ୱତନ୍ତ୍ର ପାଠ ନ ଥିଲା, ଜାତୀୟ ପିତାଙ୍କୁ 'ଲର୍ଡ୍ ଇରୱିନ୍' ତଥା 'ଲର୍ଡ୍ ମାଉଣ୍ଟବେଟେନ୍' ପ୍ରମୁଖଙ୍କ ପାଠର ଅନୁଚ୍ଛେଦ ଭାବରେ ହିଁ ସନ୍ତୁଷ୍ଟ ରହିବାକୁ ପଡୁଥିଲା ।

ସେହି ଇତିହାସ ପାଠର ଲେଖକ କିଏ, ଆମେ ପିଲାମାନେ ଜାଣି ନଥିଲୁ, ଜାଣିବାକୁ ଆମର ଆଗ୍ରହ ବି ନଥିଲା । ଲେଖକ କେଉଁ ଉଦ୍ଦେଶ୍ୟରେ ସେହି ପାଠ ସବୁକୁ ଇତିହାସ ପାଠ୍ୟକ୍ରମରେ ସ୍ଥାନିତ କରିଥିଲେ ତା' ବି ଆମକୁ ଜଣା ନଥାଏ । ବହିରେ ଅଛି, ତେଣୁ ପଢ଼ିବୁ । ଶିକ୍ଷକଂକ ପଢ଼େଇବା ଯାଏ ବି ଅପେକ୍ଷା କରିବାର ନାହିଁ । ଖରାଛୁଟିରେ ଉପର ଶ୍ରେଣୀକୁ ଉନ୍ନୀତ ହେବା କ୍ଷଣି ଶ୍ରେଣୀ ଅତିକ୍ରମ କରି ସାରିଥିବା କୌଣସି ବଡ଼ ପିଲାର ପୁରୁଣା ବହି ସଂଗୃହୀତ ହେବ, ନୂଆ ମଲାଟ ଲାଗିବ, ତେଣିକି ଆଗରୁ ପଛକୁ କରି ପାଠଗୁଡ଼ିକ ଆମ ବ୍ୟକ୍ତିଗତ ସ୍ତରରେ ପଢ଼ା ହେବ । ଯା' ପରେ ଆମେ ଇତିହାସର 'ଜ୍ଞାତା' ଭାବରେ ନିଜକୁ ସ୍ଥାପିତ କରି ଇତିହାସ ଆଲୋଚନା କରିବୁ । 'ଅଶୋକଂକୁ କିଏ ନାପସଂଦ କଲାଣି ତ ଆଉ କିଏ କହୁଛି, ତା'ର ପ୍ରଥମ ପସଂଦ 'ନେପୋଲିୟନ୍' । ମନେ ହେଉଥିଲା ଇତିହାସ ମାନେ କେତେ ଜଣ ବ୍ୟକ୍ତିବିଶେଷ ମାତ୍ର । କେବଳ ସେମାନେ ବୋଧହୁଏ ଦେଶ, ସମାଜ ଓ ସଭ୍ୟତାର ଏକମାତ୍ର ନିର୍ମାତା । ଅତୀତରେ ଯାହା କିଛି ଗଠିତ ହୋଇଛି ସେସବୁ କେବଳ ସେମାନଙ୍କ ଯୋଗୁଁ । ଇତିହାସ ପାଠର ଶୀର୍ଷକ ଯେହେତୁ

ବ୍ୟକ୍ତିବିଶେଷଙ୍କ ନାଁରେ ପାଠକ ମନରେ ଏଭଳିଆ ଧାରଣା ସୃଷ୍ଟି ହେବା ସ୍ୱାଭାବିକ । ବ୍ୟକ୍ତି ସ୍ତରରୁ ଊର୍ଦ୍ଧ୍ୱରେ ରଖି ଇତିହାସର ପରିକଳ୍ପନା ଆମ ପକ୍ଷେ ଅସଂଭବ ଯେମିତି !

ସେ ତ ଗଲା ଶ୍ରେଣୀ ଭିତର କଥା । ଶ୍ରେଣୀ ବାହାରେ ଅର୍ଥାତ ସାଂଗ ଗହଣରେ ପୁଣି ପଡ଼େ ଇତିହାସ ଚରିତ୍ରଂକ କଥା । କିଏ କାହାର ଆଦର୍ଶ ପୁରୁଷ । ଅନେକ ସମୟରେ ଦଳଗତ ହୋଇ ଖେଳିଲାବେଳେ ମଧ୍ୟ ଦଳଗୁଡ଼ିକ ଇତିହାସ ପୁରୁଷଂକ ନାଁରେ ନାମିତ ହୁଅନ୍ତି । ମନେ ହେଉଥିଲା, ଆମେ ଯଦି ଖେଳ ଜିତିବା, ତା'ର ଶ୍ରେୟ ଯିବ ଆମ ଇତିହାସ ପୁରୁଷଙ୍କୁ । ସତେ ଯେମିତି ଫୁଟ୍‌ବଲ୍ ତ ନୁହେଁ, ଶିବାଜୀ କିଂବା ରାଣା ପ୍ରତାପଂକ ସୈନ୍ୟବାହିନୀର ଆମେ ଜଣେ ଜଣେ ସୈନିକ ଭାବରେ ସଂଗ୍ରାମରତ ! ଆମ ଆଦର୍ଶ ପୁରୁଷଂକ ସମ୍ମାନ ରକ୍ଷାର୍ଥେ ଅନ୍ତତଃ ଆମକୁ ଖେଳ ଜିଣିବାକୁ ପଡ଼ିବ ।

ବହିର ପାଠ ବା 'ଚେପଟର୍'ଗୁଡ଼ିକ ଲଂବା ନ ଥିଲେ, ଲେଖା ସାଂଗରେ ତହିଁରେ କଳା ଧଳା ରଂଗର କିଛି ଚିତ୍ର ବି ଥାଆନ୍ତି । ଚିତ୍ରରୁ ରେଜିଆ ସୁଲତାନା ଅନେକ ବଂଧୁଂକୁ ସୁଂଦରୀ ଦେଖାଯାଆନ୍ତି, ଯଦିଓ ତାଂକ ସୌଂଦର୍ଯ୍ୟକୁ ନେଇ ବହିରେ କାହିଁ କେଉଁଠି ଚର୍ଚ୍ଚା ନ ଥାଏ । ଅନ୍ୟ ପକ୍ଷରେ ମମତାଜ ମହଲଂକ ସଂବଂଧରେ ଲେଖାଥାଏ ଯେ ସେ କୁଆଡେ ଅପୂର୍ବ ସୁଂଦରୀ; ଯଦିଓ ପୁସ୍ତକରେ ସ୍ଥାନିତ ତାଂକ ଚିତ୍ର ଦେଖି ସେଭଳି କିଛି ମନରେ ଧାରଣା ହୁଏନା । ଅବଶ୍ୟ ଏମିତି କେତେଜଣ ସାଂଗ ବି ଥିଲେ ଯିଏ ମମତାଜଂକୁ ତାଂକ ଶାଶୂ ଓ ପିଇସୀ ନୁରଜାହାନଂକ ଅପେକ୍ଷା ଅଧିକ ସୁଂଦରୀ ମଣୁଥିଲେ ଏବଂ ଶ୍ରେଣୀର ସର୍ବାଧିକ ସୁଂଦରୀ ଝିଅକୁ ତା' ଅଗୋଚରରେ 'ମମତାଜ' ବୋଲି ନିଜ ସାଂଗ ମହଲରେ ନାମିତ କରିଥିଲେ । ଏତେ ସବୁ ଇତିହାସ ଚର୍ଚ୍ଚା ପାଇଁ ଜ୍ଞାନର ମୁଖ୍ୟ ସ୍ରୋତ ହୁଏ ପାଠବହି । ବହିରୁ 'କ୍ଲୁ' ନେଇ ଆମେ ଇତିହାସ ପୁରୁଷଂକର ବ୍ୟାପକ ପରିନିର୍ମାଣ କରୁ । ସପ୍ତାହକୁ ଇତିହାସ ପଢା ହୁଏ ମାତ୍ର ଦୁଇଟି ପିରିଅଡ୍; ତା'ର ଶିକ୍ଷକ କେହି ବି ହେଇପାରନ୍ତି କାରଣ ଗଣିତ ବା ବିଜ୍ଞାନ ବିଷୟ ପରି ଇତିହାସର କେହି ନିର୍ଦ୍ଦିଷ୍ଟ ଶିକ୍ଷକ ନାହାନ୍ତି । ଯିଏ ଚାହିଁବ ସେ ତାକୁ ପଢାଇ ପାରିବ – ଏହି ଆଧାରରେ ଚାଲେ ଇତିହାସ ପଢ଼ା ।  ପନିପରିବା ଭିତରେ ଆଳୁ ପରି ଯେକୌଣସି ଶିକ୍ଷକ ତାକୁ ପରିଚାଳିତ କରିପାରନ୍ତି । ଇତିହାସ ପ୍ରତି ଏତେ ସବୁ ଖାମଖିଆଲି ମନୋଭାବ ସତ୍ତ୍ୱେ, ସ୍କୁଲ ପାଠ ମଧ୍ୟରୁ ଯଦି କିଛି ଆମ ସାଂଗ ଗହଣରେ ଚର୍ଚ୍ଚାର ପରିସୀମାକୁ ଆସେ, ତେବେ ସେ ହୁଏ 'ଇତିହାସ' ଅର୍ଥାତ ଇତିହାସ ପୁରୁଷ; କାରଣ ଆମ ଦୃଷ୍ଟିରେ ଦୁଇଟି ଯାକ ଶବ୍ଦ ଅଲଗା ନୁହନ୍ତି ।

## କିଏ ଥିଲେ ଆମ ଇତିହାସ ପୁରୁଷ ?

ସେତେବେଳେ ଆମର ଜଣେ ସର୍ବମାନ୍ୟ ଇତିହାସ ପୁରୁଷ ଥିଲେ ସୁରେଂନ୍ଦ୍ର ସାଏ । ଊନବିଂଶ ଶତାବ୍ଦୀର ଏହି ମହାନ ଯୋଦ୍ଧାଂକର ନାଁ ଛଡା ଆଉ କିଛି ନ ଥାଏ ଇତିହାସର ପାଠ୍ୟପୁସ୍ତକରେ । ମହାନ ଯୋଦ୍ଧାଂକୁ ସ୍ଥାନ ଟିକିଏ ମିଳିଥାଏ ସାହିତ୍ୟ ବହିରେ । କଥୋପକଥନ ଶୈଳୀରେ ଜୀବନର ଶେଷ ସମୟରେ ସେ ନାଗପୁରର ଅସୁରଗଡ଼ ଜେଲରେ ଇଂରେଜ ଡାକ୍ତରଂକ ସାଂଗରେ ଯେଉଁ କଥାବାର୍ତ୍ତା କରିଥିଲେ, ତାହା ହିଁ ଥାଏ ବିଷୟବସ୍ତୁ । ପ୍ରାଥମିକ ଶିକ୍ଷା ସ୍ତରରେ କଥୋପକଥନର ଶୈଳୀ ଶିକ୍ଷା ଦେବା ଉଦ୍ଦେଶ୍ୟରେ ବୋଧହୁଏ ପାଠଟିକୁ ସ୍ଥାନିତ କରାଯାଇଥାଏ; ମାତ୍ର ତାହାରି ଆଧାରରେ ତଥା ଲୋକକଥା ଓ କିଂବଦନ୍ତୀ ଆଧାରରେ ଆମେ ସୁରେଂନ୍ଦ୍ର ସାଏଂକ ସଂବଂଧରେ ନୂଆ ଜ୍ଞାନ ସବୁ ସଂଗ୍ରହ କରିଥାଉ । ବିନା ମଂଚ ତଥା ବେଶପୋଷାକରେ ଆମେ କେତେଥର ତାକୁ ନାଟକର ପାଣ୍ଡୁଲିପି ରୂପେ ବ୍ୟବହାର କରି ଅଭିନୟ ବି କରିଥିଲୁ । ଦୀର୍ଘ ୩୭ ବର୍ଷ ଧରି ସୁରେଂନ୍ଦ୍ର ସାଏ ଜେଲରେ ଥିଲେ । ଜୀବନର ଶେଷ ଯାଏ ସଂବଲପୁରକୁ ଇଂରେଜମାନଂଙ୍କ କବଳରୁ ସ୍ୱାଧୀନ କରିବା ପାଇଁ ପ୍ରୟାସ କରିଥିଲେ । ଏହିଭଳି ଜଣେ ମାଟିର ପୂଜକଂକ ଜୀବନ ଓ ସଂଗ୍ରାମ ସହ ନିଜକୁ ଯୋଡିବାରେ ନାଟକଟିର ମଂଚନ ବେଶ୍ ସାହାଯ୍ୟ କରେ । ନ ହେଉ ପଛେ ଆଲୋକ ବା ମଂଚ ସଜ୍ଜା; ତଥାପି ସୁରେଂନ୍ଦ୍ର ସାଏଂକୁ ନିଜ ଆଦର୍ଶ ପୁରୁଷ ବୋଲି ଘୋଷଣା କରିବା ପାଇଁ ଆମେ ଛୁଆମାନେ ଆଉ ଅଧିକ କ'ଣ ବା କରିପାରନ୍ତୁ ?

ସୁରେଂନ୍ଦ୍ର ସାଏଂକୁ ନିଜର ଆଦର୍ଶପୁରୁଷ କହିବା ପଛରେ ତାଂକର ବ୍ରିଟିଶ ବିରୋଧୀ ସଂଗ୍ରାମ ତ ଏକ କାରଣ ନିଷ୍ଚୟ । ସାଂଗରେ ପଶ୍ଚିମ ଓଡ଼ିଶାର ସ୍ୱାଭିମାନର ପ୍ରଶ୍ନ ବି ଜଡ଼ିତ । ଲାଗେ, ତାଂକ ଯୋଗୁଁ ଆମେ ଗର୍ବରେ ମୁଣ୍ଡ ଟେକି ପାରୁଛୁଁ । ବ୍ୟକ୍ତିଗତ ସ୍ତରରେ ତ୍ୟାଗ ଓ ସ୍ୱାଭିମାନକୁ ଜୀବନର ମୂଳମନ୍ତ୍ର କରିବାକୁ ସେ ଯେମିତି ପରଲୋକରୁ ଆମକୁ ଉଦ୍‌ପ୍ରେରିତ କରୁଛନ୍ତି ! ମାତ୍ର, ତା'ଠାରୁ ବଡ଼ କଥା, ଘୋଡ଼ା ପିଠିରେ ବସି ଶତ୍ରୁ ବିରୁଦ୍ଧରେ ଲଢ଼େଇ ପାଇଁ ସଦା ଉଦ୍ୟତ ସୁରେଂନ୍ଦ୍ର ସାଏଂକର ମୋଟା ନିଶବାଲା ଛବି ଆମ ବାଳକ ମନରେ ବୀରତ୍ୱ ଓ ସାହସ ସହ ଗତିଶୀଳତାର ଭାବ ବି ଆଣିଦିଏ । ଘୋଡ଼ା ଚଢ଼ି ଯାଉଥିବା ସୁରେଂନ୍ଦ୍ର ସାଏଂକ ପରି ହେବି ବୋଲି କଳ୍ପନା କଲାବେଳେ ଲାଗେ ଯେମିତି ଛୁଆଟି ବସ୍ ବା ଟ୍ରକ୍‌ର ଡ୍ରାଇଭର ହେବା ପାଇଁ କାମନା କରୁଛି । ସ୍କୁଲ୍, ଘର, ପାଠବହି ମଧ୍ୟରେ ସ୍ଥାଣୁ ହୋଇଯାଇଥିବା ଜୀବନର ବିକଳ୍ପ ଭାବରେ ସୁରେଂନ୍ଦ୍ର ସାଏଂକର ଚଳଚଂଚଳତା ଆମ ଆଗକୁ ଆସେ, ଆମକୁ ବାଟ ଦେଖାଏ ।

ସ୍ଥାନୀୟ ବୀର ସୁରେନ୍ଦ୍ର ସାଏଂକ ସହ ତାଳ ଦେଇ ଆଉ ଯେଉଁ ଚରିତ୍ର ଜଣକ ଆମର ଆଦର୍ଶ ପୁରୁଷ ହୁଅନ୍ତି, ସେ ହେଲେ ସୁଭାଷ ବୋଷ । ଗାଁ ଗାଁରେ ତାଂକ ନାଁରେ କ୍ଲବ, ଯୁବକ ସଂଘ, ସ୍କୁଲ ଘର । ସ୍ଥାନୀୟ ନ ହୋଇ ସୁଦ୍ଧା ସେ କୌଣସି ସ୍ଥାନୀୟ 'ହିରୋ'ଠାରୁ କମ ମନ ଜିଣି ନାହାନ୍ତି । ଆମ ଗହଣରେ ତାଂକ ପକ୍କା ସମର୍ଥକମାନେ କହନ୍ତି, ସୁଭାଷ ବୋଷକଂର ସାହସ ଦେଖ, ଶକ୍ତି ଦେଖ । ବ୍ରିଟିଶ ଆଖିରେ ଧୂଳି ଦେଇ ପରା ସୁରେଂନ୍ଦ୍ର ସାଏ ବି ଜେଲରୁ ଖସି ପାରି ନଥିଲେ । ନୋହିଲେ ସୁଦୂର ଅସୁରଗଡ଼ ଜେଲରେ ତାଂକୁ ମୃତ୍ୟୁ ବରଣ କରିବାକୁ ପଡି ନ ଥାନ୍ତା । ହେଲେ ସୁଭାଷ ବୋଷ ଜେଲରୁ ଖସି ଆସିଲେ । କେବଳ ସେତିକି ନୁହେଁ, ଆମ ପାଇଁ ଏଇ ବରଗଡ ସହରକୁ ଯିବାରେ କେତେ ବାଧା ? ହେଲେ, ଇଂରେଜ ପୋଲିସକୁ ଚକମା ଦେଇ ସେ ସୁଦୂର ଜର୍ମାନୀ ଓ ଜାପାନ ଚାଲିଗଲେ । ବ୍ୟକ୍ତିଗତ ପ୍ରଚେଷ୍ଟାରେ 'ଆଜାଦ୍ ହିଂଦ୍ ସେନା' ଗଢ଼ି ଇଂରେଜ କବଳରୁ ଭାରତକୁ ମୁକ୍ତ କରିବାକୁ ବସିଥିଲେ । ଜାପାନୀମାନେ ତାଂକୁ ଉଡ଼ାଜାହାଜ ଦୁର୍ଘଟଣା କରି ମାରି ନ ଥିଲେ ସେ ତ ୧୯୪୭ର କେତେ ଆଗରୁ ଦେଶକୁ ସ୍ୱାଧୀନ କରି ଦେଇଥାନ୍ତେ !

ସୁଭାଷ ବୋଷଂକ ଶକ୍ତି ଓ ସାହସ ସାଂଗରେ ଆମ ପିଲାଂକ ଦୃଷ୍ଟିରେ ଆଉ ଏକ ବଡ଼ ଆକର୍ଷଣ ହେଲା ତାଂକ ମିଲେଟାରୀ ପୋଷାକବାଲା ଛବି । ପରିଧାନ ଯୋଗୁଁ ତାଂକ ଶକ୍ତି ବଢ଼ିଗଲା ପରି ଜଣାପଡ଼େ । ସାଂଗଂକ ମଧରେ 'ଧନୀ' ପିଲାଂକୁ ଆମେ ଅନୁରୋଧ କରୁଁ - ସୁଭାଷ ବୋଷଂକ ଭଳିଆ ମିଲେଟାରୀ ପୋଷାକ ହଳେ କିଣିକି ଆଣ, ତାପରେ ସୁଭାଷ ବୋଷର ନାଟକ ଖେଳିବା । ଲାଗେ, ମିଲେଟାରୀ ପୋଷାକ ନ ଥିବା ଯୋଗୁଁ ଯେମିତି ଆମେ ସବୁ ସୁଭାଷ ବୋଷ ହୋଇପାରିନୁ । ଆମର ସେହି ପିଲାଦୁନିଆଁରେ ସୁଭାଷ ବୋଷଂକ ପରି ଆଦର୍ଶ ଇତିହାସ ପୁରୁଷ ସାଂଗରେ ଯୋଡ଼ି ହେବା ପାଇଁ ପୋଷାକ ହିଁ ଏକମାତ୍ର ମାଧମ ହୁଏ ।

ଏହି ଦୁଇଜଣଂକୁ ଛାଡ଼ି ଆମ ପିଲା ମନରେ ଆଉ ଜଣେ ଯିଏ ରାଜୁତି କରନ୍ତି, ସେ ହେଲେ ଭଗତ ସିଂ । ସମସ୍ତଙ୍କର ହିରୋ । ସେ ସୁଦୂର ପଂଜାବର ହେବା ସତ୍ତ୍ୱେ ଆମର ସେହି ଓଡ଼ିଶାର ଗ୍ରାମୀଣ ପରିବେଶରେ ବି ତାଂକ ଲୋକପ୍ରିୟତା ଅନ୍ୟମାନଙ୍କଠାରୁ ଊଣା ନୁହେଁ । ଆମ ବଂଧୁଂକ ମଧରେ ଯେଉଁ କେତେ ଜଣ ଯୁକ୍ତି ଓ ବୁଦ୍ଧିମତ୍ତାରେ ଅଧିକ ଟାଣ, ତାଂକ ମତରେ ଭଗତ ସିଂକୁ ନେଇ ଇତିହାସ ବହିରେ ସ୍ୱତନ୍ତ୍ର ପାଠ ହେବା କଥା । ହେଲେ ତାହା ନାହିଁ କାରଣ ସରକାର ଚାହାନ୍ତି ନାହିଁ ଯେ ପିଲାଏ ତାଂକ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ ।

ପିଲାଂକ ମହଲରେ ଭଗତ ସିଂକ ଲୋକପ୍ରିୟତା ପଛରେ ସେତେବେଳେ ଦୁଇଟି ବଡ଼ କାରଣ ମୁଁ ଦେଖିପାରେ । ପ୍ରଥମ, ଭଗତ ସିଂ ଅତ୍ୟାଚାରୀ ଇଂରେଜ ଶାସନ ବିରୁଦ୍ଧରେ ପ୍ରତିଶୋଧ ନେଇ ପାରୁଥିଲେ । ନିଷ୍ଠୁର ପୋଲିସ ଅଧିକାରୀ 'ସାଣ୍ଡର୍ସ'କୁ ହତ୍ୟା କରି ସେ ଏହା ପ୍ରମାଣିତ କରି ଯାଇଛନ୍ତି । ଦ୍ୱିତୀୟ, ଦେଶ ମାତୃକା ପାଇଁ ସେ ସବୁ ପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ । ଚାହିଁଥିଲେ ହୁଏତ କେନ୍ଦ୍ର ଆସେମ୍ବ୍ଲି ହଲ୍‌ରେ ବୋମା ଫିଂଗି ସେ ପଳେଇ ଯାଇ ପାରିଥାନ୍ତେ; ମାତ୍ର ଜାଣିଶୁଣି ନିଜକୁ ଧରା ପକାଇଲେ । ଫାଶୀଖୁଣ୍ଟକୁ ଯିବାବେଳେ ତାଂକ ମନରେ ଆଦୌ ଭୟ ନ ଥିଲା । ସେହି ନିର୍ଭୟ ଭାବ ଏବଂ 'ସମୂହ' ସକାଶେ 'ବ୍ୟକ୍ତି'ର ତ୍ୟାଗ ଭାବ ଯୋଗୁଁ ଭଗତ ସିଂ କିଶୋର ବାଳକ ପାଇଁ ଆଦର୍ଶ ପୁରୁଷ । ଚିନ୍ତା ଓ ଚେତନା ସ୍ତରରେ ଆଜିର କିଶୋର ବି ଆଗଠାରୁ ଫରକ ନୁହେଁ । ତା' ସତ୍ତ୍ୱେ, ଯଦି ବାଳକଟିଏ ଆଜି ସାହସୀ ହୋଇ ପାରୁନି କିଂବା ସ୍ୱାର୍ଥ ତ୍ୟାଗ କରି ପାରୁନି - ତା' ପାଇଁ କ'ଣ ସବୁ କାରଣ ହୋଇପାରେ ତାହା ନିଶ୍ଚୟ ଅନୁଧ୍ୟାନର ବିଷୟ୍ !

ଏମାନଂକୁ ବାଦ ଦେଲେ, ଆଉ କେତେଜଣ ମହାପୁରୁଷ ମଧ୍ୟ ଚର୍ଚ୍ଚାର ପରିସରକୁ ଆସନ୍ତି । ହେଲେ, ବିଚାରେ ସର୍ବସମ୍ମତ ଭାବେ ଆମ ପିଲାଂକ ଆଦର୍ଶ ହୋଇପାରନ୍ତି ନାହିଁ । ଜଣଙ୍କର ନା ନ ନେଉଣୁ ଆଉ କେହି ସେହି ନାଁ ବିରୁଦ୍ଧରେ ପ୍ରତିଯୁକ୍ତି ବାଢ଼ିଲାଣି । ଲାଗେ, ଇତିହାସ ଚରିତ୍ର ତ ଏକ ବାହାନା ମାତ୍ର । ଆମେ ଇତିହାସ ଚର୍ଚ୍ଚାକୁ ମନୋରମ ଓ ସରଗରମ କରିବା ଲାଗି ନିଜ ନିଜ ଭିତରେ ଗୋଡ଼ ଟଣାଟଣି ହେଉଛନ୍ତି । ଆମ ଯୋଗୁଁ ମହାପୁରୁଷ ଜଣକ ଅଯଥା କାଠଗଡ଼ାରେ ଛିଡା ହେଉଛନ୍ତି । ପୁଣି ମନେହୁଏ, ଚର୍ଚ୍ଚାକୁ ଜୀବନ୍ତ କରିବା ସକାଶେ ଏଭଳି ହାରଜିତ, ଗୋଡ଼ଟଣାଟଣିର ବି ନିଶ୍ଚୟ ପ୍ରାସଂଗିକତା ରହିଛି । ଅନ୍ୟଥା, ଆମ ଇତିହାସ ଚର୍ଚ୍ଚା ପିଲାଂକ ଭିତରେ ମନୋରଞ୍ଜନର ମାଧ୍ୟମ ହୋଇ ପାରନ୍ତା ନାହିଁ, ଆମୋଦଦାୟୀ ହୁଅନ୍ତା ନାହିଁ । ଏହି ସୂତ୍ରରେ ଜାତିର ପିତା ମହାତ୍ମା ଗାଂଧିଂକ ଅନେକ ସମାଲୋଚକ; କାରଣ ସେ ମେଲା ଦେହରେ ବୁଲନ୍ତି । ତାଂକ ଆଦର୍ଶରେ ଅନୁପ୍ରାଣିତ ହୋଇ ପିଲାଏ ଯଦି ବିନା କୁରୁତାରେ ସ୍କୁଲ ଆସନ୍ତି, 'ଆଜ୍ଞା' କ'ଣ ଭଲ ପାଇବେ ? ଗାଂଧିଂକ ସମାଲୋଚକ ଦୃଢ଼ ଯୁକ୍ତି ବାଢ଼ନ୍ତି । ଅନ୍ୟ ପକ୍ଷରେ, ସରକାରୀ ସ୍ତରରେ 'ନେହେରୁଂକୁ 'ଚାଚାଜୀ' କୁହାଯିବା ସତ୍ତ୍ୱେ, ଜଣା କେତେ ସାଂଗ ତାଂକୁ ସମାଲୋଚନା କରନ୍ତି, କାରଣ ତାଂକର ମୁଣ୍ଡ ଚଂଦା । ନେହେରୁଂକୁ ଭଲ ପାଉଥିବା ଛାତ୍ରଂକୁ ସେମାନେ 'ଚଂଦାମୁଣ୍ଡିଆ' ବୋଲି ଚିଡ଼ାନ୍ତି । ବିଶ୍ୱକବି ଟାଗୋରଂକର ବି ଏକାଧିକ ସମାଲୋଚକ, କାରଣ ଦେଶର ସ୍ୱାଧୀନତା ପାଇଁ ଅନ୍ୟମାନେ ଯେତେବେଳେ

ଅନଶନ, ସତ୍ୟାଗ୍ରହ କଲେ, ସେ ଘରେ ବସି ଖାଲି କବିତା ଲେଖିଲେ । 'ଘରପୋଡ଼ି ବେଳେ ଯଦି ତୁମେ ଭଜନ କୀର୍ତ୍ତନ କରିବ, କିଏ ଆସି ନିଆଁ ଲିଭାଇବ ଯେ ?' ଗୁରୁଦେବଂକ କୁନି କୁନି ସମାଲୋଚକମାନେ ଯୁକ୍ତି ବାଢ଼ନ୍ତି ।

ଆମର ଏତେ ସବୁ 'ବୌଦ୍ଧିକ' ଚର୍ଚ୍ଚା, ଯୁକ୍ତି-ପ୍ରତିଯୁକ୍ତି ପଛରେ କୌଣସି ବିଶେଷ ଉଦ୍ଦେଶ୍ୟ ବା ହୀନ ଚକ୍ରାନ୍ତ ନ ଥାଏ; ଶିକ୍ଷକ କିଂବା 'ବଡ଼' ମାନଂକର ତାକୁ ନେଇ ସମର୍ଥନ ବା ବିରୋଧ ବି ନ ଥାଏ; ବରଂ 'ବଡ଼' ମାନଙ୍କର ସଂପୂର୍ଣ୍ଣ ଅଗୋଚରରେ ଆମ 'ସାନ' ଦୁନିଆଁରେ ରହି ଏକା ସେହି ଗରମାଗରମ ଚର୍ଚ୍ଚାର ପ୍ରାସଂଗିକତାକୁ ବୁଝି ହେବ । ଆଲୋଚନାବେଳେ 'ବଡ଼' କେହି ପ୍ରବେଶ କଲେ ଆମେ ଚୁପ ହୁଅନ୍ତି, ଚର୍ଚ୍ଚା ବନ୍ଦ ହୁଏ । ଆମକୁ ଜଣା ନାହିଁ, ଆମ ଇତିହାସ ଚର୍ଚ୍ଚା ଐତିହାସିକ ଦୃଷ୍ଟିରେ ଠିକ ରାସ୍ତାରେ ଯାଉଥାଏ ନା ନାହିଁ । ଇତିହାସଜ୍ଞାତା ଆମ ଚର୍ଚ୍ଚାକୁ ଅନୁମୋଦିତ କରିବେ ନା ନାହିଁ – ତା ବି ଆମେ କେବେ ଚିନ୍ତା କରିନୁ । ସତ କହିବାକୁ ଗଲେ ଆମେ ପିଲାଏ ସେମାନଙ୍କର ଦୁନିଆ ବାହାରେ, ଯେମିତି ସେମାନେ ଆମ ଦୁନିଆଁ ସଂପର୍କରେ ଅଜ୍ଞ । ବୟସ୍କ ବୁଦ୍ଧିଜୀବୀ କିଂବା ଇତିହାସଜ୍ଞାତା ଯଦି ନିଜ ଦୁନିଆରେ ରହି ସନ୍ତୁଷ୍ଟ, ଆମେ ମଧ୍ୟ ଆମ କିଶୋର ଜଗତରେ ଖୁସ । ଆମ ଦୁନିଆଁର ଆମେ ନିୟନ୍ତା ? ଆଜି ବଡ଼ ହେଲା ପରେ, ମୁଁ ଯେତେବେଳେ ପଛକୁ ଚାହେଁ, ଲାଗେ, କିଶୋର ଜଗତର ପରିନିର୍ମାଣରେ ଇତିହାସ ପାଠ ଯଦି କିଛି ଯୋଗଦାନ କରେ ସେ କି କମ୍ ଉପଲବ୍ଧିଟିଏ ? ପାଠର ବୋଝରୁ ସାମାନ୍ୟ ମୁକ୍ତି ପାଇବା ପାଇଁ, ଶିଶୁ ଜୀବନରେ ହସଖୁସି ଭରି ଦେବା ପାଇଁ ପାଠବହି ହେବା ସତ୍ତ୍ୱେ ଯଦି ଇତିହାସ ବହିଟି କିଛି ସହଯୋଗ କରେ, ସେ କି ବଡ଼ କଥା ନୁହେଁ ? ଗପଟିଏ, ସେ ଇତିହାସ ବହିରୁ ହେଉ ବା ଆଈ ମା କାହାଣୀ ପେଡ଼ିରୁ ହେଉ, ଯଦି ଶିଶୁଟିକୁ ସତେଜ ରଖିବାରେ ସହାୟକ ହୁଏ ତା'ର ଅଭାବ ଶିଶୁ ଜୀବନକୁ ଅସ୍ୱାଭାବିକ ଭାବରେ ଭାରାକ୍ରାନ୍ତ କରି ଦେବନି କି ?

ସେହି ପିଲାଦିନର ଅନେକ ସାଂଗ ବିଭିନ୍ନ କାରଣରୁ ସ୍କୁଲ ସାରିବା ଆଗରୁ ପଢ଼ା ଛାଡିଦେଲେ । ଭାଗ୍ୟବାନ କେତେଜଣ ସ୍କୁଲରୁ ଉନ୍ନୀତ ହୋଇ ବଡ଼ସ୍କୁଲ, କଲେଜକୁ ଗଲେ । ସେମାନଙ୍କ ମଧ୍ୟରୁ ପୁଣି କିଛି ଜଣ, ମୋ ଭଳି, ଇତିହାସ ପଢ଼ିଲେ, ଗବେଷଣା କଲେ । ସେ ବେଳର ଅନେକ କଥା ଆଜି ମନେ ପଡ଼ିଲେ ପିଲାଳିଆମୀ ମନେ ହୁଏ । ସେତେବେଳର ଛୁଆଳିଆ ଇତିହାସ ଚର୍ଚ୍ଚାକୁ ଏବେ ହସି ଉଡ଼େଇ ଦେବାକୁ ମନ ହୁଏ । ଆଜି ଇତିହାସର ଜଣେ ବୟସ୍କ ଛାତ୍ର ଭାବରେ ମୁଁ ଯୁକ୍ତି କରେ, ଇତିହାସ କେବଳ ହାତଗଣତା କିଛିଜଣ 'ନାୟକ' ଓ 'ଖଳନାୟକ'

ଦ୍ୱାରା ପରିନିର୍ମିତ ହୁଏ ନାହିଁ । ପ୍ରତିଟି ଐତିହାସିକ ଚରିତ୍ର ହେଲେ ଏକ ସାମାଜିକ ପ୍ରକ୍ରିୟାର ପରିଣାମ । ପାରିପାର୍ଶ୍ୱିକ ପରିବେଶ ହିଁ ବ୍ୟକ୍ତିକୁ ନିର୍ମାଣ କରେ; ଅର୍ଥାତ ପ୍ରତ୍ୟେକ ବ୍ୟକ୍ତି, କେବଳ ମହାପୁରୁଷ କାହିଁକି, ସମସ୍ତେ, ଇତିହାସର ପାଠ୍ୟ । ପୁଣି, ଜଣ ଜଣ କରି ପ୍ରତ୍ୟେକ ବ୍ୟକ୍ତିଙ୍କୁ ଅଧ୍ୟୟନ କରିବାଠାରୁ ସହଜ ହେବ ସାମାଜିକ ପ୍ରକ୍ରିୟାକୁ ସାମୂହିକ ରୂପରେ ଅଧ୍ୟୟନ କରିବା । କାର୍ଯ୍ୟ ଓ କାରଣ ମଧ୍ୟରେ ରହିଥିବା ସଂପର୍କର ଅଧ୍ୟୟନ ହିଁ ଇତିହାସ । ସେହି ଦୃଷ୍ଟିରୁ 'ଅତୀତ' ଯଦି କାରଣ ହୁଏ, 'ବର୍ତ୍ତମାନ', ହେବ କାର୍ଯ୍ୟ । ଫଳରେ ବର୍ତ୍ତମାନକୁ ବାଦ୍ ଦେଇ ଇତିହାସର ଅଧ୍ୟୟନ ସଂଭବ ନୁହେଁ । ଇତିହାସଜ୍ଞାତାମାନଂକ ଦ୍ୱାରା ପ୍ରଦତ୍ତ ଏହିସବୁ ଗୁଢ଼ ବିଚାରକୁ ମୋ ଭଳି ବୟସ୍କ ଇତିହାସ ପାଠକ ଆଜି ଯେତେବେଳେ ଗ୍ରହଣ କରନ୍ତି, ସେତେବେଳେ ଛୁଆବେଳର 'ଇତିହାସ ଖେଳ' ବାଧକ ହୁଏନା, ବରଂ ସହାୟକ ହୁଏ । 'ଇତିହାସ ଖେଳ' ପରବର୍ତ୍ତି ସମୟରେ ଆମ ମନରେ ଇତିହାସ ପାଠ ପ୍ରତି ଆଗ୍ରହ ସୃଷ୍ଟି କଲା କହିଲେ କ୍ଷତି ହେବ ନାହିଁ । ସେହି ଖେଳରେ ପରିପକ୍ୱତା ନ ଥିବା ସତ୍ତ୍ୱେ, ତାକୁ ମାଧ୍ୟମ କରି ଆମେ ନିଜ ଚାରି ପାଖର ଆଂଚଳିକ ପରିବେଶରୁ ବାହାରକୁ ଚାଲିଯାଇ ପାରୁଥିଲୁ, ସ୍ଥାନୀୟ ଇତିହାସ ଚରିତ୍ରକୁ ରାଷ୍ଟ୍ର ଓ ବିଶ୍ୱ ପରିପ୍ରେକ୍ଷୀରେ ମାପୁଥିଲୁ । ପୁଣି ଦୂର ରାଇଜର ଚରିତ୍ରକୁ ନିଜ ଆଂଚଳିକ ପରିପ୍ରେକ୍ଷୀରେ ଭିନ୍ନ ଭିନ୍ନ ରଂଗରେ ରଂଗାୟିତ କରୁଥିଲୁ । ମୋଟ ଉପରେ, ଆମ ଇତିହାସ ଚର୍ଚ୍ଚା ବା ଇତିହାସ ଖେଳ ଆମକୁ ରାଷ୍ଟ୍ର ଓ ବିଶ୍ୱ ସମାଜର ଅଂଗ ଭାବରେ ପରିଚିତି ଦେଉଥିଲା । ନିଜକୁ ଏକ ବୃହତ୍ତର ସମାଜ ସହ ଯୋଡ଼ିବା ନିମନ୍ତେ ଇତିହାସ ଜ୍ଞାନ ଏକ ମାଧ୍ୟମ ହେଉଥିଲା ।

ଦ୍ୱିତୀୟତଃ, ଆଜି ବୟସ ବଢ଼ିବା ସାଂଗରେ ମନରେ ଦ୍ୱଂଦ୍ୱ ଉଠେ - ଛୁଆମାନଂକର ଇତିହାସ ଚର୍ଚ୍ଚା ଠିକ, ନା ଇତିହାସଜ୍ଞାତାଂକର ଇତିହାସ ଗବେଷଣା ଠିକ ? ସଂଖ୍ୟା ଦୃଷ୍ଟିରୁ ତ ଛୁଆମାନେ ସଂଖ୍ୟାଗରିଷ୍ଠ । ତେବେ ସେମାନଙ୍କ ମନଗଢ଼ା କାହାଣୀ କାହିଁକି ଠିକ୍ ନ ହେବ ଯେ ? ତତ୍ତ୍ୱ ଦୃଷ୍ଟିରୁ ପୁଣି ପରିପକ୍ୱତା ଦେଖାଯାଏ ବୟସ୍କ ଇତିହାସଜ୍ଞାତାଂକ ବିଚାରରେ । ତାହା ଭୁଲ ହୋଇ ନ ପାରେ । ଦର୍ଶକର ଦୃଷ୍ଟି ଉପରେ ନିର୍ଭର କରେ କାହାକୁ ସୁଂଦର କୁହାଯିବ । ଠିକ ସେମିତି ଏକା ଜିନିଷକୁ ଭିନ୍ନ ଭିନ୍ନ ଦୃଷ୍ଟିରୁ ଦେଖିଲେ ଅଲଗା ଦେଖାଯିବା ସ୍ୱାଭାବିକ । ଖୋଲା ଆଖିରେ ଦେଖିଲେ ସୂର୍ଯ୍ୟ ପୂର୍ବ ଦିଗରେ ଉଦୟ ହୁଅନ୍ତି, ମାତ୍ର ବୈଜ୍ଞାନିକ ଦୃଷ୍ଟିରେ ସୂର୍ଯ୍ୟ କେବେ ଉଦୟ ବା ଅସ୍ତ ହୁଅନ୍ତି ନାହିଁ । ସ୍ଥିର ଅଚଳ ସେ । ଦୁଇଟି ପୃଥକ ଦୃଷ୍ଟିରୁ ଏହି ଦୁଇଟିଯାକ ବିପରିତ ସୂଚନା କଥା ଯଦି 'ସତ' ହୋଇପାରନ୍ତି,

ଇତିହାସରେ କୋଉ ସାତଟାକୁ ଆମେ ଗାର ଟାଣି କହିପାରିବା, ଏହା ହିଁ ଏକମାତ୍ର ଅକାଟ୍ୟ ସତ୍ୟ ? ଅନ୍ୟ ଅର୍ଥରେ କହିଲେ, ଇତିହାସ ଆମକୁ ସମାଜରେ ବିଦ୍ୟମାନ ଏକାଧିକ ଦୃଷ୍ଟିକୋଣ ସଂପର୍କରେ ଅବଗତ କରାଏ । ଫଳରେ ପ୍ରକୃତ ଇତିହାସ ଚର୍ଚ୍ଚା, ସେ ଛୁଆମାନଙ୍କର ହେଉ ବା ବଡ଼ ମାନଙ୍କର ହେଉ, ଶିକ୍ଷିତ ବର୍ଗକୁ କଳିଝଗଡ଼ା ଆଡ଼କୁ ଟାଣି ନିଏ ନାହିଁ, ବରଂ ତତ୍ତ୍ୱର ନିଗୁଢ଼ତାକୁ ବୁଝିବାରେ ସହାୟକ ହୁଏ । ମତପାର୍ଥକ୍ୟ ରହିବା ହେଲା ଏକ ସାମାଜିକ ବାସ୍ତବିକତା । ଯେମିତି ଦୁଇ ଜଣ ପରିପକ୍ୱ ଐତିହାସିକଂକ ମଧ୍ୟରେ ମତ ପାର୍ଥକ୍ୟ ରହେ, ଠିକ ସେମିତି ଛୁଆ ଓ ବୁଢ଼ାଂକ ମଧ୍ୟରେ ମଧ୍ୟ ତାହା ରହେ; ପତି-ପତ୍ନୀ ଭିତରେ, ଗୁରୁ-ଶିଷ୍ୟ ଭିତରେ, ଦୁଇଜଣ ଘନିଷ୍ଠ ସାଂଗ ଭିତରେ ବି ମତପାର୍ଥକ୍ୟ ରହିବା ସ୍ୱାଭାବିକ । ସେହି ସ୍ୱାଭାବିକତାକୁ ସ୍ୱୀକାର କରିନେଲେ ସମାଜ ଅଯଥା କଳହରୁ ରକ୍ଷା ପାଏ । ଏତେ ବଡ଼ ସାମାଜିକ ସତ୍ୟକୁ ବୁଝିବା ସକାଶେ ଯଦି ଇତିହାସ ପାଠ ଗୁଣ୍ଡୁଚିମୂଷା ତୁଲ୍ୟ ବି କାମରେ ଆସେ, ସେ କିଛି ସାନ କଥା ନୁହେଁ ।

ତୃତୀୟତଃ, ଇତିହାସ ପାଠ ସାମାଜିକ ବିବର୍ତ୍ତନକୁ ବୁଝିବା ସଙ୍ଗେ ସଙ୍ଗେ ଯଦି ଛୁଆଂକ ପାଇଁ ଖେଳ ହୋଇପାରେ, ତେବେ ତାର ଅବହେଳା କ'ଣ ଛୁଆର ସାମାଜିକ ଓ ମାନସିକ ବିକାଶରେ ବାଧା ପହଂଚାଇବ ନାହିଁ ? ସେହି ପରିପ୍ରେକ୍ଷୀରେ, କଂପ୍ୟୁଟର ବା ଇଂଜିନିୟରିଂ ସାଂଗରେ ଛୁଆକୁ ଇତିହାସ ପଢ଼ାରୁ ବଂଚିତ କରିବାରେ କ'ଣ କିଛି ଯଥାର୍ଥତା ଅଛି ? ଇତିହାସ ତ ଏକ ଉଦାହରଣ ମାତ୍ର । ଭାଷା, ସାହିତ୍ୟ, ଭୂଗୋଳ ଆଦି କେତେ ବିଷୟ ଇତିହାସ ବହି ପରି ଅପଚରା ହେଇ ଆଜି ଅପଚରା ସ୍ତରକୁ ଖସି ଗଲଣି । ବଜାରରେ 'ଚାରଣି' 'ଆଠଣି' ପରି ସେମାନେ ଅଚଳ ପ୍ରାୟ ସ୍ଥିତିରେ ! କଂପ୍ୟୁଟର, ଇଂଜିନିୟରିଂ ତୁଳନାରେ ସେମାନଙ୍କର କାଟତି ନା ଅଭିଭାବକ ବୁଝନ୍ତି, ନା ବୁଝନ୍ତି ଶିକ୍ଷକ ! ଫଳତଃ ସରଳ, କୋମଳମତି ଶିଶୁଟିକୁ ଲାଗେ, କଂପ୍ୟୁଟର, ଇଂଜିନିୟରକୁ ଛାଡ଼ି ପାଠ୍ୟକ୍ରମରେ ଆଉ କିଛି ଅଲଗା ପାଠ ନାହିଁ । ପାଠର ଏ ଯେଉଁ ନୂଆ ପରିଭାଷା, ପରିପକ୍ୱ ବଡ଼ ମାନେ 'ଅପରିପକ୍ୱ' କିଶୋରମାନଙ୍କ ଦୁନିଆ ଉପରେ ଲଦି ଦେଉଛନ୍ତି, ସେ କି ଭଲ କଥା ? ଏହାଦ୍ୱାରା ଇତିହାସ ଭଳି ବିଷୟ ସବୁ ତ ଚାପି ହୋଇପଡ଼ିବେ; କିନ୍ତୁ ତା'ଠାରୁ ବଡ଼ କଥା ଛୁଆର ସ୍ୱାଭାବିକ ସାମାଜିକ ବିକାଶ ବି ବାଧାପ୍ରାପ୍ତ ହେବ— ଏଥିରେ ସଂଦେହ ନାହିଁ ।

❑❑

# ଇତିହାସର ଶିକ୍ଷା

ମଧ୍ୟକାଳୀନ ଯୁଗକୁ ଅଂଧକାରର ଯୁଗ ବୋଲି ମଧ୍ୟ କୁହାଯାଏ । ସାଂପ୍ରତିକ ସମାଜରେ ଯୁକ୍ତିନିଷ୍ଠତାର ଅଭାବ ରହିଲେ, ଯଥେଚ୍ଛାଚାର ବଢ଼ିଲେ ଆମେ କହୁ, ସମାଜ ମଧ୍ୟଯୁଗାଭିମୁଖୀ ହେଲା । ମଧ୍ୟଯୁଗ ଓ ଅନ୍ଧଯୁଗ ଦୁଇଟି ସମାନାର୍ଥକ ଶବ୍ଦ ଭଳି ବ୍ୟବହୃତ ହୁଅନ୍ତି । ସାଧାରଣତଃ ୟୁରୋପ ଇତିହାସକୁ ଭିତ୍ତିକରି ଏପରି ଆକ୍ଷେପ କରାଯାଏ । ଅନ୍ୟଥା କୌଣସି ସମାଜର ସମଗ୍ର କାଳଖଣ୍ଡକୁ ଅଂଧକାରମୟ କୁହାଯାଇ ନପାରେ; ତଥାପି ଏକଥା ଅନସ୍ୱୀକାର୍ଯ୍ୟ ଯେ ମଧ୍ୟଯୁଗୀୟ ୟୁରୋପରେ ଏଭଳି ଅନେକ ଅଘଟଣ ଘଟିଛି ଯାହା କେବେ ଯୁକ୍ତିସିଦ୍ଧ ହୋଇନପାରେ ।

ମଧ୍ୟଯୁଗୀୟ ୟୁରୋପର ଏକ ଅଯୌକ୍ତିକ, ଅନ୍ଧକାରପୂର୍ଣ୍ଣ ଅଘଟଣ ହେଲା ଧାର୍ମିକ ଅସହିଷ୍ଣୁ ଭାବ ବା ଅସଦ୍‌ଭାବ । ଏହା ଉଗ୍ରରୂପ ନେଲା ଷୋଡ଼ଶ ଶତାବ୍ଦୀରେ ଯେତେବେଳେ ସମାଜରେ ପ୍ରୋଟେଷ୍ଟାଣ୍ଟ ଧର୍ମ ସଂସ୍କାର ଆନ୍ଦୋଳନର ମୂଳଦୁଆ ପଡ଼ିଲା । ପୋପ୍‌ଙ୍କର ଯଥେଚ୍ଛାଚାର ବିରୋଧରେ ମାର୍ଟିନ ଲୁଥର ଜର୍ମାନୀରେ ଧର୍ମ ସଂସ୍କାର ଆନ୍ଦୋଳନ ଆରମ୍ଭ କଲେ । କ୍ରମଶଃ ଏହା ଭିନ୍ନ ଭିନ୍ନ ରୂପରେ ଇଂଲଣ୍ଡ, ସୁଇଜରଲ୍ୟାଣ୍ଡ ଆଦି ଦେଶକୁ ବ୍ୟାପିଲା । ଫଳତଃ ଖ୍ରୀଷ୍ଟଧର୍ମ ଦୁଇ ଭାଗରେ ବିଭକ୍ତ ହେଲା — କେଥୋଲିକ ଖ୍ରୀଷ୍ଟଧର୍ମ ଓ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟଧର୍ମ । ପ୍ରୋଟେଷ୍ଟାଣ୍ଟ ଧର୍ମ ଭିତରେ ପୁଣି ଅନେକ ବିଭାବ— ଜର୍ମାନୀରେ ଲୁଥେରାନଜିମ, ଇଂଲଣ୍ଡରେ ରାଜଧର୍ମ ଏଂଗ୍ଲିକାନିଜମ, ସୁଇଜରଲ୍ୟାଣ୍ଡରେ ଜନ କାଲିଭିନ ନାମକ ଧର୍ମ ପ୍ରଚାରକଙ୍କ ନାମରେ କାଲିଭିନିଜମ । ଗୋଟାଏ ଧର୍ମ, ମାତ୍ର ତା ଭିତରେ ଭିନ୍ନ ଭିନ୍ନ ବିଚାର; କେହି କାହାରିକୁ ସହ୍ୟ କରନ୍ତିନି ।

ପୋପଙ୍କ ବିଚାରରେ ପ୍ରୋଟେଷ୍ଟାଣ୍ଟମାନେ ତାଙ୍କ ନିର୍ଦ୍ଦେଶ ମାନୁନାହାନ୍ତି । ତେଣୁ ସେମାନଙ୍କ ସ୍ଥାନ ଖ୍ରୀଷ୍ଟଧର୍ମ ଭିତରେ ନାହିଁ । ସେମାନଙ୍କ ମୋକ୍ଷ ହେବ ନାହିଁ । ନିଜ ମୋକ୍ଷ ଦୃଷ୍ଟିରୁ ସେମାନଙ୍କୁ ଖ୍ରୀଷ୍ଟଧର୍ମରେ ପୁଣି ସାମିଲ କରିବାକୁ ହେବ । ଅନ୍ୟଥା ଧର୍ମର ବିନାଶ ହେବ । ପ୍ରୋଟେଷ୍ଟାଣ୍ଟମାନଙ୍କୁ ଯେ କୌଣସି ଉପାୟରେ

ପ୍ରତିହତ କରିବା ମାନେ ଧର୍ମର ବିନାଶକୁ ରୋକିବା । ଠିକ ସେହିଭଳି, ଲୁଥରଙ୍କ ବିଶ୍ୱାସ ଯେ ପୋପ ଏବଂ ତାଙ୍କ ପ୍ରତିନିଧିମାନେ ଧର୍ମର ବିକୃତିକରଣ କରୁଛନ୍ତି । ଈଶ୍ୱର ସତ୍ତା ଲାଭ ଦିଗରେ ମାନବ ସକାଶେ ପୋପ ଏକ ବଡ଼ ଅନ୍ତରାୟ । ଇଂଲଣ୍ଡରେ ଏଗ୍ଲିକାନମାନେ ପ୍ରଚାର କଲେ ଯେ ଇଂଲଣ୍ଡର ଏକ ସ୍ୱକୀୟ ରାଜଧର୍ମ ଅଛି । ତାହା ପୋପ ନିୟନ୍ତ୍ରଣର ବାହାରେ । ପ୍ରତ୍ୟେକଙ୍କ ଦାବି - ତାଙ୍କ ଧାର୍ମିକ ବିଶ୍ୱାସ ହିଁ ଅନ୍ତିମ ସତ୍ୟ । ଅନ୍ୟଗୁଡ଼ିକ ସତ୍ୟ ପଥରେ ଅନ୍ତରାୟ । ତେଣୁ ଅନ୍ୟଗୁଡ଼ିକ ଉତ୍ପୀଡ଼ନ ଯୋଗ୍ୟ !

ଷୋଡ଼ଶ ଶତାବ୍ଦୀ ହେଲା ଜାତୀୟତାର ଉନ୍ମେଷ କାଳ । ଭାଷା, ସଂସ୍କୃତିକୁ ଆଧାର କରି ଯେତେବେଳେ ସବୁ ରାଜ୍ୟ-ରାଷ୍ଟ୍ରରେ ଜାତୀୟତା ଚେର ଧରିଲା, ଧର୍ମ ସଂସ୍କାର ଆନ୍ଦୋଳନ ତାକୁ ଏକ ବିକୃତ ମୋଡ଼ ଦେଲା । ଧାର୍ମିକ ସଂଖ୍ୟା ଲଘୁମାନେ ସ୍ୱ ସ୍ୱ ମାତୃଭୂମିରେ ଦେଶଦ୍ରୋହୀ ଘୋଷିତ ହେଲେ । ଇଂଲଣ୍ଡରେ ଏଂଗ୍ଲିକାନମାନଙ୍କୁ ବାଦ ଦେଲେ ଅନ୍ୟମାନେ ହେଲେ ସଂଖ୍ୟାଲଘୁ । ତେଣୁ ରାଷ୍ଟ୍ର ସଂଦେହ କଲା ଯେ ସେମାନଙ୍କ ଆତ୍ମୀୟତା ସେମାନେ ଯେଉଁଠି ସଂଖ୍ୟାଗରିଷ୍ଠ ସେହି ଦେଶ ପ୍ରତି ଥିବ । ଦେଶର ସାମଗ୍ରିକ ବିକାଶ ନିମନ୍ତେ ସଂଖ୍ୟାଲଘୁ ସ୍ଥାନାନ୍ତରିତ ହେବା ଉଚିତ । ସଂଖ୍ୟାଲଘୁଙ୍କ ଦେଶ ପ୍ରୀତି ସନ୍ଦେହାସ୍ପଦ ବୋଲି ଅପପ୍ରଚାର ଚାଲିଲା । ରାଜ୍ୟ-ରାଷ୍ଟ୍ରର ପ୍ରୋତ୍ସାହନରେ ଇଂଲଣ୍ଡରୁ ଏଂଗ୍ଲିକାନଙ୍କୁ ବାଦ ଦେଲେ ବାକିମାନେ ଘୃଣାର ଶିକାର ହେଲେ । ଦେଶରୁ ବିତାଡ଼ିତ ହେବାକୁ ବାଧ୍ୟ ହେଲେ । ଠିକ୍ ସେହିଭଳି ଜର୍ମାନରୁ କେଥୋଲିକମାନଙ୍କୁ କଢ଼ାଗଲା । ଫ୍ରାନ୍ସରେ କେଥୋଲିକ ଧର୍ମ ହେଲା ରାଜଧର୍ମ, କାରଣ ସେଠିକା ରାଜା ଓ ପୋପଙ୍କ ମଧ୍ୟରେ ଗଭୀର ବନ୍ଧୁତା । ଫଳରେ ଅଣ-କେଥୋଲିକମାନେ ଫ୍ରାନ୍ସରୁ ବିତାଡ଼ିତ ହେଲେ ।

ରାଷ୍ଟ୍ରୀୟତା ପ୍ରଶ୍ନ ସହ ଧର୍ମ ଯୋଡ଼ିବା ପରେ ରାଷ୍ଟ୍ର ଓ ରାଷ୍ଟ୍ର ମଧ୍ୟରେ ପୁଣି ରାଷ୍ଟ୍ର ଭିତରେ ସଂଖ୍ୟାଲଘୁମାନଙ୍କ ବିରୋଧରେ ଯେଉଁ ହିଂସା ଓ ଉତ୍ପାତ ବଢ଼ିଲା, ତାହା ଜନମାନସକୁ ଅତ୍ୟନ୍ତ ବିଚଳିତ କଲା । ଲୋକ ପ୍ରଶ୍ନ କଲେ - ଧର୍ମ କ'ଣ ଦୟା, କରୁଣା, ମାନବିକତା ଶିଖାଏ ନାହିଁ ? ସ୍ୱ ପ୍ରଚାରିତ ଧର୍ମ କ'ଣ ଈଶ୍ୱର ପ୍ରାପ୍ତି ନିମନ୍ତେ ଏକମାତ୍ର ମାର୍ଗ ? ତେବେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇନଥିବା ଆଫ୍ରିକା, ଆମେରିକା ତଥା ଏସୀୟ ସମାଜ ଏତେ କାଳ ଧରି ତିଷ୍ଠି ରହିଲେ କେମିତି ? ଧର୍ମ କ'ଣ ହିଂସାର ମାତ୍ର ଏକ ପର୍ଯ୍ୟାୟବାଚୀ ଶବ୍ଦ ? ଚାଲିଲା ବିକଳ୍ପର ଅନୁସନ୍ଧାନ । ଖୋଜା ହେଲା ଏମିତି ଏକ ଧାର୍ମିକ ବିଶ୍ୱାସ ଯେଉଁଥିରେ ହିଂସା

ନଥିବ, ଅନ୍ୟ ପାଇଁ ଘୃଣା ନଥିବ । କେବଳ ଈଶ୍ୱର ସତ୍ତା ଲାଭ ସକାଶେ ଆନ୍ତରିକ ସଦିଚ୍ଛା ରହିଥିବ ।

ଫଳତଃ, ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଜନ୍ମ ନେଲା ଭକ୍ତିବାଦ (ପାୟଟିଜମ) ଓ ଦେବବାଦ, ପ୍ରକୃତିବାଦ (ଡେଇଜମ) । ଫିଲିପ ସ୍ପେନର ନାମକ ଜଣେ ଜର୍ମାନ ଲୁଥେରାନ ଥିଲେ ପାୟଟିଜମର ବଡ଼ ପ୍ରବକ୍ତା । ସେ ପ୍ରଚାର କଲେ ଯେ, ଧର୍ମ, ଈଶ୍ୱରସତ୍ତା, ମୋକ୍ଷ ଆଦି ଅନ୍ତରର ଅନୁଭୂତି, ତାକୁ ବଳ ପ୍ରୟୋଗ ପୂର୍ବକ ପ୍ରଚାର କରାଯାଇପାରେନା; ଯଦି ତୁମେ ଈଶ୍ୱର ସତ୍ତା ପାଇଁ ଆଗ୍ରହୀ, ତେବେ ନିଜ ଭିତରେ ସେହି ଦିବ୍ୟ ଆଲୋକକୁ ଅନୁଭବ କର । ତା' ପାଇଁ ଲୋକ ଦେଖାଣିଆ କିଛି କରିବାର ଆବଶ୍ୟକତା ନାହିଁ । ସେହି ଦୃଷ୍ଟିରୁ ଉପାସନା ଗୃହ ପାଇଁ କଳହ କରିବା ନିରର୍ଥକ । ଅନ୍ୟମାନଙ୍କୁ ମିଛ ପ୍ରମାଣିତ କରି କଦାପି ଆମେ ଈଶ୍ୱର ସତ୍ତା ଲଭି ପାରିବା ନାହିଁ । ଠିକ ସେହିଭଳି ଡେଇଜମ ବିଶ୍ୱାସ କରେ ଯେ ପ୍ରକୃତି ହିଁ ବିଶ୍ୱନିୟନ୍ତା । ସମଗ୍ର ବିଶ୍ୱ, ଜ୍ୟୋତିର୍ମଣ୍ଡଳ ଆଦି ପ୍ରକୃତି-ପୁରୁଷର ନିୟମରେ ଅନୁବନ୍ଧିତ । ଆମେ ସେହି ପ୍ରକୃତି ନିୟନ୍ତାକୁ ମନନ କଲେ ଈଶ୍ୱର ସତ୍ତାର ନିକଟତର ହୋଇ ପାରିବା । ପ୍ରକୃତିର ନିୟମକୁ ଅନୁଭବ କରିବାକୁ ହେଲେ ବାହ୍ୟ ଧର୍ମର କୌଣସି ଆବଶ୍ୟକତା ନାହିଁ । ଧର୍ମକୁ ନେଇ କୌଣସି ବାକ୍‌ବିତଣ୍ଡା ଆମକୁ ଈଶ୍ୱର ସତ୍ତା ନିକଟକୁ ନେଇଯାଇ ନପାରେ ।

ମୋଟ କଥା ହେଲା, ୟୁରୋପ ସମାଜରେ ଧର୍ମ ରହିଲା, ମାତ୍ର ତହିଁରେ ଅସହିଷ୍ଣୁ ଭାବ ଊଣା ହେଲା କ୍ରମଶଃ । ସମାଜକୁ ଧର୍ମନିରପେକ୍ଷ କରି ଗଢ଼ିବାରେ ଏହା ବେଶ ସାହାଯ୍ୟ କଲା । ଆଜି ବିଶ୍ୱ ସମାଜରେ ୟୁରୋପୀୟ ନେତୃତ୍ୱ । ଧର୍ମ ନିରପେକ୍ଷତା ହେଲା ସାଂପ୍ରତିକ ବିଶ୍ୱର ଏକ ମୁଖ୍ୟ ସ୍ୱର । କା ଭାଁ ଯେଉଁଠି ସାଂପ୍ରଦାୟିକତା ମୁଣ୍ଡ ଟେକୁଛି, ସଂଖ୍ୟାଲଘୁ ବିରୋଧରେ ବିଷୋଦଗାର ବଢ଼ିଛି, ସେ'ତାଲିବାନ ରାଜ୍ୟରେ ହେଉ ବା ଗୁଜୁରାଟରେ ହେଉ, ତାକୁ ସଭ୍ୟ ସମାଜ କଦାପି ଗ୍ରହଣ କରି ନ ପାରେ । ନିଶ୍ଚୟ ତା'ର ଅବକ୍ଷୟ ଘଟିବ । ବରଂ ଧାର୍ମିକ ଅସଦଭାବ ଉକ୍ତ ସମାଜସବୁକୁ ମଧ୍ୟକାଳୀନ ଅଂଧକାରକୁ ଟାଣିନେବ, ବର୍ବର ଅସଭ୍ୟ ଶ୍ରେଣୀଭୁକ୍ତ କରିବ ଏହା ନିଃସନ୍ଦେହ । ଯଦି ସାମାଜିକ କାଳଖଣ୍ଡ ରହେ ଏକବିଂଶ ଶତାବ୍ଦୀରେ, ମାତ୍ର ବୈଚାରିକ ଦୃଷ୍ଟିରୁ ଲୋକ ରହନ୍ତି ଷୋଡ଼ଶ ଶତାବ୍ଦୀରେ ସେ ସମାଜ ବେତାଳିଆ ହେବା ନିଶ୍ଚିତ ।



# ଇତିହାସରେ ବିବାଦ

ଇତିହାସକୁ ନେଇ ଅନେକ ସମୟରେ ବିବାଦ ସବୁ ପତ୍ରପତ୍ରିକାର ମୁଖ୍ୟ ସମ୍ବାଦ ହୁଅନ୍ତି । ଲାଗେ, ଇତିହାସ ସମସ୍ୟାର ସମାଧାନ ଦିଏ ନାହିଁ, ସମାଜରେ କେବଳ ବିବାଦ ବଢ଼ାଏ । ଲୋକ ପ୍ରଶ୍ନ କରନ୍ତି, ଇତିହାସର କେଉଁ ସିଦ୍ଧାନ୍ତଟି ଠିକ୍- ମସଜିଦ୍ ସ୍ଥାନରେ ଆଗରୁ ସେଠି ରାମମନ୍ଦିର ଥିଲା ନା ନାହିଁ ? ଆଗ୍ରାର ତାଜମହଲ ହିନ୍ଦୁରାଜାଙ୍କ କୃତି ନା ମୁସଲମାନ ରାଜାଙ୍କ କୃତି ? ଆର୍ଯ୍ୟମାନେ ଭାରତର ମୂଳ ଅଧିବାସୀ ନା ତୁର୍କୀ, ମୋଗଲମାନଙ୍କ ପରି କ'ଣ ସେମାନେ ମଧ୍ୟ ଭାରତ ବାହାରୁ ଆସିଛନ୍ତି ? ଆର୍ଯ୍ୟମାନେ ହର୍‌ପା ସଭ୍ୟତାର ସ୍ରଷ୍ଟା ନା ଧ୍ୱଂସକାରୀ ନା ଆଉ କିଛି ? କେବଳ ପ୍ରାଚୀନ ଇତିହାସ କାହିଁକି, ଆଧୁନିକ ଓ ସମସାମୟିକ ଇତିହାସ ମଧ୍ୟ ବିବାଦରୁ ମୁକ୍ତ ନୁହେଁ । ଭାରତ ବିଭାଜନର ଅପରାଧୀ କିଏ ? ଗାନ୍ଧି ନା ନେହେରୁ ନା ଆଉ କିଏ ? ୧୯୪୫ରେ ଆମେରିକା ଜାପାନ ଉପରେ ଆଣବିକ ବୋମା ବର୍ଷଣ କଲା କାହିଁକି ? ଜାପାନକୁ ପରାଜିତ କରିବା ଉଦ୍ଦେଶ୍ୟରେ ନା ବିଶ୍ୱ ରାଜନୀତିରେ ନିଜ ପ୍ରଭୁତ୍ୱ ବିସ୍ତାର ସକାଶେ ? ଇତ୍ୟାଦି ଇତ୍ୟାଦି ।

ଦେଖିଲେ ଜାଣିହେବ ଯେ ଇତିହାସର ଏମିତି କୌଣସି ସିଦ୍ଧାନ୍ତ ନାହିଁ ଯାହାକୁ ନେଇ ଏକାଧିକ ମତ ନାହିଁ ଅର୍ଥାତ୍ ପ୍ରତ୍ୟେକ ସିଦ୍ଧାନ୍ତ ବିବାଦୀୟ । ହେଲେ ଖୁସିର କଥା ଯେ ପ୍ରତ୍ୟେକ ବିବାଦ ଦଙ୍ଗା ଫସାଦ କରନ୍ତି ନାହିଁ, ମନ୍ଦିର ମସଜିଦ୍ ଭାଙ୍ଗନ୍ତି ନାହିଁ । 'ବଳବାନ' କେତୋଟି ବିବାଦ କେବଳ କୋର୍ଟକଚେରୀକୁ ଯାଆନ୍ତି, ସମାଜକୁ ଭାଗ ଭାଗ କରନ୍ତି । ଏଭଳି ବଳବାନ୍ ବିବାଦର ସଂଖ୍ୟା ସମଗ୍ର ବିବାଦ ତୁଳନାରେ ଅତି ନ୍ୟୁନ । ଏହା କ'ଣ ସିଦ୍ଧ କରେ ନାହିଁ ଯେ କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ବିବାଦକୁ ବଳବାନ୍ ସ୍ତରକୁ ନେବାରେ ଯେତେ ହାତ ଥାଏ ଅତୀତ ଇତିହାସର, ତାଠାରୁ ଖୁବ୍ ଅଧିକ ହାତ ରହେ 'ସାମ୍ପ୍ରତିକ ବର୍ତ୍ତମାନ'ର ଓ 'ସମସାମୟିକ' ରାଜନୀତିର ? ସବୁଠାରୁ ବଡ଼ କଥା, ବିବାଦ ବେଳେ ଆମ ପକ୍ଷ ଇତିହାସ ତଥ୍ୟ ଆଧାରିତ ନ ହୋଇ ଅନେକାଂଶରେ ପୂର୍ବାଗ୍ରହ ଆଧାରିତ ହୋଇଥାଏ । ନିର୍ଦ୍ଦିଷ୍ଟ

ଏକ ଐତିହାସିକ ବିବାଦରେ କେଉଁ ଦଳ, କେଉଁ ନେତା, କେଉଁ ସମ୍ବାଦପତ୍ର କେଉଁ ପକ୍ଷ ନେଉଛନ୍ତି, ତାକୁ ଦୃଷ୍ଟିରେ ରଖି ଆମେ ନିଜର ପକ୍ଷ ସ୍ଥିର କରୁ । ଫଳରେ ଐତିହାସିକ ବିବାଦ ଜମିଜମା ବିବାଦ, ପାରିବାରିକ କଳହ ସ୍ତରକୁ ଖସିଆସେ । ଏହା ପରେ ବି କହିବା କ'ଣ ଠିକ୍ ହେବ ଯେ, ବର୍ତ୍ତମାନର ଇତିହାସରେ କୌଣସି ଉପଯୋଗ ନାହିଁ ? କିମ୍ବା ଇତିହାସର ବର୍ତ୍ତମାନରେ କୌଣସି ଉପଯୋଗ ନାହିଁ ?

ଐତିହାସିକ ବିବାଦ ଯେହେତୁ 'କଳହ' ବଢ଼ାଏ, 'ହିଂସା' ଉପୁଜାଏ, ସମ୍ବେଦନଶୀଳ ନାଗରିକ ଭାବରେ ଆମକୁ ଲାଗେ, ପଞ୍ଚାୟତ ପରି ଐତିହାସିକମାନେ କିଛି ଗୋଟାଏ ନିର୍ଦ୍ଦିଷ୍ଟ ନିଷ୍ପତ୍ତିରେ ପହଞ୍ଚିବା କଥା, ବିବାଦକୁ ଶେଷ କରିବା କଥା ! ଅଯଥା ବିବାଦ ଯୋଗୁଁ ବିଶ୍ୱ ଦରବାରରେ ଆମ ସମ୍ମାନ ହାନି ହେଉଛି, ଧନ ଜନ ନଷ୍ଟ ହେଉଛି ! ମାତ୍ର ଅସଲ କଥା ହେଲା ମୋଟ ବିବାଦ ମଧ୍ୟରୁ କେବଳ ଦୁଇ ଚାରୋଟି କଳହ ସୃଷ୍ଟି କରିବାର ସାମର୍ଥ୍ୟ ରଖନ୍ତି ଏବଂ ନିଶ୍ଚିତ ରୂପେ କଳହ ପଛରେ ଇତିହାସ ନୁହେଁ, ବରଂ ସମସାମୟିକ ରାଜନୀତି ମୁଖ୍ୟତଃ ଦାୟୀ । ତେଣୁ ଐତିହାସିକ କିମ୍ବା ଇତିହାସର ହସ୍ତକ୍ଷେପ କଳହର ମାତ୍ରା ଊଣା କରିବ ବୋଲି ଆଶା କରାଯାଇନପାରେ ।

ଓଡ଼ିଆରେ କହନ୍ତି, ନାନା ମୁନିଙ୍କ ନାନା ମତ; ଅର୍ଥାତ୍ କୌଣସି ପ୍ରସଙ୍ଗକୁ ନେଇ ଏକାଧିକ ମତ ରହିବାରେ ଅଯୌକ୍ତିକତା କିଛି ନାହିଁ । ଏହା ପ୍ରସଙ୍ଗଟିର ସାମଗ୍ରିକ ରୂପକୁ ଦେଖିବାରେ ସାହାଯ୍ୟ କରେ । ଜଣକର ମାତ୍ର ଗୋଟାଏ ଫଟୋକୁ ଦେଖି ଯେମିତି ବ୍ୟକ୍ତିର ସମ୍ପୂର୍ଣ୍ଣ ରୂପ ସମ୍ବନ୍ଧରେ ସଠିକ୍ ଧାରଣା କରି ହୁଏନା, ଗୋଟାଏ ମତକୁ ଆଧାର କରି ସେମିତି ଇତିହାସ କିମ୍ବା ସମାଜବିଜ୍ଞାନର ଯେକୌଣସି ବିଷୟକୁ ଅଧ୍ୟୟନ କରାଯାଇ ପାରେନା । ଏକାଧିକ ମତ ରହିବା ଦ୍ୱାରା ସ୍ପଷ୍ଟ ହୁଏ ଯେ ପ୍ରସଙ୍ଗଟିକୁ ସମାଜ ବିଜ୍ଞାନୀ ଅଧିକ ମହତ୍ତ୍ୱ ଦେଇ ଅଧ୍ୟୟନ କରୁଛନ୍ତି । ତା'ଛଡ଼ା, ଆମର ମନେ ରହିବା ଉଚିତ ଯେ ଇତିହାସ ହେଲା ଅତୀତର ଅଧ୍ୟୟନ । ମାତ୍ର ଷାଠିଏ ସତୁରି ବର୍ଷ ପଛକୁ ଫେରି ଗଲେ ଅତୀତର ଚାକ୍ଷୁସ ପ୍ରମାଣ ନାହିଁ । ଅତୀତ ଯେତେ ଅଧିକ ପ୍ରାଚୀନ, ପ୍ରାମାଣିକତାର ଧାରା ସେତେ ପରୋକ୍ଷ । ତେଣୁ ତାକୁ ନେଇ ଭିନ୍ନ ଭିନ୍ନ ମତ ରହିବା ସ୍ୱାଭାବିକ । ଏହା ବିଷୟକୁ ବଳିଷ୍ଠ କରେ, ସତ୍ୟର ନିକଟତର ହେବାରେ ଆମକୁ ସାହାଯ୍ୟ କରେ ।

ମୋଟ କଥା ହେଲା, ଐତିହାସିକ ବିବାଦ ଏବଂ ଅନ୍ୟ ପକ୍ଷରେ ଇତିହାସକୁ ନେଇ ସୃଷ୍ଟି ହେଉଥିବା ବିବାଦ ମଧ୍ୟରେ ପାର୍ଥକ୍ୟ ରହିଛି । ଅନ୍ୟ ଅର୍ଥରେ, ବିବାଦ

ଇତିହାସର ଶତ୍ରୁ ନୁହେଁ, ବରଂ ସମ୍ପତ୍ତି । ଇତିହାସର ପ୍ରକୃତ ଶତ୍ରୁ ହେଲା ଯୁକ୍ତିହୀନତା, ଅହେତୁକତା । ସାମାନ୍ୟ ତର୍କ ଦ୍ୱାରା ସିଦ୍ଧ କରାଯାଇ ପାରୁନଥିବା ଅହେତୁକ କଥାଗୁଡ଼ିକ ଯଦି ବଳପୂର୍ବକ ଇତିହାସରେ ଭର୍ତ୍ତିକରାଯାଏ, ଇତିହାସ ତାର ଗୁଣ ହରାଏ । ଏହି ପରିପ୍ରେକ୍ଷୀରେ ରାମାୟଣର ଦଶାନନ ରାବଣ କିମ୍ବା ସମୁଦ୍ର ଲଂଘିଥିବା ହନୁମାନ ଚରିତ୍ରକୁ ବିଚାର କରାଯାଇପାରେ । ଆଜିର ମଣିଷର ଏକାଧିକ ମୁଣ୍ଡ ଥିବାର ନଜିର ନାହିଁ । ଏହି ଆଧାରରେ ରାବଣର ଦଶଟି ମୁଣ୍ଡ ଥିବା କଥା କେବଳ କବିର କଳ୍ପନା ମାତ୍ର । ତା'ଛଡ଼ା, ଦଶାନନ ରାବଣର କୌଣସି ପ୍ରତ୍ନତାତ୍ତ୍ୱିକ ଅବଶେଷ ନାହିଁ । ଏହି 'ହେତୁ'ରୁ ରାବଣ କେବେ ଇତିହାସ ପୁରୁଷ ବା ଯଥାର୍ଥ ଚରିତ୍ର ହୋଇନପାରେ । ଏକ ଅଲୌକିକ ପୌରାଣିକ ଚରିତ୍ର ଭାବରେ ତାକୁ ସନ୍ତୁଷ୍ଟ ହେବାକୁ ପଡ଼ିବ । ଠିକ୍ ସେହିଭଳି ବାନର ଜାତୀୟ ପ୍ରାଣୀଟିଏ ଯେତେ ଦୂର ଲମ୍ଫ ଦେଇପାରିବ, ତାକୁ ଭିତ୍ତିକରି ହନୁମାନର ଯଥାର୍ଥତା ଆଙ୍କି ହେବ । କେବଳ ରାମାୟଣ କାହିଁକି ବିଶ୍ୱର ସବୁ ପୁରାଣକୁ ଇତିହାସ ଏହି ଆଧାରରେ ବିଶ୍ଳେଷଣ କରେ । ଏହାର ଅର୍ଥ ନୁହେଁ ଯେ ରାମାୟଣର ପ୍ରାସଙ୍ଗିକତା ନାହିଁ । ସୁସାହିତ୍ୟ ରୂପରେ ଏବଂ ମୂଲ୍ୟବୋଧ ଶିକ୍ଷାରେ ରାମାୟଣ ତଥା ଅନ୍ୟାନ୍ୟ ଏପିକ୍‌ର ତୁଳନା ନାହିଁ । ଇତିହାସ ପାଇଁ ବି ତାହା ଏକ ପ୍ରମୁଖ ସାହିତ୍ୟକ ସ୍ରୋତ ସାମଗ୍ରୀ । ରାମାୟଣ ଯେଉଁ କାଳରେ ଲିଖିତ, ଅତୀତର ସେହି କାଳଖଣ୍ଡକୁ, ତା'ର ସମାଜ ଓ ସଭ୍ୟତାକୁ ବୁଝିବା ପାଇଁ ରାମାୟଣ ବେଶ୍ ମହତ୍ତ୍ୱପୂର୍ଣ୍ଣ । ରାମାୟଣର ଏହି ବୈଶିଷ୍ଟ୍ୟକୁ ବୁଝି ପାରିଲେ, ଐତିହାସିକ ବିବାଦ ଓ ଇତିହାସକୁ ଆୟୁଧ କରି ସୃଷ୍ଟି ହେଉଥିବା ବିବାଦ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝିବା ମଧ୍ୟ ଅସହଜ ହେବ ନାହିଁ ।

❏❏

## ଇତିହାସର ସମୀକ୍ଷା

ପିଉସୀ ମୋର ତୃତୀୟ ଶ୍ରେଣୀ ଯାଏ ସ୍କୁଲ ଯାଇଛନ୍ତି । ହେଲେ ପଞ୍ଚସ୍ତରି ବର୍ଷ ତଳେ ପଢ଼ିଥିବା ପାଠବହିର ଗୀତ ଏ ଯାଏଁ ତାଙ୍କର ମନେ ଅଛି । ପିଲାଦିନେ ଆମେ ତାଙ୍କଠାରୁ ଗୀତ ଶୁଣୁଥିଲୁ, ଏବେ ଆମ ଛୁଆ ବି ଶୁଣୁଛନ୍ତି । ଗୀତର ଗୋଟାଏ ପଦରେ ସେ 'ସଂସାର ଜାରା' ବୁଲିବା ବୋଲି ଗାଆନ୍ତି, କାରଣ ତାଙ୍କ ପାଠ ବହିରେ 'ସଂସାର ସାରା' ସ୍ଥାନରେ ସଂସାର ଯାରା'ର ମୁଦ୍ରଣ ହୋଇଥିଲା । ଓଡ଼ିଆରେ 'ସଂସାର ଯାରା'ର କିଛି ଅର୍ଥ ନାହିଁ । ଏକଥା ସେ ଜାଣନ୍ତି । ମାତ୍ର ଗାଇଲାବେଳେ 'ସଂସାର ଯାରା' ବୋଲି ଗାଇଥାନ୍ତି । କାରଣ ବହିରେ ଲେଖା ଅଛି । ଶିଶୁ ମନରେ ପାଠ୍ୟପୁସ୍ତକର କେତେ ମାତ୍ରାରେ ପ୍ରଭାବ ରହେ ଏହା ତାର ଏକ ଉଦାହରଣ । ଶିଶୁ ବୟସରେ ପଢ଼ିଥିବା ପାଠ୍ୟପୁସ୍ତକର ତଥ୍ୟ ମଣିଷର ବୁଢ଼ା ହେବା ଯାଏଁ ମନରେ ରହିଥାଏ । ଏହି ବାସ୍ତବିକତାର ଆଧାରରେ ପାଠ୍ୟ ପୁସ୍ତକ ମାଧ୍ୟମରେ ଶିଶୁମନକୁ ପ୍ରଭାବିତ କରିବାକୁ ଚେଷ୍ଟା କରାଯାଏ । ତା ଖରାପ କି ଭଲ ସେ ପଛ କଥା ।

ପାଠ୍ୟପୁସ୍ତକ ଭିତରେ ପୁଣି ଇତିହାସ ତଥ୍ୟ ସବୁ ରହିଛି— ଯାହାର ସିଦ୍ଧାନ୍ତ, ଧାରଣା ତଥା କେତେକାଂଶରେ ତଥ୍ୟ, ସବୁ କିଛି ତରଳ (ଫ୍ଲୁଇଡ୍) ଆକାରରେ ଥାଏ । ଆମେ ଇତିହାସ ନାଁରେ ଯେଉଁ ବହି ପଢୁ, ଆରମ୍ଭରେ ତାହା ସେହି ଆକାରରେ ଉପଲବ୍ଧ ହୋଇନଥାଏ । ଅତୀତର ଗୁମ୍ଫା, ପ୍ରାସାଦ, ମନ୍ଦିର, ଶିଳାଲେଖ, ମୂର୍ତ୍ତି ଭଗ୍ନାବଶେଷ, ପୋଥି, ପୁରାଣ ଆଦି ଆକାରରେ ଐତିହାସିକ ତଥ୍ୟ ସବୁ ମିଳେ, ଐତିହାସିକ ସେସବୁ ତଥ୍ୟ ସାମଗ୍ରୀକୁ ତର୍ଜମା କରେ, ବିଶ୍ଳେଷଣ କରେ ଏବଂ ଅତୀତର ସମାଜ ଓ ସଭ୍ୟତାକୁ ନେଇ କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚେ । ଉକ୍ତ ସିଦ୍ଧାନ୍ତଗୁଡ଼ିକୁ ଆଧାର କରି ସେ ପୁରାତନ କାଳଖଣ୍ଡର କାହାଣୀ ଗଢ଼େ, ସୃଷ୍ଟି ହୁଏ ଇତିହାସ ବହି । ଅଧିକାଂଶ ସମୟରେ ଐତିହାସିକର ଇଚ୍ଛାମତେ ଆବଶ୍ୟକ ସ୍ରୋତସାମଗ୍ରୀ ମିଳେ ନାହିଁ । ତେଣୁ ଯାହା କିଛି ସାମଗ୍ରୀ ହସ୍ତଗତ ହୁଏ ତାକୁ ଆଧାର କରି ସେ ଇତିହାସ ଗଢ଼େ । କାଳକ୍ରମରେ ଯଦି ନୂଆ ସାମଗ୍ରୀ ହସ୍ତଗତ

ହୁଏ, ଐତିହାସିକର ଧାରଣା ବଦଳେ । ଏହି ଆଧାରରେ କୁହାଯାଏ ଯେ ଐତିହାସିକ ସିଦ୍ଧାନ୍ତ କେବେ 'ଅନ୍ତିମ ସତ୍ୟ' ହୋଇନପାରେ । ଅତୀତକୁ ଆମେ ସ୍ୱଚକ୍ଷୁରେ ଦେଖିନାହୁଁ । ଅତୀତ ଯଦି ଅତି ପୁରାତନ, ଚାକ୍ଷୁସ ପ୍ରମାଣର ମାତ୍ରା ମଧ୍ୟ ଅତି ପରୋକ୍ଷ । ସେହି ପରିପ୍ରେକ୍ଷୀରେ ହସ୍ତଗତ ହୋଇଥିବା କେତେ ଗୋଟି ତଥ୍ୟର ଭରସାରେ ଐତିହାସିକ ନାମକ ବ୍ୟକ୍ତିଟି ଅତୀତ ସମ୍ବନ୍ଧରେ ଏକ ସମ୍ଭାବନାକୁ କେବଳ ସୂଚିତ କରେ । ନିଜ ସିଦ୍ଧାନ୍ତ ହିଁ ନିଶ୍ଚିତ ରୂପେ ଅନ୍ତିମ ସତ୍ୟ ବୋଲି ସେ ଦାବି କରେ ନା । ମୋଟ କଥା ହେଲା ଯେ ଐତିହାସିକ ସିଦ୍ଧାନ୍ତ ସବୁକୁ ପୁନଃତର୍ଜମା କରିହେବ, ସମୀକ୍ଷା କରିହେବ, ଯୁକ୍ତି ବଳରେ ଭାଙ୍ଗି ହେବ, ତର୍କ ଦେଇ ଅଧିକ ବଳିଷ୍ଠ କରିହେବ । ଇତିହାସର ପ୍ରତ୍ୟେକ ଛାତ୍ର- ସେ ସ୍କୁଲର ହୁଅନ୍ତୁ ବା ବିଶ୍ୱ ବିଦ୍ୟାଳୟର– ଏକଥା ଜାଣିବା ଉଚିତ, ଐତିହାସିକ ସିଦ୍ଧାନ୍ତକୁ ନେଇ ସମୀକ୍ଷା କରିବା ଉଚିତ, ସ୍ୱ-ବିଚାର ବୁଦ୍ଧିକୁ ବ୍ୟବହାର କରି ତଥ୍ୟଗୁଡ଼ିକୁ ବିଶ୍ଳେଷଣ କରିବା ଉଚିତ । କୌଣସି ସିଦ୍ଧାନ୍ତକୁ ଅନ୍ତିମ ସତ୍ୟ ବୋଲି ଗ୍ରହଣ କରିନେବା କେବେ ଐତିହାସିକ ଦୃଷ୍ଟିକୋଣ ହୋଇନପାରେ । ଆମ ସାଧାରଣ ବୁଦ୍ଧିରେ ଯଦି ଐତିହାସିକ ସିଦ୍ଧାନ୍ତ, ସେ ଯେତେ ମହାନ୍ ଐତିହାସିକ ଦିଆ ହେଉ ନା କାହିଁକି ଯୁକ୍ତିନିଷ୍ଠ, ତର୍କସମ୍ମତ ନୁହେଁ, ତେବେ ତାହା ଗ୍ରହଣୀୟ ବି ନୁହେଁ ।

ମାତ୍ର ଅବଶୋଷର ବିଷୟ ଯେ ପିଲାଦିନୁ ଆମକୁ ଇତିହାସ ବହିରେ ସ୍ଥାନିତ ସିଦ୍ଧାନ୍ତକୁ ଅନ୍ତିମ ସତ୍ୟ ବୋଲି ଗ୍ରହଣ କରିବାକୁ କୁହାଯାଏ, ସମୀକ୍ଷା କରିବାକୁ ଅବସର ଦିଆଯାଏନା । ଫଳତଃ ଶୁଆ ପରି ଇତିହାସ ଘୋଷିବାକୁ ପଡ଼େ, ବୁଝିବାର ଦରକାର ପଡ଼େନା । କଦାଚିତ ଯଦି ଭିନ୍ନ କିଛି ସିଦ୍ଧାନ୍ତ ଦୃଷ୍ଟିରେ ପଡ଼େ ମନରେ ଅଯଥା ସଂଶୟ ସୃଷ୍ଟି ହୁଏ, ବୈଚାରିକ ଆଧାରରେ କେଉଁଟି ଠିକ୍ ତାହା ସମୀକ୍ଷା କରିହୁଏନା । ଯଦି ଆମେ ସିଦ୍ଧାନ୍ତ ପଛରେ ଥିବା ଯୁକ୍ତିକୁ ବୁଝିଥାନ୍ତେ, ସମୀକ୍ଷା କରିବାକୁ ପ୍ରୋତ୍ସାହିତ ହୋଇଥାନ୍ତେ, ଦୁଇଟି ଭିନ୍ନ ସିଦ୍ଧାନ୍ତକୁ ଦେଖି ମନରେ ସଂଶୟ ରହନ୍ତା ନାହିଁ । ଅନ୍ୟ ପକ୍ଷରେ ଇତିହାସର ଅଧ୍ୟୟନ ମଧ୍ୟ ଉପାଦେୟ ଆମୋଦଦାୟୀ ହୁଅନ୍ତା । ସବୁଠାରୁ ଦୁଃଖର କଥା, ବିନା ସମୀକ୍ଷାରେ କୌଣସି ସିଦ୍ଧାନ୍ତକୁ ସ୍ୱୀକାର କରିବା ଦ୍ୱାରା ଆମ ଭିତରେ ଜାତିବାଦ ତଥା ଭାଗ୍ୟବାଦୀ ମାନସିକତା ବଳ ପାଏ । ଯାହା ଯେମିତି ଅଛି, ତାକୁ ସ୍ୱୀକାର କରିଯାଅ, ପ୍ରଶ୍ନ କର ନାହିଁ ! ପ୍ରଶ୍ନ କରିବାର ଅର୍ଥ ବଡ଼ର ଅବମାନନା କରିବା ! ଇତିହାସର ଏଭଳି ଅଧ୍ୟୟନ ଦ୍ୱାରା କି କେବେ ସାମାଜିକ ବିକାଶ ସମ୍ଭବ ହେବ ?

ଏତଦ୍‌ଭିନ୍ନ ସେ ପ୍ରତ୍ନତତ୍ତ୍ୱବିଦ୍ ହୁଅନ୍ତୁ କି ମୁଦ୍ରା ଗବେଷକ, ଐତିହାସିକ ମଧ୍ୟ ଜଣେ ବ୍ୟକ୍ତି । ସାମ୍ପ୍ରତିକ ସମାଜର ଜାତି, ଧର୍ମ, ରାଜନୀତି, ଦର୍ଶନକୁ ନେଇ ତାଙ୍କର ଏକ ସ୍ୱକୀୟ ମତ ଅଛି, ଦୃଷ୍ଟିକୋଣ ରହିଛି । ଜଣେ ନାଗରିକ ଭାବରେ ସେ ଏକ ନିର୍ଦ୍ଦିଷ୍ଟ ମତବାଦର ପକ୍ଷଧର ଅଥବା ବିରୋଧୀ । ସେ ହୁଏତ ଜାତିବାଦୀ, ସାମ୍ପ୍ରଦାୟବାଦୀ ବା ସମତାକାମୀ, ଧର୍ମନିରପେକ୍ଷ ଅଥବା ଆଉ କିଛି । ବର୍ତ୍ତମାନ ଯୁଗର ଏହି ଇତିହାସବିତ୍ ଉର୍ଫ ବୁଦ୍ଧିଜୀବୀ ଯେତେବେଳେ ଅତୀତ'ର ତର୍ଜମା କରିବେ, ତାଙ୍କ ସାମ୍ପ୍ରତିକ ଦୃଷ୍ଟିକୋଣ କ'ଣ ତର୍ଜମା ଉପରେ ଛାପ ଛାଡ଼ିବ ନାହିଁ ? ତେଣିକି ଐତିହାସିକ ଦ୍ୱାରା ସ୍ଥାପିତ ସିଦ୍ଧାନ୍ତଗୁଡ଼ିକୁ ବିନା ସମୀକ୍ଷା କରି ସ୍ୱୀକାର କରିଗଲେ, ପାଠକ, ସେ ସ୍କୁଲଛାତ୍ର ହେଉ କି ଗବେଷକ, ତା ବିଚାର ବୁଦ୍ଧିରେ କି ପରିପକ୍ୱତା ଆସିବ ? ସେଥିପାଇଁ କହନ୍ତି ଇତିହାସ ବହି ପଢ଼ିବା ଆଗରୁ ତା'ର ସ୍ରଷ୍ଟା ଐତିହାସିକଙ୍କୁ ପଢ଼, ଯଦି ବ୍ୟକ୍ତି ଭାବରେ ଐତିହାସିକର ନିଷ୍ଠା ନାହିଁ, ସେ ସାମାଜିକ ପ୍ରତିବଦ୍ଧତା ଶୂନ୍ୟ, ସାଧାରଣ ମଣିଷର ସାମର୍ଥ୍ୟ ଉପରେ ତାର ଭରସା ନାହିଁ, ତାର ସୃଷ୍ଟି ଇତିହାସ 'ବହି' କ'ଣ କଦାଚିତ ନିର୍ଭରଯୋଗ୍ୟ ହେବ ?

ଏହି ପରିପ୍ରେକ୍ଷୀରେ ବିଚାର କରିବା କଥା, ସ୍କୁଲ ଛାତ୍ର ପାଇଁ ବେଶି ଆବଶ୍ୟକ ଇତିହାସ ପାଠର ପୁନର୍ଲିଖନର ନା ଇତିହାସ-ସମୀକ୍ଷା ଜ୍ଞାନର । ପୁନର୍ଲିଖନ ଦ୍ୱାରା କେତୋଟି ସ୍ଥାପିତ ଐତିହାସିକ ସିଦ୍ଧାନ୍ତ ବଦଳରେ ଏବର କ୍ଷମତାସୀନ ଦଳକୁ ସୁହାଉଥିବା 'ନୂଆ' ସିଦ୍ଧାନ୍ତ ମାତ୍ର ସ୍ଥାନ ପାଇବ । ଛାତ୍ରର ସମୀକ୍ଷା ଜ୍ଞାନର ବିକାଶ ତାର ଉଦ୍ଦେଶ୍ୟ ନୁହେଁ । ଫଳରେ ନୂଆ ସିଦ୍ଧାନ୍ତକୁ ଅନ୍ତିମ ସତ୍ୟ ରୂପରେ ଘୋଷିଯିବା ହିଁ ସାର ହେବ । ଛାତ୍ର ପ୍ରଶ୍ନ କରିବନି, ସମୀକ୍ଷା କରିବନି; ଅଲୌକିକ ଚମତ୍କାର ପରି ଅଥବା ଦେବାଳୟର ପ୍ରସାଦ ପରି ତାକୁ କେବଳ ଢୋକି ପିଇ ନେବ । ଅତୀତର ପ୍ରତିଟି କାହାଣୀକୁ ବିନା ଯୁକ୍ତି ତର୍କରେ କେବଳ ସେ ଗ୍ରହଣ କରିନେବ । ଆଜିର ବୈଜ୍ଞାନିକ-ଯୁଗରେ ଏଭଳି ଇତିହାସ ଶିକ୍ଷା କେତେ ମାତ୍ରାରେ ବିଜ୍ଞାନ ସମ୍ମତ, ତାହା କ'ଣ ସମୟ କହିବ ନାହିଁ ?

□□

# ଇତିହାସର ଉପାଦେୟତା

ସାମ୍ପ୍ରତିକ ସମାଜରେ ଇତିହାସର ଉପାଦେୟତା ପ୍ରତି ସନ୍ଦେହ ପ୍ରକାଶ କରି ହିନ୍ଦୀରେ ଲୋକ ଉଦାହରଣ ଦିଅନ୍ତି, 'ଗଡ଼େ ମୁର୍ଦୋକୋ ଉଖାଡ଼ନା' । ଗଳିତ ଶବକୁ କବରରୁ କାଢ଼ି ଯେତେ ପରୀକ୍ଷା ନିରୀକ୍ଷା କଲେ ସୁଦ୍ଧା ଯେମିତି ଶବ ଜୀବନ୍ୟାସ ପାଏ ନାହିଁ, କୁଆଡ଼େ ଇତିହାସ ପରି ଅତୀତର ଘଟଣାବଳୀର ସମସ୍ତ ଚର୍ଚ୍ଚା-ପରିଚର୍ଚ୍ଚା ସାମ୍ପ୍ରତିକ ସମସ୍ୟାର କୌଣସି ସମାଧାନ ଦିଏ ନାହିଁ । ବରଂ ଇତିହାସର ଅଧ୍ୟୟନ ମନରେ କଷ୍ଟ ବଢ଼ାଏ । ଅତୀତ ଯଦି ଗରିମାମୟ, ତାକୁ ଝୁରି ହେବା ହିଁ ସାର ହୁଏ, ଅତୀତ ଯଦି କାଳିମାମୟ, ତାର ସ୍ମରଣ ବ୍ୟକ୍ତିକୁ ବ୍ୟଥିତ କରେ । ଏଣୁ ଇତିହାସର ଅଧ୍ୟୟନ ସମ୍ପୂର୍ଣ୍ଣ ଅନାବଶ୍ୟକ । ସମାଜ ବର୍ତ୍ତମାନକୁ ନେଇ ବଞ୍ଚେ, ତା'ପାଇଁ ବର୍ତ୍ତମାନ ହିଁ ସବୁ କିଛି । ପୁଣି ଏମିତି କିଛି ଲୋକ ବି ଅଛନ୍ତି ଯେଉଁମାନେ ଇତିହାସକୁ ଖୋଲାଖୋଲି ସମାଲୋଚନା ସିନା କରନ୍ତି ନାହିଁ, ହେଲେ ଅନ୍ତଃମନରେ ତା'ର ଅନାବଶ୍ୟକତାକୁ ହିଁ ଅନୁଭବ କରନ୍ତି । ଇତିହାସ ଆମ ପାଠ୍ୟକ୍ରମରେ ସ୍ଥାନୀତ, ତେଣୁ ଧରାବନ୍ଧା ଭାବେ ତାକୁ ପଢ଼ିଯାଅ । ସେ ପୋଥି ବାଇଗଣ, କେବେ ବାଡ଼ି ବାଇଗଣ ହୋଇପାରିବ ନାହିଁ । ଉପାଦେୟତା ରହିତ ଅନେକ ପାଠ୍ୟକ୍ରମ ପରି ସେ ବି ଗୋଟାଏ । ଜୀବ ବିଜ୍ଞାନ ପରି ତାହା ଡାକ୍ତର ତିଆରି କରି ପାରେନା, କି କମ୍ପ୍ୟୁଟର ପରି ପ୍ରତିଟି ସମସ୍ୟାର ଆଶୁ ସମାଧାନ ଦେଇ ପାରେନା, ଅଥବା ସାହିତ୍ୟ ପରି ତା'ର ପାଠନ ଆମୋଦଦାୟୀ ନୁହେଁ । ମୁଁ କିଛି ପଢ଼ାଶୁଣା ଲୋକଙ୍କ ସଂସ୍ପର୍ଶରେ ଆସିଛି ଯେଉଁମାନେ ଅଜ୍ଞାନ ଘୋଷିତ ହେବାର ଡରରେ ସିନା ଚୁପ୍ ରହନ୍ତି । ଅନ୍ୟଥା ଇତିହାସର ସାମାଜିକ ଉପାଦେୟତାକୁ ନେଇ ସଦା ସନ୍ଦେହୀ ।

ଏ ତ ଗଲା ସାଧାରଣ ପାଠକଙ୍କ ବିଚାର । ପୁଣି ଶ୍ରେଣୀ ଗୃହରେ ମଧ୍ୟ ଇତିହାସ ପ୍ରତି ଏକ ଅସୂୟା ଭାବ ହିଁ ସାଧାରଣତଃ ଦେଖାଯାଏ । ଇତିହାସ ଚାକିରି ଦେଇପାରେ ନା, ଇତିହାସ ଘୋଷିବାକୁ ପଡ଼େ, ଇତିହାସର ଅଧ୍ୟୟନ ଛାତ୍ର ମହଲରେ ଆଗ୍ରହ ସୃଷ୍ଟି କରି ପାରେନା । ତେଣୁ ଦଶମ ଶ୍ରେଣୀ ଯାଏଁ, ଯେହେତୁ ଏହା

ପାଠ୍ୟକ୍ରମର ଏକ ଅଭିନ୍ନ ଅଂଶ, ବାଧ୍ୟରେ ପଢ଼ିଯିବା କଥା, ତା ଉତ୍ତାରୁ ଯେତେ ଶୀଘ୍ର ଇତିହାସ ଅଧ୍ୟୟନରୁ ତ୍ରାହି ମିଳିଲେ ରକ୍ଷା । ଏହି କାରଣରୁ ଶ୍ରେଣୀର ଭଲ ଛାତ୍ର ଉଚ୍ଚ ଶିକ୍ଷା ବେଳେ ଇତିହାସ ପଢ଼ନ୍ତି ନାହିଁ, ଆମ ଭଳିଆ ଅଳ୍ପଙ୍କୁ ଆଶାବାଡ଼ି କରି 'ଇତିହାସ' ତା'ର ବାଟ ଚାଲେ ।

ହେଲେ ସତରେ କ'ଣ ଇତିହାସର କୌଣସି ସାମାଜିକ ଉପାଦେୟତା ନାହିଁ ? ପ୍ରଶ୍ନଟିର ଉତ୍ତର ଦେବାବେଳେ ଶ୍ରେଣୀରେ ମୁଁ ଡାକ୍ତର ଓ ରୋଗୀର ଏକ ଉଦାହରଣ ଦିଏ । ଆକସ୍ମିକ ମୁଣ୍ଡବ୍ୟଥାର ନିରାକରଣ ପାଇଁ ଯେତେବେଳେ ରୋଗୀ ଯାଆନ୍ତି, ଡାକ୍ତରର ପ୍ରଶ୍ନ ହୁଏ, ଗତକାଲି କ'ଣ ଖାଇଥିଲେ ? ପଅର ଦିନ ରାତିରେ ନିଦ ହୋଇଥିଲା ନା ନାହିଁ ? ତା ପୂର୍ବରୁ ମନ ବିଷାଦଗ୍ରସ୍ତ ଥିଲା କି ? ଇତ୍ୟାଦି ଇତ୍ୟାଦି । ଅର୍ଥାତ୍ ରୋଗର ନିଦାନ ଖୋଜିବାକୁ ଯାଇ ଡାକ୍ତର ବର୍ତ୍ତମାନ ସର୍ବସ୍ୱ ନ ହୋଇ ଅତୀତକୁ ବ୍ୟାଖ୍ୟା କରନ୍ତି, ରୋଗର ଚେରକୁ ଖୋଜନ୍ତି । ତାଙ୍କୁ ଜଣା, ଅନେକ ଗୁଡ଼ିଏ କାରଣର ପରିଣାମ ହେଲା ମୁଣ୍ଡବ୍ୟଥା । ଅତୀତରେ ଘଟିଥିବା କାରଣ ଓ ବର୍ତ୍ତମାନ ଦେଖାଦେଇଥିବା ପରିଣାମ ମଧ୍ୟରେ ଥିବା ସମ୍ବନ୍ଧକୁ ଯଦି ଦେଖା ନ ଯାଏ ସମସ୍ୟାର ସମାଧାନ ନୋହିବ । ମୋଟ କଥା ହେଲା, ବର୍ତ୍ତମାନକୁ ବୁଝିବା ପାଇଁ ଅତୀତକୁ ଘାଣ୍ଟିବାର ଆବଶ୍ୟକତା ରହିଛି । ତେବେ ଯାଇ ଆମେ ସାମ୍ପ୍ରତିକ ସମସ୍ୟାରୁ ଉଭୁରି ପାରିବା, ଏକ ସୁଖଦ ଭବିଷ୍ୟତ ରଚନା କରିପାରିବା । ଅତୀତର ଏହି ଅଧ୍ୟୟନ ପ୍ରକ୍ରିୟାରୁ ଜୀବବିଜ୍ଞାନୀ ଡାକ୍ତର ବି ମୁକ୍ତ ନୁହନ୍ତି । ଡାକ୍ତରଙ୍କ ବିଶ୍ଳେଷଣ ଯଦି ଭୁଲ୍ ତେବେ ତାଙ୍କ ପରାମର୍ଶ ଅନ୍ଧାରରେ ବାଡ଼ି ବୁଲେଇଲା ପରି ହୁଏ । ଠିକ୍ ସେମିତି ଐତିହାସିକ ପରି ସମାଜ ବିଜ୍ଞାନୀଙ୍କ ଅତୀତର ବିଶ୍ଳେଷଣ ଯଦି ତର୍କନିଷ୍ଠ, ଯୁକ୍ତିସଂଗତ ନୁହେଁ, ସାମ୍ପ୍ରତିକ ସମସ୍ୟା ସବୁ ଅସମାଧିତ ରହେ, ଅବୁଝା ହୁଏ । ସମସ୍ୟା ପାଇଁ 'ଇତିହାସ'କୁ ଦାୟୀ କରାଯାଇ ନପାରେ ।

ଉପରୋକ୍ତ ଆଲୋଚନାରୁ ଗୋଟାଏ କଥା ସ୍ପଷ୍ଟ ହୁଏ ଯେ ଇତିହାସକୁ ଏକ ନିର୍ଦ୍ଦିଷ୍ଟ ବିଷୟ ଯାକେ ସୀମିତ କରିହେବ ନାହିଁ । ଗଣିତ, ବିଜ୍ଞାନର ଇତିହାସ ଅଛି, ଉଡ଼ାଜାହାଜ, ବୁଡ଼ା ଜାହାଜର ଇତିହାସ ରହିଛି, ସାଙ୍ଗରେ ଇତିହାସର ମଧ୍ୟ ଇତିହାସ ରହିଛି । ଇତିହାସ ଏକ ଦୃଷ୍ଟିକୋଣ ଯାହା ପ୍ରତିଟି ବିଷୟ ବସ୍ତୁ, ସମାଜ ଓ ସଭ୍ୟତାର ସାମଗ୍ରିକ ରୂପକୁ ବୁଝିବା ସକାଶେ ସହାୟତା କରେ । ବର୍ତ୍ତମାନର ପ୍ରତ୍ୟେକ ଘଟଣା ଏକ କ୍ରମିକ ବିକାଶର ପ୍ରତିଫଳ ଓ ପରିଣାମ ଏବଂ ସେହି କ୍ରମବିକାଶକୁ ବୁଝିବା ସକାଶେ ଇତିହାସ ଆୟୁଧ ହୁଏ, ଦୃଷ୍ଟିକୋଣ ଦିଏ । ତେଣୁ

ବର୍ତ୍ତମାନକୁ ବୁଝିବା ପାଇଁ ପାରିପାର୍ଶ୍ୱିକ ଘଟଣାଗୁଡ଼ିକୁ ଜାଣିବା ଯେତେ ଆବଶ୍ୟକ, ଅତୀତର ନେଡ଼ିଗୁଡ଼କୁ ଧ୍ୟାନ ଦେବା ମଧ୍ୟ ସେତେ ଆବଶ୍ୟକ । ତେଣିକି ସେହି ଆବଶ୍ୟକତାକୁ ଦୃଷ୍ଟିରେ ରଖି ଆମେ ସମାଜ ଓ ସଭ୍ୟତାର ଗଭୀରତାକୁ ମାପିବେ, ନା କେବଳ କେତେକ ବ୍ୟକ୍ତିବିଶେଷଙ୍କ ନାମ, ଜନ୍ମ ତାରିଖ, ବଂଶାବଳୀକୁ ଶୁଆପରି ମନେ ରଖିବା ଉଦ୍ଦେଶ୍ୟରେ ଇତିହାସର ପଠନ-ପାଠନ କରିବେ, ତା ଆମ ଉପରେ ନିର୍ଭର କରିବ ।

ଇତିହାସକୁ ଅତୀତ ଓ ବର୍ତ୍ତମାନ ମଧ୍ୟରେ ଚାଲିଥିବା ଏକ ନିରନ୍ତର ସମ୍ବାଦ ରୂପେ ମଧ୍ୟ ଦେଖାଯାଇ ପାରେ । ଆମେ ସମଗ୍ର ଇତିହାସର ସେହି ଅଂଶକୁ ମହତ୍ତ୍ୱ ଦେଇ ଅଧ୍ୟୟନ କରୁ ଯାହାର ବର୍ତ୍ତମାନରେ ଆମ ପାଇଁ ଆବଶ୍ୟକତା ଥାଏ । ଏହି ଆବଶ୍ୟକତାକୁ ଉପଲବ୍ଧି କରି ସାମ୍ପ୍ରତିକ ସମୟରେ ଶାସକବର୍ଗ ଇତିହାସର ପୁନର୍ଲିଖନ କରନ୍ତି, ତା' ଉପରେ ନିୟନ୍ତ୍ରଣ ଜାହିର କରନ୍ତି, କାରଣ ତାଙ୍କୁ ଜଣା, ଅନ୍ୟଥା, ବର୍ତ୍ତମାନରେ ତାଙ୍କ କର୍ତ୍ତୃତ୍ୱକୁ ବଳ ମିଳିବ ନାହିଁ । ତାଙ୍କ ଗଢ଼ା ଅତୀତ ଓ ଇତିହାସ ତାଙ୍କ ବର୍ତ୍ତମାନକୁ ଯୁକ୍ତିଯୁକ୍ତତା ଦିଏ । ଗତ କିଛି ବର୍ଷ ହେଲା ସରକାର ଓ କ୍ଷମତାଧାରୀ ଦଳ ଇତିହାସର ସ୍କୁଲ ବହିଗୁଡ଼ିକର ପୁନର୍ଲିଖନ ନିମନ୍ତେ ଯେଉଁ ଆଗ୍ରହ ଦେଖାଇଛନ୍ତି ଏବଂ ପାର୍ଲାମେଣ୍ଟ ତଥା ଗଣମାଧ୍ୟମରେ ସମାଲୋଚିତ ହେଉଛନ୍ତି ତାକୁ 'କର୍ତ୍ତୃତ୍ୱ ପ୍ରଶ୍ନ' ସହ ଯୋଡ଼ି ଦେଖିଲେ ହୁଏତ ଆମେ ପ୍ରକୃତ ଉଦ୍ଦେଶ୍ୟ ବୁଝି ପାରିବା । ଅସଲରେ ଇତିହାସର ପ୍ରାସଙ୍ଗିକତା ଓ ଉପାଦେୟତାକୁ ବୁଝିବା ପାଇଁ ମଧ୍ୟ ଏହା ବେଶ୍ ସାହାଯ୍ୟ କରିବ ।

❏❏

# ଇତିହାସ ଓ ବସ୍ତୁନିଷ୍ଠା

ପ୍ରତ୍ୟେକ ସମାଜର, ସେ ସ୍ଥାନୀୟ ହେଉ ବା ସର୍ବଭାରତୀୟ ବା ବିଶ୍ୱ ସ୍ତରୀୟ, ଗୋଟାଏ ଇତିହାସ ରହିଥାଏ, ଐତିହାସିକ ଚରିତ୍ର ରହିଥାନ୍ତି । ଯେଉଁ ସମାଜରେ ଲିଖିତ ପରଂପରାରେ ବିଶେଷ ପ୍ରଚଳନ ନାହିଁ, ସେଠି ମୌଖିକ ପରଂପରାରେ ଇତିହାସ ରହିଯାଏ । ସମସାମୟିକ ଯୁଗରେ ସମାଜ ଓ ତାର ଅଧିବାସୀଙ୍କୁ ସମ୍ମାନର ସହ ତିଷ୍ଠି ରହିବା ପାଇଁ ଇତିହାସ ପ୍ରେରଣା ଯୋଗାଏ, କିଛି ଐତିହାସିକ ଚରିତ୍ର ଆଦର୍ଶ ହୋଇ ରହନ୍ତି । ଇତିହାସ ସର୍ବଦା ସମାଜ ଓ ସଭ୍ୟତାର ମୂଳ ହୁଏ । ଯେଉଁ ସଭ୍ୟତାର ଇତିହାସ ଯେତେ ପୁରୁଣା ସେହି ସଭ୍ୟତାର ମୂଳ ସେତେ ଗଭୀରତର ବୋଲି ବୁଝାପଡ଼େ । ଏହା ସଭ୍ୟତାର ସୁଦୃଢ଼ତାକୁ ସ୍ପଷ୍ଟ କରାଏ । ସେଇଥିପାଇଁ ପାଞ୍ଚ ହଜାର ବର୍ଷ ପୂର୍ବେ ଗଢ଼ି ଉଠିଥିବା ସିନ୍ଧୁ ସଭ୍ୟତାକୁ ଆମ ଆଧୁନିକ ସମାଜର ମୂଳାଧାର ରୂପେ ଦେଖାଯାଏ ଓ ସଂପତ୍ତି ବୋଲି ଗଣାଯାଏ ।

ଅନେକ ସମୟରେ କିଛି ଲୋକ ତାତ୍କାଳିକ ଲାଭ ଆଶାରେ ଇତିହାସକୁ ବିକୃତ କରନ୍ତି । ଇତିହାସ ଉଦ୍ଦେଶ୍ୟ ପ୍ରଣୋଦିତ ଭାବେ ଲେଖାହୁଏ, କିଛି ଐତିହାସିକ ଚରିତ୍ରଙ୍କୁ ନେଇ ବୃଥା ଆସ୍ଫାଳନ କରାଯାଏ, ତ ପୁଣି ଆଉ କିଛି ଚରିତ୍ରଙ୍କୁ ଅଯଥା ସଂହାର କରାଯାଏ । ଏହା ପଛରେ ଉଦ୍ଦେଶ୍ୟ ଥାଏ ସାମୟିକ ଭାବେ ସମାଜରେ ଉନ୍ମାଦନା ସୃଷ୍ଟି କରିବା । ଉନ୍ମାଦନାକୁ ବଳ କରି ନିଜର ସୀମିତ ସ୍ୱାର୍ଥ ହାସଲ କରିବା; ମାତ୍ର ବସ୍ତୁନିଷ୍ଠାର ଅଭାବରେ 'ଏଭଳି' ଇତିହାସ ସମୟ ସୁଅରେ ଭାସିଯାଏ, ଗ୍ରହଣଯୋଗ୍ୟ ହୋଇ ରହି ପାରେନା । ଅନ୍ୟ ପକ୍ଷରେ ବୃଥା ଆସ୍ଫାଳନର ଭାଗୀ ହୋଇଥିବା ଇତିହାସ ଚରିତ୍ର ମଧ ପରିଶେଷରେ ତାଙ୍କ ନ୍ୟାଯ୍ୟ ଐତିହାସିକ ମହତ୍ତ୍ୱ ଯାକେ ବି ପାଇପାରନ୍ତି ନାହିଁ । ଅନ୍ୟ ଅର୍ଥରେ କହିଲେ, ବିକୃତ ଇତିହାସ୍ର ରଚନାକାର ଉଭୟ 'ନାୟକ' ଓ 'ଖଳନାୟକ'ର କ୍ଷତି କରେ, ତା'ର ରଚନା ପାଠକ ପାଇଁ ମଧ ବିଶ୍ୱାସଯୋଗ୍ୟ ହୋଇପାରେନା । ଏହି ଦୃଷ୍ଟିରୁ ସର୍ବଦା ବସ୍ତୁନିଷ୍ଠ ଐତିହାସିକ ଆଲୋଚନାର ଆବଶ୍ୟକତା ରହିଛି । ତା'ଦ୍ୱାରା ସମାଜରେ ସତ୍ୟର

ମହତ୍ତ୍ୱ ବଜାୟ ରହେ । ବସ୍ତୁନିଷ୍ଠା ମାନେ ବାସ୍ତବତା ପ୍ରତି ନିଷ୍ଠା । 'ଅତୀତ'ର ବାସ୍ତବିକତା 'ବର୍ତ୍ତମାନ'ପାଇଁ କଠୋର ହୋଇ ପାରେ । ତା ସତ୍ତ୍ୱେ ତା' ପ୍ରତି ସହନଶୀଳ ହେବାକୁ ବସ୍ତୁନିଷ୍ଠ ଇତିହାସ ଆମକୁ ଶିକ୍ଷା ଦିଏ ।

ଆମେ ଆଧୁନିକ ଓଡ଼ିଶା ଇତିହାସକୁ ଯଦି ପର୍ଯ୍ୟାଲୋଚନା କରିବା ସେଥିରେ ଅନେକ ଐତିହାସିକ ଚରିତ୍ର ଅଛନ୍ତି ଯାହାଙ୍କୁ ନେଇ ନିରପେକ୍ଷ ବସ୍ତୁନିଷ୍ଠ ଆଲୋଚନାର ଆବଶ୍ୟକତା ରହିଛି । ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ସୁରେନ୍ଦ୍ର ସାଏ, ଧରଣୀଧର ଭୂୟାଁ, ମଧୁସୂଦନ ଦାସ, ଗୋପବଂଧୁ ଦାସ ଏବଂ ଆହୁରି ଅନେକ । ଏମାନଙ୍କ ବାହାରେ ଆହୁରି ଅନେକ ଚରିତ୍ର ଅଛନ୍ତି ଯେଉଁମାନଙ୍କ ନାଁ ମଧ ଓଡ଼ିଶା ସ୍ତରରେ ଶୁଣାଯାଏ ନାହିଁ । ଏଭଳି ଏକ ନାଁ ହେଲା ବରଗଡ଼ ଜିଲ୍ଲା ଘେଁସର ହଟେ ସିଂ, ଯିଏ ରାଜନୈତିକ କାରଣରୁ ଆଣ୍ଡାମାନରେ ଦୀପାନ୍ତର ଦଣ୍ଡ ଭୋଗି ପରିଶେଷରେ ପ୍ରାଣତ୍ୟାଗ କରିଥିବା ବୋଧେ ପ୍ରଥମ ଓଡ଼ିଆ । ଅଯଥା ଭାବପ୍ରବଣ ହୋଇ ଆମେ ଏଭଳି ଚରିତ୍ରମାନଙ୍କୁ ଚିରକାଳ 'ଅଲୌକିକ ପୁରୁଷ' ସ୍ତରରେ ରଖି ଦିଅନ୍ତି । ଫଳରେ ସେମାନେ ହାଡ଼ମାଂସର ଜଣେ ଜଣେ 'ଐତିହାସିକ ଚରିତ୍ର' ହୋଇ ପାରନ୍ତି ନାହିଁ । ଏହି କାରଣରୁ ଦୀର୍ଘ ୩୭ ବର୍ଷ ବ୍ରିଟିଶ୍ ଜେଲ୍‌ରେ ରହି ସୁଦ୍ଧା ସୁରେନ୍ଦ୍ର ସାଏ ସମ୍ବଲପୁର ସ୍ତରର ହୋଇ ରହିଯାଇଛନ୍ତି । ବକ୍ସି ଜଗବନ୍ଧୁ ଖୋର୍ଦ୍ଧା-ପୁରୀରୁ ବାହାରକୁ ଯାଇପାରି ନାହାନ୍ତି । ନିରପେକ୍ଷ ବସ୍ତୁନିଷ୍ଠ ଆଲୋଚନା ହେଲେ ସେମାନେ ବିଶ୍ୱ ଇତିହାସର ପୃଷ୍ଠା ମଣ୍ଡନ କରିବା କଥା, ଅଯଥା ଭାବପ୍ରବଣ ହେବା ଯୋଗୁଁ ଆମେ ସେମାନଙ୍କୁ ସର୍ବ-ଓଡ଼ିଶା ସ୍ତରରେ ସୁଦ୍ଧା ପରିଚିତ କରାଇ ପାରିନାହାନ୍ତି । ବ୍ରାହ୍ମଣ, ଖଣ୍ଡାୟତ ପରି ଏକ ଜାତି ବା ଖୋର୍ଦ୍ଧା, ସମ୍ବଲପୁର ପରି ଏକ ସୀମିତ ଅଂଚଳରେ ତାଙ୍କ ଭକ୍ତମାନେ ଇତିହାସ ପୁରୁଷଙ୍କୁ ରୁଦ୍ଧ କରିଦିଅନ୍ତି । ଏହାଠାରୁ ବଳି ଅବଶୋଷର ବିଷୟ ଆଉ କ'ଣ ହୋଇପାରେ ।

ପ୍ରଶ୍ନ ଉଠେ, ବସ୍ତୁନିଷ୍ଠ ଆଲୋଚନା ହେବ କେମିତି ? ତା' ପାଇଁ ଯେତେ ଆବଶ୍ୟକ ପ୍ରତିଭାଶାଳୀ ନିରପେକ୍ଷ ଆଲୋଚକର, ତା'ଠାରୁ ଅଧିକ ଆବଶ୍ୟକ ଏକ ସହନଶୀଳ ସମାଜର । କେଉଁ ଏକ ଐତିହାସିକ ଚରିତ୍ରର ମହତ୍ତ୍ୱ ବିଶ୍ଳେଷଣ କଲାବେଳେ, ଉକ୍ତ ଚରିତ୍ରର ଗୁଣ ସାଙ୍ଗରେ ଦୋଷ ବି ଆଲୋଚିତ ହୁଏ । ଦୋଷ ରହିତ ଗୁଣୀ ପୁରୁଷଟିଏ କିମ୍ବା ଗୁଣ ରହିତ ଦୋଷୀ ପୁରୁଷଟିଏର ସୃଷ୍ଟି କେବଳ କଳ୍ପନାରେ ସଂଭବ ହୋଇପାରେ, ବାସ୍ତବିକତାରେ ନୁହେଁ । ଅର୍ଥାତ୍ ବସ୍ତୁନିଷ୍ଠ ଆଲୋଚନାରେ ଉଭୟ ଦୋଷ ଓ ଗୁଣ ଚର୍ଚ୍ଚା ହେବା ସ୍ୱାଭାବିକ । ସେତେବେଳେ ସମାଜ ଯଦି ଆଲୋଚକ ପ୍ରତି ଅସହିଷ୍ଣୁ ହେଲା, ଆଲୋଚନା ଅସଂପୂର୍ଣ୍ଣ ହେବା

ସ୍ୱାଭାବିକ । ଅନେକ ସମୟରେ ଦେଖାଯାଏ ଯେ, ମୁଷ୍ଟିମେୟ ବ୍ୟକ୍ତି ଉନ୍ମାଦଗ୍ରସ୍ତ ହୋଇ ପ୍ରାୟତଃ ବ୍ୟକ୍ତିଗତ କାରଣରୁ ଆଲୋଚକ ପ୍ରତି ହିଂସାଭାବ ପ୍ରକଟ କରନ୍ତି । ମାତ୍ର ଏଭଳି ହିଂସା ପ୍ରତି ଯଦି ସ୍ଥାନୀୟ ସମାଜର ନୀରବ ସମର୍ଥନ ନ ରହେ, ତେବେ ଉନ୍ମାଦଗ୍ରସ୍ତ ବ୍ୟକ୍ତି ନିଜ ଭାର ହରାନ୍ତି, ତାଙ୍କ ଉନ୍ମାଦନା କସ୍ମିନକାଳେ ଆଲୋଚନା ଓ ଆଲୋଚକର ବିଶେଷ କ୍ଷତି କରି ପାରେନା । ମୋଟ କଥା ହେଲା, ଲେଖା ପଢ଼ାର ଦୁନିଆଁରେ ଗାଳି-ଗୁଲଜ, ଖଣ୍ଡା-ତରବାରୀର ପ୍ରୟୋଗ ଶୋଭା ପାଏନା । ଭୟର ବାତାବରଣ ଯୋଗୁଁ ସତ୍ୟାନ୍ୱେଷୀମାନେ ବି ମନକଥା, ସତକଥା କହି ପାରନ୍ତି ନାହିଁ । ଏହାଦ୍ୱାରା ଲେଖା-ପଢ଼ା ତଳିତଳାନ୍ତ ହୁଏ, ସମାଜ ଓ ସଭ୍ୟତା ପଛକୁ ଟାଣି ହୋଇଯାଏ । ଯେଉଁ ସମାଜ ଯେତେ ସଭ୍ୟ, ସେଠି ଉଭୟ ଆଲୋଚନା ଓ ସମାଲୋଚନାର ସ୍ଥାନ ସେତେ ଦୃଢ଼ତର ।

ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ଆମେ ନିଜ ଆଖ ପାଖର ଲେଖକ, ଆଲୋଚକ ପ୍ରତି ଯେତେ ଅସହିଷ୍ଣୁ ହୁଅନ୍ତି, ତତୋଦ୍ଧିକ ମାତ୍ରାରେ ମୁଣ୍ଡ ନୁଆଁଇ ଗ୍ରହଣ କରି ନିଅନ୍ତି ବାହାର ଆଲୋଚକର ଆଲୋଚନାକୁ । ଫଳରେ ଆଖ-ପାଖର ଆଲୋଚକ ଅପେକ୍ଷା ବାହାର ଆଲୋଚକ ସ୍ଥାନୀୟ ସମାଜ ଓ ଇତିହାସକୁ କମ ଜାଣିଥିବା ସତ୍ତ୍ୱେ, ତାଙ୍କ ସିଦ୍ଧାନ୍ତ ଅଧିକ 'ଗ୍ରହଣୀୟ' ହୁଏ । ଆମର ଏପରି 'ଗ୍ରହଣଶୀଳତା' ଯଦି କେବଳ ଇତିହାସ ଓ ଐତିହାସିକ ଚରିତ୍ରର ବିଶ୍ଳେଷଣ ଯାଏଁ ସୀମିତ ରହନ୍ତା, ହୁଏତ ଖୁବ୍ ବେଶି କ୍ଷତି ହୁଅନ୍ତା ନାହିଁ । ପରିତାପର ବିଷୟ ଯେ, ଏହା ଆମ ରାଜନୀତି, ସାହିତ୍ୟ, ସଂସ୍କୃତି, ଅର୍ଥନୀତି, ବିଜ୍ଞାନ ଆଦି ପ୍ରତି କ୍ଷେତ୍ରରେ ପରିବ୍ୟାପ୍ତ । ତେଣୁ ଭାରତୀୟ ଭାବରେ ଆମେ ପଡ଼ୋଶୀ ପାକିସ୍ଥାନକୁ ସହ୍ୟ କରି ପାରିବା ନାହିଁ; ଅଥଚ ଆମେରିକାର ଦାଦାଗିରିକୁ ଶିରୋଧାର୍ଯ୍ୟ କରିନେବେ ! ଆସାମୀୟା ଭାବରେ ଆମେ ପଡ଼ୋଶୀ ବିହାରୀର ପ୍ରବେଶକୁ ବାରଣ କରିବା, ମାତ୍ର ବିଦେଶୀ ବହୁରାଷ୍ଟ୍ରୀୟ କଂପାନୀକୁ ଯୋଡ଼ ହସ୍ତରେ ସ୍ୱାଗତ ଜଣାଇବା । ଠିକ୍ ସେହିଭଳି, 'କୋଶଳୀ' ଭାବରେ ପୂର୍ବ ଓଡ଼ିଶାକୁ ବା ଉପକୂଳୀୟ ଭାବରେ 'କୋଶଳୀ'କୁ ଲୋକହସା କରିବା, ହେଲେ ସାଂସ୍କୃତିକ ସାମ୍ରାଜ୍ୟବାଦର ଶିକାର ହେବାକୁ ଅତି ଆଗ୍ରହରେ ସ୍ୱୀକାର କରିଯିବା । ଆମ ଦୃଷ୍ଟିକୋଣରେ ଥିବା ଏତେସବୁ ଅନ୍ତର୍ଦ୍ୱନ୍ଦ୍ୱକୁ ଅଣଦେଖା କରି କି କେବେ ଇତିହାସ ଓ ଐତିହାସିକ ଚରିତ୍ର ଗୁଡ଼ିକର ବସ୍ତୁନିଷ୍ଠ ନିରପେକ୍ଷ ଆଲୋଚନା ସଂଭବ ହେବ ?

❐❐

# ଇତିହାସର ଆଲୋଚନା

ଭାରତରେ ଏକା ସମୟରେ ଇଂରେଜ ଶାସନ ଓ ଇଂରେଜ ବିରୋଧୀ ବିଦ୍ରୋହମାନ ଆରମ୍ଭ ହେଲେ ବୋଲି କହିଲେ ଆଦୌ ଭୁଲ ହେବ ନାହିଁ । ୧୭୫୭ ମସିହାର ପଲାସୀ ଯୁଦ୍ଧ ପରେ ଇଂରେଜମାନେ ପ୍ରଥମ କରି ଏକ ବାଣିଜ୍ୟିକ ସଂଗଠନରୁ ଯାଇ ଏକ ଶାସକ ବର୍ଗର ମର୍ଯ୍ୟାଦା ପାଇଲେ । ପ୍ରତ୍ୟକ୍ଷ ରୂପେ ସେମାନେ ବଙ୍ଗପ୍ରଦେଶ ଅଧିକାର କଲେ । ଏହି ଘଟଣାର ମାତ୍ର କିଛି ବର୍ଷ ପରେ ଅର୍ଥାତ୍ ୧୭୬୫ ମସିହା ବେଳକୁ ସେଠି ସନ୍ନ୍ୟାସୀ ବିଦ୍ରୋହ ଆରମ୍ଭ ହେଲା । କେବଳ ବଙ୍ଗ ନୁହେଁ, ଯେଉଁ ଅଞ୍ଚଳମାନ ଇଂରେଜ ଶାସନାଧୀନ ହେଲା, ସେଠି ସଶସ୍ତ୍ର ବିଦ୍ରୋହ ମଧ୍ୟ ଆରମ୍ଭ ହେଲା । ଉଦାହରଣ ସ୍ୱରୂପ, ୧୮୦୩ ମସିହାରେ ଯଦି ଓଡ଼ିଶା ଅଧିକୃତ ହେଲା, ତା'ର କିଛି ମାସ ପରେ ୧୮୦୪ ମସିହା ବେଳକୁ ଖୋର୍ଦ୍ଧାରେ ଜୟୀ ରାଜଗୁରୁ ବିଦ୍ରୋହର ସୂତ୍ରପାତ କଲେ ଏବଂ ଶେଷରେ ପରାସ୍ତ ହୋଇ ଫାଶୀଦଣ୍ଡରେ ଦଣ୍ଡିତ ହେଲେ ।

ଏହିସବୁ ଇଂରେଜ ବିରୋଧୀ ବିଦ୍ରୋହ ପଛରେ ବଡ଼ କାରଣ ଥିଲା- ଦ୍ରୁତ ସାମାଜିକ ଓ ଆର୍ଥିକ ପରିବର୍ତ୍ତନ । ନିଜ ଅଧୀକୃତ ଅଞ୍ଚଳରେ ଇଂରେଜମାନେ ଉପନିବେଶବାଦୀ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ନୂଆ ନୂଆ ପରିବର୍ତ୍ତନମାନ ଆରମ୍ଭ କଲେ । ଅଧିକ ଭୂ-ରାଜସ୍ୱ ଆଦାୟ ପାଇଁ ଜମିଜମା ଆଇନରେ ପରିବର୍ତ୍ତନମାନ ଅଣାଗଲା । ଜଙ୍ଗଲ ନିୟମମାନ ପରିବର୍ତ୍ତିତ ହେଲା । ପ୍ରତି କଥାରେ କୋର୍ଟ କଚେରିର ଜଟିଳତା ଏଣିକି ଲୋକଙ୍କ ପାଇଁ କାଳ ହେଲା । କୌଣସି ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ନ ହେଉ ପଛେ, ନିଜ ଅନୁଭୂତିରୁ ଲୋକ ଧରିନେଲେ ଯେ ଇଂରେଜ ସରକାର ଭାରତର ଚିରାଚରିତ ରାଜା-ରାଜୁଡ଼ାଙ୍କ ଶାସନଠାରୁ ଅଧିକ ଅସହ୍ୟ । ଇଂରେଜମାନେ କେବଳ ଦେଖିବାକୁ ଭିନ୍ନ ନୁହନ୍ତି, ଆଚରଣରେ ମଧ୍ୟ ଅଧିକ ଉଗ୍ର, ଅଧିକ ରୁକ୍ଷ । ଏହି ଅବବୋଧ ଲୋକଙ୍କୁ ଇଂରେଜ ବିରୋଧୀ ହେବାପାଇଁ ଅଧିକ ପ୍ରୋତ୍ସାହିତ କଲା ।

ଅଷ୍ଟାଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସଂଘଟିତ ହୋଇଥିବା ଏହି ବିଦ୍ରୋହଗୁଡ଼ିକୁ ସାଧାରଣତଃ ନେତୃତ୍ୱ ଦେଉଥିଲେ ବିଭିନ୍ନ ରାଜ୍ୟର ରାଜା, ଜମିଦାରମାନେ, ନୋହିଲେ ସେମାନଙ୍କ ବଂଶଜମାନେ; କାରଣ ନିଜ ନିଜ ଅଞ୍ଚଳରେ ସ୍ୱାଭାବିକ ରୂପରେ ସେମାନେ ହେଲେ 'ନେତା'। ଦ୍ୱିତୀୟତଃ ଇଂରେଜ ଅଧିକାର ଯୋଗୁଁ ସେମାନେ ବିଶେଷ ଭାବରେ କ୍ଷତିଗ୍ରସ୍ତ ମଧ୍ୟ ହୋଇଥିଲେ। କାହା ହାତରୁ ରାଜ୍ୟ ଚାଲିଗଲା ତ କାହାକୁ ଇଚ୍ଛା ବିରୋଧରେ ସମସ୍ତ ସ୍ୱାଭିମାନକୁ ଜଳାଞ୍ଜଳି ଦେଇ ଅପମାନଜନକ ସନ୍ଧିପତ୍ରରେ ସ୍ୱାକ୍ଷର କରିବାକୁ ପଡ଼ିଲା। ଅନେକେ ନାମକୁ ମାତ୍ର ରାଜା ହୋଇ ରହିଲେ, ମାତ୍ର ହାତରେ ରାଜ-ଅଧିକାର ରହିଲା ନାହିଁ। ଏହି ପରିପ୍ରେକ୍ଷୀରେ ବିଦ୍ରୋହ ସେମାନଙ୍କ ପାଇଁ ଏକମାତ୍ର ବିକଳ୍ପ ହେଲା। ତୃତୀୟତଃ, ବିଦ୍ରୋହର ନେତୃତ୍ୱ ନେବାପାଇଁ ସେ ସମୟରେ ଅପେକ୍ଷାକୃତ ଭାବେ ଶକ୍ତିଶାଳୀ ରାଜା ରାଜୁଡ଼ାମାନେ ହିଁ ଅନ୍ୟମାନଙ୍କ ତୁଳନାରେ କିଛିଟା ସାମର୍ଥ୍ୟ ରଖୁଥିଲେ। ଏହି ଆଧାରରେ ଆମ ଓଡ଼ିଶାରେ ବକ୍ସି ଜଗବନ୍ଧୁ, ସୁରେନ୍ଦ୍ର ସାଏ ହୁଅନ୍ତୁ କି ଛୋଟିଆ ଘେଁସ ଜମିଦାରୀର ମାଧୋ ସିଂ, ହଟେ ସିଂ ହୁଅନ୍ତୁ— ସବୁ ବିଦ୍ରୋହୀ ନେତା ଥିଲେ ପ୍ରାକ୍ତନ ରାଜା, ଜମିଦାର, ନୋହିଲେ ରାଜା-ଜମିଦାର ବଂଶୀୟ।

ବିଦ୍ରୋହ ସବୁରେ କିନ୍ତୁ ଅନେକ ସାଧାରଣ ଲୋକ ପ୍ରତ୍ୟକ୍ଷ ରୂପେ ଭାଗ ନେଇଥିଲେ। ୧୮୫୭ ମସିହାର ଗଣବିଦ୍ରୋହ ପରେ କେବଳ ଦିଲ୍ଲୀ ସହରରେ ପ୍ରାୟ ତିନି ହଜାର ଲୋକଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ଦିଆଯାଇଥିଲା, ଯାହାକି ବିଦ୍ରୋହର ବ୍ୟାପକତାକୁ ସ୍ପଷ୍ଟ କରେ। ସୁରେନ୍ଦ୍ର ସାଏଙ୍କୁ ନେଇ ସମଗ୍ର ପଶ୍ଚିମ ଓଡ଼ିଶାରେ ଯେତେ ମାତ୍ରାରେ ଜନଶ୍ରୁତି, କିମ୍ବଦନ୍ତୀ, ଲୋକକଥା ଆଦି ଜନମୁଖରେ ଆଜି ମଧ୍ୟ ପ୍ରଚଳିତ, ସେଥିରୁ ମନେହୁଏ ଯେ ଇଂରେଜ ବିରୋଧରେ ଯୁଦ୍ଧ ଘୋଷଣା କରି ସୁରେନ୍ଦ୍ର ସାଏ ଏବଂ ତାଙ୍କ ସହଯୋଗୀମାନେ ଲୋକଙ୍କର ମନ-ପ୍ରାଣକୁ କିଣି ନେଇଥିଲେ। ଯେଉଁମାନେ ପ୍ରତ୍ୟକ୍ଷ ଭାବରେ ବିଦ୍ରୋହରେ ଯୋଗ ବି ଦେଇ ନାହାନ୍ତି, ସେମାନଙ୍କ ମୌନ ସମର୍ଥନ ଓ ସ୍ୱୀକୃତିରୁ ଅନୁମିତ ହୁଏ ଯେ ଲୋକମାନେ ବି ଥିଲେ ତୀବ୍ର ରୂପେ ଇଂରେଜ ବିରୋଧୀ।

ସେତେବେଳେ ଇଂରେଜ ବିରୋଧୀ ବିଦ୍ରୋହରେ ଭାଗନେବା ପଛରେ ଅନ୍ୟ ଏକ କାରଣ ହେଲା- ଜିଣିବାର ଆଶା। ଶତ୍ରୁ ଯେତେ ବିଧ୍ୱଂସକାରୀ ହେଲେ ବି, ଯଦି ମନରେ ଜିଣିବାର ଆଶା ନ ଥାଏ, ସହଜରେ ବ୍ୟକ୍ତି ଖୋଲାଖୋଲି ବିଦ୍ରୋହରେ

ଇନ୍ଧନ ପ୍ରଦାନ କରେ ନାହିଁ । ଯେହେତୁ ନିଜ ଅଜ୍ଞତା ହେତୁ ଭାରତୀୟମାନେ ଇଂରେଜ ଉପନିବେଶବାଦର ପ୍ରକୃତ କ୍ଷମତା ବିଷୟରେ ଅବଗତ ନ ଥିଲେ ତଥା ଉପନିବେଶବାଦୀ ଶକ୍ତିର ଅସଲି ସ୍ୱରୂପକୁ ବୁଝିପାରି ନଥିଲେ, ବିଦ୍ରୋହରେ ସେମାନେ ନିଜର ବିଜୟକୁ ନେଇ ଖୁବ୍ ଅଧିକ ଆଶାବାଦୀ ରହୁଥିଲେ । ଇଂରେଜମାନଙ୍କୁ ନିଜ ଅଞ୍ଚଳର ସର୍ବଶକ୍ତିମାନ ରାଜା-ରାଜୁଡ଼ାଙ୍କ ନେତୃତ୍ୱରେ ସେମାନେ ପରାସ୍ତ କରିପାରିବେ ବୋଲି ମନରେ ଆଶା ରଖୁଥିଲେ । ଏହି ଆଶା ତାଙ୍କୁ ସଂଗ୍ରାମରେ ଇନ୍ଧନ ପ୍ରଦାନ କରିବାକୁ ସାହସ ଯୋଗାଉଥିଲା ।

୧୮୫୭ ର ଗଣସଂଗ୍ରାମ, ଯାହାକୁ ଲୌକିକସ୍ତରରେ ସିପାହି ବିଦ୍ରୋହ ବୋଲି କୁହାଯାଏ, ସେତେବେଳର ସବୁ ଆଞ୍ଚଳିକ ସଂଗ୍ରାମ ତୁଳନାରେ ଅଧିକ ବ୍ୟାପକ, ତୀବ୍ର ଓ ପ୍ରଭାବଶାଳୀ ଥିଲା । ଉତ୍ତର ଭାରତର ଅନେକ ଅଞ୍ଚଳକୁ ଏହା ବ୍ୟାପିଥିଲା । ଏବେ ଗବେଷକମାନେ କହୁଛନ୍ତି ଯେ, ଦକ୍ଷିଣ ଭାରତରେ ମଧ୍ୟ ସଂଗ୍ରାମର ସମର୍ଥନରେ ଲୋକ ପ୍ରତିକ୍ରିୟା କିଛି ଊଣା ନଥିଲା । ପ୍ରଥମକରି ଏତେ ବ୍ୟାପକ ରୂପରେ ଅନେକ ରାଜା ଜମିଦାର ପରସ୍ପର ଭିତରେ ଯୋଗସୂତ୍ର ରକ୍ଷା କରି ଇଂରେଜମାନଙ୍କ ବିରୋଧରେ ଲଢୁଥିଲେ ଏହି ସଂଗ୍ରାମରେ । ଦ୍ୱିତୀୟତଃ, ଇଂରେଜ ଶାସନର ବଡ଼ 'ରକ୍ଷକ' ବୋଲି ମର୍ଯ୍ୟାଦା ପାଇଥିବା ସେନା ବାହିନୀର 'ସିପାହି'ମାନେ ଏଥିରେ ମୁଖ୍ୟ ଭୂମିକା ନେଉଥିଲେ । ଫଳରେ ଅସ୍ତ୍ରଶସ୍ତ୍ରର ଆଉ ଅଭାବ ରହିଲା ନାହିଁ । ପ୍ରଥମଥର ପାଇଁ ବିଦ୍ରୋହୀମାନଙ୍କ ହାତରେ ଆଧୁନିକ ଅସ୍ତ୍ରଶସ୍ତ୍ର ସବୁ ରହିଲା । ଅନ୍ୟପକ୍ଷରେ ବହୁ ସଂଖ୍ୟାରେ ସାଧାରଣ ଲୋକ ମଧ୍ୟ ସଂଗ୍ରାମର ସମର୍ଥନରେ ରହିଲେ । ସଂଗ୍ରାମ ଏତେ ବ୍ୟାପକ ଓ ପ୍ରଭାବଶାଳୀ ହେଲା ଯେ, ପ୍ରଥମଥର ପାଇଁ ଇଂରେଜମାନେ ସବୁ ଶକ୍ତି ବିନିଯୋଗ କରି ସୁଦ୍ଧା ସାମୟିକ ଭାବେ ହେଉ ପଛେ ଦିଲ୍ଲୀ, ଝାନ୍ସୀ, କାନପୁର, ଲକ୍ଷ୍ନୌ ଆଦି ସହରରୁ ବହିଷ୍କୃତ ହେଲେ ।

ଏତେ ସବୁ ତୀବ୍ରତା ସତ୍ତ୍ୱେ ପରିଶେଷରେ ଏହି ମହାସଂଗ୍ରାମ ଅବଦମିତ ହେଲା, ଭାରତ ପୁଣି ଥରେ ଇଂରେଜମାନଙ୍କ ଦ୍ୱାରା ବିଜିତ ହେଲା । ୧୮୫୭ର ଗଣ ବିଦ୍ରୋହର ବିଫଳତାରୁ ଲୋକ ଧରିନେଲେ ଯେ ଇଂରେଜ ଶାସନକୁ ଉନ୍ମୂଳନ କରିବା ସହଜ ନୁହେଁ । ଦ୍ୱିତୀୟତଃ ଏକଥା ମଧ୍ୟ ସିଦ୍ଧ ହେଲା ଯେ ସଶସ୍ତ୍ର ସଂଗ୍ରାମ କରି ଇଂରେଜମାନଙ୍କୁ ପରାଜିତ କରିବା କାଠିକର ପାଠ । ଏହି ଅନୁଭୂତି ପରେ ଗୋଟାଏ ଦିଗରେ ଇଂରେଜ ଶାସନ ଅଧିକ ସୁଦୃଢ଼ ହେଲା । ଅନ୍ୟ ଦିଗରେ ରାଜାରାଜୁଡ଼ା-ମାନଙ୍କର, ସାମନ୍ତବର୍ଗର ଆଉ ସହଜରେ ଇଂରେଜ ବିରୋଧୀ

ସଂଗ୍ରାମରେ ଆଗଭର ହେବାକୁ ମନ ଗଲା ନାହିଁ । ବରଂ ସେମାନେ ପ୍ରାୟ କ୍ଷେତ୍ରରେ ସରକାରର ଅନୁଗାମୀ ହେବାଟାକୁ ଉଚିତ ମଣିଲେ । ସେମାନଙ୍କ ଅନୁପସ୍ଥିତି ଯୋଗୁଁ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଯେଉଁ ଜାତୀୟତା ସଂଗ୍ରାମର ଅୟମାରମ୍ଭ ହେଲା, ତହିଁରେ ଶିକ୍ଷିତ ବୁଦ୍ଧିଜୀବୀ ଓ ମଧ୍ୟମବର୍ଗଙ୍କୁ ନେତୃତ୍ୱ ମିଳିବା ଯେମିତି ଅବଶ୍ୟମ୍ଭାବୀ ହୋଇ ପଡ଼ିଲା ।

ଭାରତର ଆଧୁନିକ ଇତିହାସର ଏକ ଛୋଟିଆ କାଳଖଣ୍ଡକୁ ନେଇ ଏ ଯେଉଁ ସଂକ୍ଷିପ୍ତ ଚର୍ଚ୍ଚା, ତାହା ପ୍ରଖର ଗବେଷଣା ବୋଲି ଦାବି କରାଯାଇପାରେ । ଏ ଧରଣର ଇତିହାସ ଚର୍ଚ୍ଚାକୁ ପ୍ରାସଙ୍ଗିକ କରିବାକୁ ହେଲେ ଗଭୀର ଗବେଷଣା ଅଧ୍ୟୟନର ଯେତିକି ଆବଶ୍ୟକ, ତା'ଠାରୁ ଅଧିକ ଲୋଡ଼ା ଏକ ସାମଗ୍ରିକ ଓ ବ୍ୟାପକ ଦୃଷ୍ଟିକୋଣର । ତା'ହେଲେ ଯାଇ ଉକ୍ତ ଇତିହାସ ଚର୍ଚ୍ଚା ନିରପେକ୍ଷ ତଥା ବସ୍ତୁନିଷ୍ଠ ହେବାର ଅବସର ପାଇବ । ଅନ୍ୟ ଅର୍ଥରେ କହିଲେ, ଆଂଚଳିକ ଇତିହାସକୁ ଦୃଷ୍ଟି ଦେବା ଜରୁରୀ । କାରଣ ବିଶ୍ୱ ଇତିହାସ ହେଉ ବା ରାଷ୍ଟ୍ରର ଇତିହାସ ହେଉ ତାହା ହେଲା କେତେଗୁଡ଼ିଏ ଆଞ୍ଚଳିକ ଇତିହାସର ଏକ ଥୋକ ସମୂହ; ମାତ୍ର ଭାରତ ଇତିହାସରୁ ନା କୌଣସି ଆଞ୍ଚଳିକ ଇତିହାସକୁ ଅଲଗା କରି ଦେଖି ହେବ ନା ଭାରତ ଇତିହାସକୁ ବିଶ୍ୱ ଇତିହାସରୁ ପୃଥକ୍ କରି ଅଧ୍ୟୟନ କରି ହେବ । ବିଭିନ୍ନ ଆଞ୍ଚଳିକ ଇତିହାସ ଯେମିତି ଯୋଡ଼ାଯୋଡ଼ି ହୋଇ ରହିଛନ୍ତି, ଅତୀତର ଭିନ୍ନ ଭିନ୍ନ କାଳଖଣ୍ଡ (ଯଥା- ପୁରାତନ ମଧ୍ୟ, ଆଧୁନିକ ତଥା ସାମ୍ପ୍ରତିକ) ଆଦି ପରସ୍ପର ମଧ୍ୟରେ ଗୁନ୍ଥି ହୋଇଛନ୍ତି । ଗୋଟିଏ କାରଣ ଓ ଅନ୍ୟଟି 'କାର୍ଯ୍ୟ' । ଗୋଟାକୁ ଅନ୍ୟଠାରୁ ପୃଥକ କରି ହେବନି । ଅନ୍ୟପକ୍ଷରେ ନିରୋଳା ବା ପୃଥକ କରି ଦେଖିବାକୁ ଚେଷ୍ଟା କଲେ, ଆଞ୍ଚଳିକ ଇତିହାସକୁ ନେଇ 'ବୃଥାଗର୍ବ' କିମ୍ବା 'ଅଯଥା ଲଜ୍ଜାବୋଧ' ସୃଷ୍ଟି ହେବାର ଆଶଙ୍କା ରହିଯାଏ । ଆମେ ଓ ଆମ ଅତୀତ ବିଶ୍ୱ ଇତିହାସର ଅବିଚ୍ଛିନ୍ନ ଅଂଶବିଶେଷ ବୋଲି ଧାରଣା ସୃଷ୍ଟି ହୋଇପାରେନା । ଫଳରେ 'ଅତୀତ'ର ଅଧ୍ୟୟନ ବର୍ତ୍ତମାନର ବସ୍ତୁସ୍ଥିତିକୁ ବୁଝିବାରେ କିମ୍ବା 'ଭବିଷ୍ୟତ'କୁ ସଜାଡ଼ିବାରେ ଅସମର୍ଥ ସିଦ୍ଧ ହୁଏ । ବୋଧହୁଏ ଏହି କାରଣରୁ 'ଇତିହାସ' ପାଠକ ପାଇଁ ମାତ୍ର 'ଘୋଷାପାଠ' ହୋଇ ରହିଯାଏ । ବସ୍ତୁତଃ ତାହା ଆମୋଦଦାୟୀ ହୋଇପାରେନା ।



# ଇତିହାସକୁ ଦୁଇ ପଦ

ବସ୍ତୁନିଷ୍ଠ ଆଲୋଚନାର ଅଭାବ ଯୋଗୁଁ ଅନେକ ସମୟରେ ଶିକ୍ଷିତ ଲୋକ ବି ଇତିହାସକୁ ନେଇ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇଥାନ୍ତି । ଅନେକ ସେଭଳି ଭ୍ରମ ଧାରଣାର ଅଯୌକ୍ତିକତାକୁ ସାଧାରଣ ବୁଦ୍ଧିର ଆଧାରରେ ପ୍ରମାଣ ସିଦ୍ଧ କରି ଦେଖାଯାଇପାରେ । ତା' ପାଇଁ ଇତିହାସବିତ୍ ହେବାର ବିଶେଷ ଆବଶ୍ୟକତା ନ ଥାଏ । ମଧ୍ୟବର୍ତ୍ତୀକାଳୀନ ଭାରତକୁ 'ଅନ୍ଧକାର ଯୁଗ' ବୋଲି ଅବିହିତ କରିବା ହେଲା ଏଭଳି ଏକ ଭ୍ରମାତ୍ମକ ଅବଧାରଣା । ପରୋକ୍ଷରେ ଏହା ଇସ୍‌ଲାମ ଓ ତାର ଧର୍ମାବଲମ୍ବୀ ମୁସଲମାନଙ୍କ ପ୍ରତି କଟାକ୍ଷ କରେ, କାରଣ ଭାରତର ମଧ୍ୟଯୁଗରେ ମୁସଲିମ୍ ଶାସକମାନେ ପ୍ରମୁଖତା ପାଇଥିଲେ । ଇସ୍‌ଲାମକୁ ପ୍ରଗତିର ବାଧକ ବୋଲି ମିଛ ଧାରଣା ସୃଷ୍ଟି କରେ । ମାତ୍ର ଯଦି ପ୍ରାଚୀନ କାଳରେ ଦେଶ ଶିକ୍ଷା, ସଂସ୍କୃତି, କଳା, ବିଜ୍ଞାନ ଆଦି ବିଭିନ୍ନ କ୍ଷେତ୍ରରେ ଚରମ ଉତ୍କର୍ଷତା ଲାଭ କରିଥିଲା, ମଧ୍ୟଯୁଗରେ କେବଳ ଦୁଇ ଚାରି ଜଣ ମୁସଲମାନ ଶାସକଙ୍କ 'ପ୍ରାଦୁର୍ଭାବ' ଫଳରେ ହଠାତ୍ ଉନ୍ନତିର ସ୍ରୋତ ପ୍ରତିକୂଳ ହୋଇ ନ ପାରେ । ପୁଣି, କେବଳ ରାଜାଙ୍କ ଆଧାରରେ ଗୋଟାଏ ଶାସନକୁ 'ମୁସଲମାନ' ବା 'ହିନ୍ଦୁ' କୁହାଯିବା କଥା ନୁହେଁ । ତା ସତ୍ତ୍ୱେ, ମୋଗଲ ଶାସନ ପୂର୍ବରୁ ମୁସଲମାନ ଶାସକଙ୍କ ରାଜୁତି ଦିଲ୍ଲୀ ଓ ଉତ୍ତର ଭାରତର କିଛି ଅଞ୍ଚଳ ଯାଏ ସୀମିତ ଥିଲା । ତେଣୁ, ସେମାନେ 'ଦିଲ୍ଲୀ ସୁଲତାନ' ନାମରେ ବିଦିତ ଥିଲେ । ସେହି ଚତୁର୍ଦ୍ଦଶ ଶତାବ୍ଦୀରେ ଯେତେବେଳେ ଦିଲ୍ଲୀରେ ଆଲ୍ଲାଉଦ୍ଦିନ ଖିଲିଜି, ଫିରୋଜ ଶାହ ତୁଗଲକ ପରି ରାଜା ରାଜତ୍ୱ କରୁଥିଲେ, ଠିକ ଏକା ସମୟରେ ଦକ୍ଷିଣରେ ହିନ୍ଦୁରାଜା ହରିହର, କୃଷ୍ଣଦେବ ରାୟ ଆଦିଙ୍କ ଅଧୀନରେ ବିଶାଳ ବିଜୟ ନଗର ସାମ୍ରାଜ୍ୟ ଖ୍ୟାତିଲାଭ କରିଥିଲା । ଅନ୍ତତଃ ପରିସୀମା ଦୃଷ୍ଟିରୁ ତାହା ମୁସଲମାନ ସୁଲତାନଙ୍କ ଦିଲ୍ଲୀ ରାଜ୍ୟଠାରୁ ବହୁତ ଛୋଟ ନ ଥିଲା । ସ୍ୱୟଂ ଆମ ଓଡ଼ିଶାରେ ୧୫୬୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ମୁସଲମାନ ଶାସନର ଚିହ୍ନ ବର୍ଣ୍ଣ ନଥିଲା । ଆକବରଙ୍କ ସମୟରେ ମୋଗଲ କର୍ତ୍ତୃତ୍ୱକୁ ଯେତେବେଳେ ଓଡ଼ିଶା ଗଲା, ସେତେବେଳେ ମଧ୍ୟ ଏଠିକାର ସବୁ ଗଡ଼ଜାତ ଓ ଜମିଦାରୀରେ ହିନ୍ଦୁ ରାଜାମାନେ

ଶାସନ ସମ୍ଭାଳି ଥିଲେ । ଉପରେ ମୋଗଲ ସମ୍ରାଟ ଥିଲେ ସତ, ମାତ୍ର ନିଜ ନିଜ ପ୍ରଶାସନିକ କ୍ଷେତ୍ରରେ ରାଜା, ରାଜୁଡ଼ା ଓ ଅଧିକାରୀମାନେ ମୋଟାମୋଟି ଭାବେ ସର୍ବମୟ କର୍ତ୍ତା ରୂପେ କାର୍ଯ୍ୟ କରୁଥିଲେ । ପାଞ୍ଚ ଶହ ବର୍ଷ ତଳେ ଯେତେବେଳେ ଗମନାଗମନର ଘୋର ଅସୁବିଧା, ସମ୍ବାଦ ପ୍ରେରଣ ସମୟ ସାପେକ୍ଷ, ମୁସଲମାନ ସମ୍ରାଟଙ୍କ 'ଜନବିରୋଧୀ' ନିର୍ଦ୍ଦେଶକୁ ହିନ୍ଦୁ ରାଜା ଜମିଦାରମାନେ ବା ସଦାବେଳେ କାର୍ଯ୍ୟକାରୀ କରିବେ କାହିଁକି ? ତେବେ ତ୍ରୟୋଦଶ ଶତାବ୍ଦୀର ଆରମ୍ଭରୁ ଅଷ୍ଟାଦଶ ଶତାବ୍ଦୀ ଯାଏଁ ମୁସଲମାନମାନେ ଭାରତର ସଭ୍ୟତା ଓ ସଂସ୍କୃତିକୁ ନଷ୍ଟ ବିନଷ୍ଟ କରି ଚାଲିଲେ ବୋଲି ଆକ୍ଷେପ କରିବା କେତେ ତର୍କସଂଗତ ?

କେବଳ ଭାଷା-ସାହିତ୍ୟ କଥା ଯଦି ବିଚାରକୁ ନିଆଯାଏ, ଅବଶ୍ୟ ଏହା ସତ ଯେ ମଧ୍ୟଯୁଗୀୟ କାଳଖଣ୍ଡରେ ସଂସ୍କୃତ ସାହିତ୍ୟର ବିକାଶରେ ଯଥେଷ୍ଟ ଗତିରୋଧ ହୋଇଛି । କାଗଜର ବ୍ୟବହାର ଆରମ୍ଭ ହେବା ଉତ୍ତାରୁ 'ରାମାୟଣ' ଓ 'ମହାଭାରତ'ର ସଂସ୍କୃତରେ ପୁନର୍ଲିଖନ ହେଲା, ଜୈନ ମୁନି ହେମଚନ୍ଦ୍ର ସୁରୀ କିଛି କାବ୍ୟ କବିତା ଲେଖିଲେ । ଏହାକୁ ବାଦ ଦେଲେ, ଦ୍ୱାଦଶ ଶତାବ୍ଦୀ ପରେ ସଂସ୍କୃତରେ ଉଲ୍ଲେଖନୀୟ କାବ୍ୟ କବିତା ସୃଷ୍ଟି ହେବାର ପ୍ରମାଣ ମିଳେ ନାହିଁ । ମାତ୍ର ସଂସ୍କୃତର ଏହି ଅବକ୍ଷୟ ପାଇଁ ମୁସଲିମ ଶାସକଙ୍କୁ ପୂର୍ଣ୍ଣତଃ ଦାୟୀ କରିବା ଅସଙ୍ଗତ ମନେହୁଏ । ମଧ୍ୟଯୁଗରେ ସଂସ୍କୃତ ରଚନା ବିରୋଧରେ ନିଷେଧାଜ୍ଞା ଜାରି ହୋଇ ନାହିଁ । କୌଣସି ମୁସଲିମ ସୁଲତାନ ସଂସ୍କୃତ ଜ୍ଞାନକୁ ଅପରାଧ ଘୋଷଣା କରି ନାହାନ୍ତି । ଅବଶ୍ୟ ସଂସ୍କୃତଜ୍ଞମାନଙ୍କୁ ମୁସଲିମ ରାଜାଙ୍କ ଅନୁଗ୍ରହ ମିଳିନି । ମାତ୍ର ରାଜାନୁଗ୍ରହ ଯଦି କୌଣସି ସାହିତ୍ୟିକ ବିଭବର ଏକମାତ୍ର କାରଣ ହୁଏ, ତେବେ ସେହି ଅନୁଗ୍ରହ ହିନ୍ଦୁ ରାଜାଙ୍କଠାରୁ ସଂସ୍କୃତକୁ ନିଶ୍ଚୟ ମିଳିଥିବ ।

ଅନ୍ୟ ପକ୍ଷରେ ପାର୍ସୀ ଓ ଆରବିକ ସାହିତ୍ୟ ଅନୁବାଦ ମାଧ୍ୟମରେ ନିରନ୍ତର ସଂସ୍କୃତକୁ ଶୈଳୀ, ବିଷୟବସ୍ତୁ ଦେଇଛି, ନିଜକୁ ବୁଦ୍ଧିମନ୍ତ କରିଛି । ମହମ୍ମଦ ବିନ ତୁଗଲକଙ୍କ ସମସାମୟିକ ପାର୍ସୀ କବି ଜିଆ ନକ୍ଷବି ଅନେକ ସଂସ୍କୃତ ଗଳ୍ପକୁ ନିଜ ଭାଷାରେ ଅନୁବାଦ କରି 'ତୁତି ନାମା' ନାମକ ରଚନା ପ୍ରସ୍ତୁତ କଲେ । 'କୋକ ଶାସ୍ତ୍ର' ପାର୍ସୀରେ ଅନୁବାଦ ହେଲା । ଫିରୋଜ ଶାହ ତୁଗଲକଙ୍କ ଶାସନ କାଳରେ ପାର୍ସୀବିଦ୍‌ମାନେ ଚିକିତ୍ସା ଓ ସଙ୍ଗୀତ ବିଷୟକ ଅନେକ ସଂସ୍କୃତ କୃତିକୁ ନିଜ ଭାଷାରେ ଅନୁବାଦ କଲେ । ଚତୁର୍ଦ୍ଦଶ ଶତାବ୍ଦୀରେ କାଶ୍ମୀର ରାଜା ଜୈନ ଉଲ ଆବିଦିନ ପାର୍ସୀରେ 'ମହାଭାରତ' ଓ 'ରାଜ ତରଙ୍ଗିଣୀ'ର ଅନୁବାଦ କଲେ । ପାର୍ସୀର ଏହି ସଂବୃଦ୍ଧିକୁ କ'ଣ ମଧ୍ୟବର୍ତ୍ତୀକାଳୀନ ସାହିତ୍ୟିକ ଉତ୍‌ଥାନର ଅଂଶବିଶେଷ ବୋଲି ଗଣାଯିବ ନାହିଁ ?

ମଧ୍ୟଯୁଗର ଏକ ବଡ଼ ସାହିତ୍ୟିକ-ଭାଷାଭିତ୍ତିକ ଉପଲବ୍ଧି ହେଲା ଆଞ୍ଚଳିକ ଭାଷାମାନଙ୍କର ବିକାଶ । ଅବଶ୍ୟ ଆଗରୁ ଅନେକ ଆଞ୍ଚଳିକ ଭାଷା ଯଥା- ତାମିଲ, ବଙ୍ଗଳା, ମରାଠି ଆଦି ବିକାଶ ଲାଭ କରିଥିଲେ । ମାତ୍ର ମଧ୍ୟଯୁଗରେ ସେମାନଙ୍କର ମହତ୍ତ୍ୱ ବଢ଼ିଲା । ଏହାର ବଡ଼ କାରଣ ହେଲା ଭକ୍ତିଯୁଗର ପ୍ରସାର । ସେ ଯୁଗର ସନ୍ଥମାନେ, ସେ ନାନକ ହୁଅନ୍ତୁ, କି ଚୈତନ୍ୟ ଦେବ ବା ଆସାମର ଶଙ୍କର ଦେବ, ସମସ୍ତେ ସାଧାରଣ ଲୋକଙ୍କ ଭାଷାରେ ସୁବୋଧ୍ୟ କାବ୍ୟ କବିତା ଲେଖିଲେ । ଏହା ଆଞ୍ଚଳିକ ଭାଷାମାନଙ୍କ ମଧ୍ୟରେ ସମ୍ମାନବୋଧ ସୃଷ୍ଟି କଲା । ଭାବର ଆଦାନ ପ୍ରଦାନ ନିମନ୍ତେ ଏଣିକି ବୁଦ୍ଧିଜୀବୀମାନେ ଆଞ୍ଚଳିକ ଭାଷାକୁ ମାଧ୍ୟମ କଲେ । ଓଡ଼ିଶାର ପଞ୍ଚସଖା ତଥା ଓଡ଼ିଆ ଭାଗବତ, ରାମାୟଣ, ସାରଳା ମହାଭାରତ ଆଦି କାବ୍ୟ ହେଲେ ମଧ୍ୟଯୁଗୀୟ କୃତି । ଫଳରେ ସଂସ୍କୃତ ସ୍ଥାନରେ ଆଞ୍ଚଳିକ ଭାଷା, ସାହିତ୍ୟର ମୁଖ୍ୟ ମାଧ୍ୟମ ହେଲା । ପରେ ବୁଦ୍ଧିଜୀବୀର ସୃଜନଶୀଳତା ଅଧିକ ପ୍ରଖର ଏବଂ ସ୍ୱାଭାବିକ ହେଲା । ଏହା ଯୋଗୁଁ ସାଧାରଣ ଲୋକର ପଠନ-ପାଠନ ପ୍ରତି ଅଭିରୁଚି ବଢ଼ିଲା । ଏସବୁ କ'ଣ ମଧ୍ୟଯୁଗୀୟ ସମାଜର ଉତ୍କର୍ଷତାକୁ ଦର୍ଶାଏ ନାହିଁ ?

ଇତିହାସରୁ ପ୍ରତୀତ ହୁଏ ଯେ ସାହିତ୍ୟ ପରି ଅନ୍ୟାନ୍ୟ କ୍ଷେତ୍ରରେ ବି ମଧ୍ୟଯୁଗୀୟ ଭାରତ ପଛେଇ ଯାଇ ନଥିଲା । ମାତ୍ର ପ୍ରଶ୍ନ ଉଠେ, ଏହି ଉତ୍କର୍ଷତା ନିମନ୍ତେ, ପ୍ରତ୍ୟକ୍ଷ ରୂପେ କେବଳ ରାଜା ହିଁ, ସେ ହିନ୍ଦୁ ହୁଅନ୍ତୁ ବା ମୁସଲମାନ, କ'ଣ ପୁରସ୍କାରର ହକ୍‌ଦାର ? ଅମିର ଖୁସ୍ରୋ ଯଦି ମଧ୍ୟଯୁଗରେ 'ସୀତାର' ବାଦ୍ୟଯନ୍ତ୍ର ଉଦ୍ଭାବନ କଲେ, ତାକୁ ବିଶେଷ କରି ତାଙ୍କ ନିଜ ଉଦ୍ୟମ ଓ ସେ କାଳର ସାଙ୍ଗୀତିକ ପରିବେଶର ବରଦାନ ବୋଲି କୁହାଯିବ । ରାଜ୍ୟର ଶାସକ ମୁସଲମାନ ବା ହିନ୍ଦୁ ହେବା ଉପରେ କେବେ ସେହି ଉତ୍କର୍ଷତା ନିର୍ଭରଶୀଳ ନଥିଲା । ଅନ୍ୟ ଅର୍ଥରେ ଏକ ସଭ୍ୟତାର ଉତ୍କର୍ଷତା ବା ଅଧଃପତନକୁ ସମସାମୟିକ ପରିବେଶର ବ୍ୟାପକ ପରିଣାମ ରୂପେ ଦେଖାଯିବା କଥା । ତାକୁ ରାଜାର ବ୍ୟକ୍ତିଗତ ଚରିତ୍ର ବା ଧର୍ମ ଆଧାରରେ ସୀମିତ କରାଯାଇ ନପାରେ । ରାଜା, ଧର୍ମ, ଯୁଦ୍ଧ, ଶାନ୍ତି ଆଦି ପ୍ରତ୍ୟେକ ସାମଗ୍ରିକ ପରିବେଶର ଗୋଟାଏ ଲେଖା କ୍ଷୁଦ୍ର ଉପାଦାନ ମାତ୍ର । ଯୁଗର ଉତ୍କର୍ଷତା ଯଦି କିଛି ମାତ୍ରାରେ ରାଜାର ଅବଦାନ ତେବେ ସମ ପରିମାଣରେ ପ୍ରଜାର ଅବଦାନ ବା ନ ହେବ କେମିତି ? ଠିକ୍ ସେହିଭଳି, ଯୁଗର ଅଧଃପତନ ପାଇଁ ଯଦି କିଛି ମାତ୍ରାରେ ରାଜା ବା ତା' ଧର୍ମ ଦାୟୀ, ସେ ସମୟର 'ଅନ୍ୟମାନେ' ବା ମୋଟ ଦୋଷରୁ ନିଜ ଭାଗ ନ ନେବେ କାହିଁକି ?

◻◻

# ସ୍ୱାଧୀନତା ସଂଗ୍ରାମର ଭିତ୍ତି

ଇଂରେଜ ଶାସକମାନେ ଥିଲେ ମୂଳତଃ ଖ୍ରୀଷ୍ଟିଆନ୍ ଧର୍ମାବଲମ୍ବୀ । ଶାସିତ ଭାରତୀୟ ହେଲେ ହୁଏତ ହିନ୍ଦୁ, ନୋହିଲେ ମୁସଲମାନ । ତା' ସତ୍ତ୍ୱେ ଭାରତର ସ୍ୱାଧୀନତା ସଂଗ୍ରାମ କେବେ ସାମ୍ପ୍ରଦାୟିକ ରୂପ ନେଇ ନାହିଁ, ଖ୍ରୀଷ୍ଟିୟାନ୍ ବିରୋଧୀ ହୋଇ ନାହିଁ । ତାତ୍କାଳିକ ଜନସମର୍ଥନ ଯଦି ସଂଗ୍ରାମର ଉଦ୍ଦେଶ୍ୟ ହୋଇଥା'ନ୍ତା, ଧର୍ମ ପରି ଏକ ସମ୍ବେଦନଶୀଳ ବିଷୟକୁ ବ୍ୟବହାର କରି ସରକାର ବିରୋଧରେ ସହଜରେ ଗଣମତ ସୃଷ୍ଟି କରାଯାଇ ପାରିଥା'ନ୍ତା । ମାତ୍ର ଆମ ନେତୃବୃନ୍ଦଙ୍କ ଦୂରଦୃଷ୍ଟି ଏତେ ବେଶି ଯେ ସେମାନେ ଆନ୍ଦୋଳନକୁ ବଳଶାଳୀ କରିବା ପାଇଁ ସାମ୍ପ୍ରଦାୟିକତାକୁ କେବେ ଆଧାର କରିନାହାନ୍ତି । ବୋଧେ ଏହି କାରଣରୁ ସ୍ୱାଧୀନତା ପରେ ଦୀର୍ଘ ପଚାଶ ବର୍ଷ ଅନ୍ତତଃ ସାମ୍ପ୍ରଦାୟିକତା ଭାରତୀୟ ରାଜନୀତିର ମୁଖ୍ୟସ୍ୱର ହୋଇପାରି ନାହିଁ । ସ୍ୱାଧୀନତା ସଂଗ୍ରାମର ଏହି ଦୃଢ଼ ଭିତ୍ତି ଯୋଗୁଁ, ଅନ୍ୟ ସବୁଆଡ଼େ ଗଣତାନ୍ତ୍ରିକ ବ୍ୟବସ୍ଥା ଭାଙ୍ଗି ପଡୁଥିବା ବେଳେ, ଭାରତରେ ତାହା ତିଷ୍ଠି ରହିଛି— ଏହା କିଛି କମ୍ ଗୌରବର କଥା ନୁହେଁ ।

ଏହାର ଠିକ୍ ବିପରୀତ ସ୍ଥିତି ପାକିସ୍ତାନର । ତା'ର ଭିତ୍ତିରେ ସାମ୍ପ୍ରଦାୟିକତା ମିଶିମାଶି ରହିଛି । ତେଣୁ ଆରମ୍ଭରୁ ତା'ର ଗଣତାନ୍ତ୍ରିକ ବ୍ୟବସ୍ଥା ଦୋଦୁଲ୍ୟମାନ ସ୍ଥିତିରେ । ସମସାମୟିକ ବିଶ୍ୱରେ ଦକ୍ଷିଣ ଆଫ୍ରିକାର ରଙ୍ଗଭେଦ ବିରୋଧୀ ଆନ୍ଦୋଳନକୁ କେବଳ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସମକକ୍ଷ ବୋଲି କୁହାଯାଇପାରେ । କେତେ ଭାଷା, କେତେ ଜାତି ସେଇଠି । ଗୋରା ସରକାର ସେଠି ଦେଖିବାକୁ ଗୋରା, ଭିନ୍ନ ଭାଷାରେ କଥା କୁହନ୍ତି, ଶାସନ କରନ୍ତି, ତାଙ୍କ ସଂସ୍କୃତି ଆଫ୍ରିକୀୟ ସଂସ୍କୃତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସବୁଠାରୁ ବଡ଼ କଥା ସରକାର ଉଗ୍ର ରୂପରେ ରଙ୍ଗଭେଦ ନୀତିକୁ ବ୍ୟବହାର କରନ୍ତି; ଅର୍ଥାତ୍ ଗୋରା ଜାତି ଶାସକ, କଳାଜାତି ଶାସିତ ସେଠାରେ । ତା' ସତ୍ତ୍ୱେ ନେଲସନ ମଣ୍ଡେଲା, ଓଲିଭର ଟମ୍ବୋ, ୱାଲଟର ସିସୁଲ୍ ଏବଂ ତାଙ୍କ ଆଫ୍ରିକୀୟ ଜାତୀୟ କଂଗ୍ରେସ ଆଦୌ ଗୋରା ବିରୋଧୀ ହୋଇ ରହିନାହିଁ ।

ଆଜି ଏହି କାରଣରୁ ଆଫ୍ରିକୀୟ ନେତାଙ୍କର ବିଶ୍ୱମାନ୍ୟତା ରହିଛି । ସେମାନଙ୍କ ମୃତ୍ୟୁ ପରେ ମଧ୍ୟ ସମ୍ମାନ ଊଣା ହେବାର ନାହିଁ ।

ଯଦି ଭାରତୀୟ ସ୍ଥିତିକୁ ବିଶ୍ଳେଷଣ କରାଯାଏ, ଦେଖାଯିବ ଯେ ଭାରତୀୟ ନେତୃବୃନ୍ଦ ଆରମ୍ଭରୁ ଏକ ଆଧୁନିକ ଭାରତ ପାଇଁ ପ୍ରତିବଦ୍ଧ ଥିଲେ । ବ୍ରିଟିଶ୍ ଶାସନ ଭାରତରୁ ବିତାଡ଼ିତ ହେବ; କିନ୍ତୁ ତା ସ୍ଥାନରେ ନା ସାମନ୍ତବାଦ ପ୍ରତିଷ୍ଠିତ ହେବ, ନା ରାଜାରାଜୁଡ଼ାଙ୍କୁ ଆସନ ମିଳିବ । ତାଙ୍କ କଳ୍ପିତ ଆଧୁନିକ ଭାରତରେ ଜାତିବାଦ ଓ ସାମ୍ପ୍ରଦାୟିକତା ପାଇଁ ମଧ୍ୟ ଆଦୌ ସ୍ଥାନ ନଥିଲା । କେବଳ ଗାନ୍ଧୀ କାହିଁକି, ଗାନ୍ଧୀଙ୍କ ପୂର୍ବସୂରୀମାନଙ୍କୁ ମଧ୍ୟ ଜଣାଥିଲା ଯେ ଧାର୍ମିକ ସାମ୍ପ୍ରଦାୟିକତା ଆଧାରରେ ଯଦି ବ୍ରିଟିଶ୍‌ମାନଙ୍କୁ ବିରୋଧ କରାଯାଏ, ତେବେ ବ୍ରିଟିଶ୍‌ଶାସନ ପରେ ସାମ୍ପ୍ରଦାୟିକତାକୁ ମୂଳ କରି ଭାରତୀୟ ସମାଜ ଖଣ୍ଡବିଖଣ୍ଡିତ ହେବ । ସାଂପ୍ରଦାୟିକତା ଏମିତି ଏକ ଅସ୍ତ୍ର, ଯାହା ବ୍ୟବହାରକର୍ତ୍ତାର ମଧ ଅନେକ ସମୟରେ କାବୁରେ ରହେନା; ତା'ପାଇଁ କାଳ ହୁଏ । କାରଣ ଭାରତରେ ଅନେକ ସମ୍ପ୍ରଦାୟ । ଆଜି ଯଦି ସେମାନଙ୍କୁ ଇଂରେଜ ଖ୍ରୀଷ୍ଟିଆନମାନଙ୍କ ବିରୁଦ୍ଧରେ ବ୍ୟବହାର କରାଯାଏ, ପରେ ସେମାନେ ନିଜ ନିଜ ଭିତରେ କଳହକୁ ଯୁକ୍ତିଯୁକ୍ତ ବୋଲି ଦାବି କରିବେ । ସାମ୍ପ୍ରଦାୟିକତା ବିରୋଧରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ମତ ଏତେ ସୁସ୍ପଷ୍ଟ ଥିଲା ଯେ ଉଭୟ ହିନ୍ଦୁ ଓ ମୁସଲିମ୍ ସମ୍ପ୍ରଦାୟବାଦୀ ଜାତୀୟ କଂଗ୍ରେସକୁ ଶତ୍ରୁ ମଣୁଥିଲେ ଏବଂ ବିଭେଦ ନୀତି ଆଚରଣ କରୁଥିବା 'ଖ୍ରୀଷ୍ଟିଆନ୍' ବ୍ରିଟିଶ ସରକାରର ନିକଟତର ହେଉଥିଲେ । ଜାତୀୟ କଂଗ୍ରେସକୁ ମୁସଲିମ୍ ଲିଗ୍ ଗୋଟାଏ ଆଡ଼େ ହିନ୍ଦୁ ଦଳ ବୋଲି ପ୍ରଚାର କରୁଥିଲା ତ ଅନ୍ୟ ଆଡ଼େ ବିଶ୍ୱ ହିନ୍ଦୁ ପରିଷଦ, ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଦୃଷ୍ଟିରେ ତାହା ଥିଲା ମୁସ୍‌ଲିମ୍ ତୁଷ୍ଟିକାରୀ ଦଳ । କଂଗ୍ରେସର ଏହା ସବୁପ୍ରକାର ସମ୍ପ୍ରଦାୟବାଦ ପ୍ରତି ସ୍ପଷ୍ଟ ମନୋଭାବକୁ ପ୍ରତିଫଳିତ କରେ । ଯେତେ ମାତ୍ରାରେ ଜାତୀୟତା ଆନ୍ଦୋଳନ ପ୍ରତି ସମ୍ପ୍ରଦାୟବାଦ ରୁକ୍ଷ, ତତୋଧିକ ମାତ୍ରାରେ ଜାତୀୟତା ଆନ୍ଦୋଳନ ମଧ୍ୟ ସମ୍ପ୍ରଦାୟବାଦ ବିରୋଧରେ ଖଡ଼୍‌ଗହସ୍ତ ।

ଏଥିରୁ ଗୋଟାଏ କଥା ସ୍ପଷ୍ଟ ଯେ ପ୍ରକୃତ ରାଷ୍ଟ୍ରୀୟତା ଓ ସମ୍ପ୍ରଦାୟବାଦ ମଧ୍ୟରେ ଅହିନକୁଳ ସମ୍ପର୍କ । ଯିଏ ସମ୍ପ୍ରଦାୟବାଦୀ, ସେ ମୂଳତଃ ଜାତୀୟତା ବିରୋଧୀ । ଜାତୀୟତା ବ୍ୟକ୍ତିକୁ ଧର୍ମ, ଭାଷା, ସମ୍ପ୍ରଦାୟର ସୀମିତତାର ଉର୍ଦ୍ଧ୍ୱକୁ ଉଠିବାକୁ ପ୍ରେରଣା ଦିଏ, ରାଷ୍ଟ୍ରର (ଯାହାକୁ ଅନେକ ସମ୍ପ୍ରଦାୟର ସମୂହରୂପ ବୋଲି କୁହାଯାଏ) ସାମଗ୍ରିକ ହିତ ପାଇଁ ବ୍ରତୀ କରାଏ । ରାଷ୍ଟ୍ରଭକ୍ତି ପାଇଁ ହିନ୍ଦୁ-ମୁସଲମାନ, ବ୍ରାହ୍ମଣ-କରଣ କିମ୍ବା ବଙ୍ଗାଳି-ମରାଠିର ସଂକୁଚିତ ପରିସୀମା କେବେ ଗ୍ରାହ୍ୟ ହୋଇ

ନ ପାରେ । ଦ୍ୱିତୀୟରେ, ରାଷ୍ଟ୍ରଭକ୍ତି କଦାପି ମାନବିକତା ଶୂନ୍ୟ ନୁହେଁ । ଗାନ୍ଧି, ନେହେରୁଙ୍କଠାରୁ ଆରମ୍ଭ କରି ଗୋପବନ୍ଧୁ ଦାସ ଯାକେ ସମସ୍ତେ ତାତ୍କାଳିକ ଲାଭକ୍ଷତିର ଉର୍ଦ୍ଧ୍ୱରେ ରହି ମାନବିକତାର ପ୍ରତିଷ୍ଠା ସକାଶେ ଆତ୍ମବଳି ଦେବାକୁ ଆଗଭର ହେଉଥିଲେ । ବନ୍ୟା ପୀଡ଼ିତଙ୍କ ଦୁଃଖରେ ଯଦି ଗୋପବନ୍ଧୁଙ୍କ ଆଖିରୁ ଲୁହ ଝରୁଥିଲା, ତାକୁ ଓଡ଼ିଶା ମାଟି ଯାକେ ସୀମିତ କରାଯାଇ ନ ପାରେ ବରଂ ବିଶ୍ୱର ପ୍ରତିଟି ନିପୀଡ଼ିତ ଜନସାଧାରଣଙ୍କ ପ୍ରତି ଦରଦର ପରିପ୍ରକାଶ ରୂପେ ସେ ଲୁହକୁ ଦେଖାଯାଇପାରେ । ରାଷ୍ଟ୍ରଭକ୍ତ ଯଦି ତା' ଆଖପାଖର ସମାଜର କର୍ମୀ, ତା'ର ଅର୍ଥ ନୁହେଁ ଦୂରର ସମାଜ, ପଡ଼ୋଶୀର ସମାଜ ପ୍ରତି ତା' ମନରେ ଅସୂୟା ଭାବ ରହିବ । ଦୟା ବା କରୁଣା ନୁହେଁ, କି ଘୃଣା ବା ଅସୂୟା ଭାବ ନୁହେଁ, କେବଳ ପ୍ରକୃତ ସମଭାବ ହିଁ ରାଷ୍ଟ୍ରଭକ୍ତିର ମୂଳପିଣ୍ଡ ।

ଆଜି ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ଇତିହାସର ବିଡ଼ମ୍ବନା ଏହି ଯେ ସମ୍ପ୍ରଦାୟବାଦ ନିଜକୁ ବଡ଼ ରାଷ୍ଟ୍ରବାଦୀ ବୋଲି ପ୍ରଚାର କରୁଛି । ରାଷ୍ଟ୍ରବାଦର ସେ ନୂଆ ପରିଭାଷା ଦେଉଛି । ଯିଏ ସମ୍ପ୍ରଦାୟବାଦର ବିରୋଧୀ, ଧର୍ମ ନିରପେକ୍ଷତାର ସମର୍ଥକ, ସେ 'ରାଷ୍ଟ୍ରଦ୍ରୋହୀ', 'ଶତ୍ରୁପକ୍ଷ ଲୋକ' । ଏହା ଏଭଳି ଏକ ରାଷ୍ଟ୍ରବାଦ, ଯେଉଁଥିରେ ମାନବିକତା ନାହିଁ, ପଡ଼ୋଶୀ ପ୍ରତି ସମଭାବ ନାହିଁ, ସମାଜର ସାମୂହିକ ହିତ ପାଇଁ ବ୍ୟକ୍ତି ସ୍ୱାର୍ଥ ତ୍ୟାଗ କରିବାର ପରମ୍ପରା ନାହିଁ । ଏଭଳି ରାଷ୍ଟ୍ରବାଦ ସ୍ୱାଧୀନତା ସଂଗ୍ରାମର ଭିତ୍ତିକୁ କେବେ ସୁଦୃଢ଼ କରିପାରେ କି ? ଦେଶକୁ କି କେବେ ଏହା ସ୍ୱାଧୀନତା ସଂଗ୍ରାମୀଙ୍କ 'କଳ୍ପିତ ଭାରତ'ର ନିକଟତର କରିପାରେ ? ଆଜି ପ୍ରତ୍ୟେକ ଦେଶପ୍ରେମୀକୁ ଏ ପ୍ରଶ୍ନ ପଚାରିବାର ବେଳ ଆସିଛି ।

□□

## ୧୮୫୭ର ମହାସଂଗ୍ରାମ : ଏକ ପରିଚର୍ଚ୍ଚା

୧୮୫୭ ମସିହାରେ ଇତିହାସରେ ଅନେକ ଘଟଣା ଘଟିଥିବ; ମାତ୍ର ଭାରତ ଇତିହାସରେ ଖାସ୍ କରି '୧୮୫୭' କହିଲେ ଆମେ ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ଘଟଣାକୁ, ସିପାହିବିଦ୍ରୋହକୁ ବୁଝିଥାଉଁ । ଅର୍ଥାତ୍ 'ସିପାହି ବିଦ୍ରୋହ' ପାଇଁ ସମାନାର୍ଥକ ଶବ୍ଦ ହୁଏ 'ଅଠର ଶହ ସତାବନ' । ଏହା କିଛି ସାନ କଥା ନୁହେଁ । ଇତିହାସର ଏକ କାଳଖଣ୍ଡର ବ୍ୟାପକ ପରିଧିକୁ ଘୋଡ଼ି ଦେଲା ଭଳି ଘଟଣାଟିଏ ନିଶ୍ଚୟ । ଅନ୍ୟଥା କାଳଖଣ୍ଡର ନାଁରେ ଐତିହାସିକ ପରିଘଟଣାଟି ଲୌକିକ ସ୍ତରରେ ପରିଚିତି ପାଉ ନଥାନ୍ତା । ଆଜି '୧୮୫୭'ର ଶହେ ପଚାଶ ବର୍ଷ ପରେ ସୁଦ୍ଧା ଯଦି ତାକୁ ଆମେ ଭୁଲି ଯାଇନାହାନ୍ତି ଏବଂ ସେହି ବର୍ଷ ନାଁରେ ତା'ର ପରିଚୟ ଖୋଜନ୍ତି, ତା' ପଛରେ ବଡ଼ କାରଣ ହେଲା ଭାରତୀୟ ସାମାଜିକ ଜୀବନରେ ତା'ର ମହତ୍ତ୍ୱ ।

'୧୮୫୭'କୁ 'ସିପାହି ବିଦ୍ରୋହ' ବୋଲି ମଧ୍ୟ ସାଧାରଣତଃ ନାମକରଣ କରାଯାଏ; ଯଦିଓ ଏହି ସଂଗ୍ରାମରେ ହଜାର ହଜାର ଅଣ-ସିପାହି ବି ସକ୍ରିୟ ଭାବେ ଅଂଶ ଗ୍ରହଣ କରିଛନ୍ତି, ଏବଂ ବାହାଦୁର ଶାହ (ଦ୍ୱିତୀୟ), ଲକ୍ଷ୍ମୀବାଈ, ନାନା ସାହେବ ଏବଂ କୁଁୱର ସିଂ ଆଦି ରାଜା-ଜମିଦାର ନେତୃତ୍ୱ ନେଇଛନ୍ତି । ପୁଣି, ସିପାହିଙ୍କର ମୋଟ ସଂଖ୍ୟାକୁ ଦେଖିଲେ ତହିଁରେ ବିଦ୍ରୋହୀ ସିପାହିଙ୍କର ସଂଖ୍ୟା ବିଶେଷ ନୁହେଁ । ମାଡ୍ରାସରେ ସିପାହିମାନେ ବିଦ୍ରୋହ ବେଳେ ଚୁପ୍ ରହିଲେ, ବମ୍ବେରେ ବି ବିଶେଷ କିଛି ଦୃଷ୍ଟିଗୋଚର ହେଲା ଭଳି ବିଦ୍ରୋହ କରି ନାହାନ୍ତି । ବେଙ୍ଗଲ ରେଜିମେଣ୍ଟର ଭାରତୀୟ ସିପାହିଙ୍କୁ ହିଁ ସଂଗ୍ରାମର ମୂଳ ଭିତ୍ତି ରୂପେ ଦେଖା ଯାଇପାରେ । ତା'ଛଡ଼ା, ବିଦ୍ରୋହକୁ ଅବଦମିତ କଲାବେଳେ ବି ସରକାର ସିପାହିମାନଙ୍କର ସହଯୋଗ ନେଇଛନ୍ତି । ଅର୍ଥାତ୍ ମୋଟ ସିପାହିଙ୍କ ମଧ୍ୟରେ ଦଳେ ଯଦି ବିଦ୍ରୋହୀ ସାଜିଲେ, ତାଙ୍କଠାରୁ ବହୁତ ବଡ଼ ଦଳଟିଏ ସରକାର ପକ୍ଷରୁ ବିଦ୍ରୋହୀ ସିପାହିଙ୍କୁ ଦମନ କରିବାରେ ନିୟୋଜିତ ହେଲେ । ସେହି ଦୃଷ୍ଟିରୁ ଇଂରେଜ ସେନା ବାହିନୀରେ କାର୍ଯ୍ୟରତ ଥିବା ସବୁ ଭାରତୀୟ ସିପାହିଙ୍କର ବିଦ୍ରୋହ ବୋଲି ୧୮୫୭ କୁ କୁହାଯାଇ ନ ପାରେ ।

'ସିପାହି ବିଦ୍ରୋହ' ବୋଲି ନାମକରଣ କରିବା ପଛରେ ଆଉ ଏକ ସମସ୍ୟା ହେଲା ଯେ ଏହି ନାଁ ମହାସଂଗ୍ରାମର ବ୍ୟାପକତାକୁ ବୁଝିବାରେ ଏକ ରକମର ବାଧକ ହୁଏ । ଗାନ୍ଧି, ନେହେରୁ, ପଟେଲ, ସୁଭାଷ ବୋଷ ଆଦି ନେତୃବୃନ୍ଦ ଏବଂ କର୍ମୀମାନେ ବ୍ୟକ୍ତିଗତ ଭାବରେ ହିନ୍ଦୁ ଧର୍ମାବଲମ୍ବୀ ଥିବା ସତ୍ତ୍ୱେ ଯେମିତି ଭାରତର ସ୍ୱାଧୀନତା ସଂଗ୍ରାମକୁ 'ହିନ୍ଦୁ ଆନ୍ଦୋଳନ' କହିବା ଭୁଲ ହେବ, ଠିକ୍ ସେମିତି ୧୮୫୭ର ଗଣ ସଂଗ୍ରାମକୁ 'ସିପାହି ବିଦ୍ରୋହ' ବୋଲି ନାମକରଣ କରିବା ବି ଉଚିତ ହେବ ନାହିଁ । ବିଦେଶୀ ଶାସନ ବିରୁଦ୍ଧରେ ଭାରତୀୟ ଗଣ ଅସନ୍ତୋଷର ସ୍ୱରକୁ ସିପାହିମାନେ ପ୍ରତିନିଧିତ୍ୱ ମାତ୍ର କରୁଥିଲେ । ସିପାହିର ବ୍ୟକ୍ତିଗତ ସ୍ୱାର୍ଥ ସିଦ୍ଧି ସେମାନଙ୍କର ଉଦ୍ଦେଶ୍ୟ ନ ଥିଲା । ଏହି କାରଣରୁ ଭାରତ ଇତିହାସର ଏହି ମହତ୍ତ୍ୱପୂର୍ଣ୍ଣ ଘଟଣାକୁ '୧୮୫୭ର ମହାସଂଗ୍ରାମ' ବୋଲି କହିବାର ଔଚିତ୍ୟ ରହିଛି । 'ବିପ୍ଳବ' ବୋଲି କୁହାଯାଏନା, କାରଣ ବିଦ୍ରୋହ ସଫଳ ଶ୍ରେଣୀଭୁକ୍ତ ହେଲେ ଯାଇ ହିଁ ଇତିହାସରେ ତାହା ବିପ୍ଳବ ପଦବାଚ୍ୟ ହୁଏ । ପୁଣି, ତାତ୍କାଳିକ ଦୃଷ୍ଟିରୁ ଯଦିଓ ସଂଗ୍ରାମ 'ଅସଫଳ' ପଦବାଚ୍ୟ ହୁଏ ବ୍ୟାପକ ଦୃଷ୍ଟିରେ ବିଚାର କଲେ, ଏହାକୁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଭିତ୍ତି ବୋଲି ଧରାଯିବ । ବିଦ୍ରୋହୀମାନେ ରଣଭୂମିରେ ମଲେ, ଇଂରେଜ ହାତରେ ଧରାପଡ଼ି ଫାଶୀ ଦଣ୍ଡରେ ଦଣ୍ଡିତ ହେଲେ, ପୁଣି ଆଉ କେତେକଙ୍କୁ ଦୀପାନ୍ତର କରି ଦିଆଗଲା । ତା' ସତ୍ତ୍ୱେ ପରବର୍ତ୍ତୀ ପିଢ଼ିରେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ପାଇଁ ଲୋକର ଆବଶ୍ୟକତା ପଡ଼ିଲା, ସେତେବେଳେ ସେହି 'ଅସଫଳ' ବିଦ୍ରୋହୀମାନେ ପ୍ରେରଣାର ଉତ୍ସ ହେଲେ । କେବଳ ସେତିକି ନୁହେଁ, ଇଂରେଜ ହାତରେ ସେମାନଙ୍କ ସଶସ୍ତ୍ର ସଂଗ୍ରାମର ପରାଜୟରୁ ସିଦ୍ଧ ହେଲା ଯେ ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱାଧୀନତା ସଂଗ୍ରାମ ସଶସ୍ତ୍ର ହୋଇ ସଫଳତା ଆଶା କରି ନପାରେ । ନିଜେ ପରାଜୟ ବରଣ କରି ସୁଦ୍ଧା ଏହି ଶିକ୍ଷା ସେମାନେ ପର ପିଢ଼ି ପାଇଁ ଛାଡ଼ି ଦେଇଗଲେ ବୋଲି ତାଙ୍କ ସଂଗ୍ରାମ 'ବିଫଳ' ପଦବାଚ୍ୟ ହୋଇ ନ ପାରେ । ମୋଟ କଥା ହେଲା ଯେ '୧୮୫୭' ଯଦି ବିପ୍ଳବ ନୁହେଁ କାରଣ ତାହା 'ସଫଳ' ହୋଇ ନଥିଲା, ତେବେ 'ବିଦ୍ରୋହ' ମଧ୍ୟ ନୁହେଁ କାରଣ ତାହା 'ବିଫଳ' ହୋଇ ନଥିଲା । ସେହି ପରିପ୍ରେକ୍ଷୀରେ ତାକୁ 'ମହାସଂଗ୍ରାମ' ବୋଲି ନାମିତ କରିବା ବରଂ ଉଚିତ ହେବ ।

କିଛି ଲୋକ ଯୁକ୍ତି କରନ୍ତି, ୧୮୫୭ର ମହାସଂଗ୍ରାମକୁ 'ପ୍ରଥମ ସ୍ୱାଧୀନତା ସଂଗ୍ରାମ' ବୋଲି ପରିଭାଷିତ କରାଯିବା କଥା । ମାତ୍ର ସେ କ୍ଷେତ୍ରରେ ୧୮୫୭ ପୂର୍ବରୁ ସଂଘଟିତ ହୋଇଥିବା ସଂଗ୍ରାମକୁ କ'ଣ ଅସ୍ୱୀକାର କରାଯିବ ? ଆମ ଓଡ଼ିଶାରେ ଜୟୀ ରାଜଗୁରୁ ଖୋର୍ଦ୍ଧାରେ ୧୮୦୪ ମସିହାରେ, ବକ୍ସି ଜଗବନ୍ଧୁ ୧୮୧୭ ମସିହାରେ ଏବଂ ସୁରେନ୍ଦ୍ର ସାଏ ୧୮୨୭ ମସିହାରୁ ଆରମ୍ଭ କରି ୧୮୬୪ ମସିହା

ଯାକେ ଇଂରେଜ ଶକ୍ତିର ପ୍ରଭୁତ୍ୱକୁ ଅସ୍ୱୀକାର କରିଛନ୍ତି । ପୁଣି ଘୁମୁସରରେ କଂଧମାନେ ୧୮୩୫-୩୬ ମସିହାରେ ବିଦ୍ରୋହ କରିଛନ୍ତି । ସବୁଗୁଡ଼ିକ ୧୮୫୭ ମହାସଂଗ୍ରାମର ପୂର୍ବସୂରୀ । ଆଜି ଐତିହାସିକମାନେ କହୁଛନ୍ତି ଯେ 'ସିପାହୀ ବିଦ୍ରୋହ' ବା '୧୮୫୭' ପୂର୍ବରୁ ୯୬୬ଟି ସାନ-ବଡ଼ ବିଦ୍ରୋହ ହୋଇ ସାରିଥିଲା । ଦ୍ୱିତୀୟତଃ ସ୍ୱାଧୀନତା ସଂଗ୍ରାମର ମର୍ଯ୍ୟାଦା ଦେବା ବିରୁଦ୍ଧରେ ଯେଉଁ ଐତିହାସିକମାନେ, ସେମାନଙ୍କର ଯୁକ୍ତି ହେଲା ଯେ ସ୍ୱାଧୀନତା ସଂଗ୍ରାମ ହେଲା ଏକ ଜାତୀୟତା ଆନ୍ଦୋଳନ । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଆମ ଦେଶରେ ଜାତୀୟତାବୋଧର ଉନ୍ମେଷ ହେଲା । ତା' ପୂର୍ବରୁ ଲୋକ ଏବଂ ରକ୍ଷଣଶୀଳ ରାଜା ରାଜୁଡ଼ା ନେତୃବର୍ଗ କ୍ଷେତ୍ରୀୟତା ବା ଆଞ୍ଚଳିକତାବୋଧରୁ ଊର୍ଦ୍ଧ୍ୱକୁ ଯାଇ ପାରୁ ନଥିଲେ । ଇଂରେଜ ଶାସନ ସମୟରେ ହିଁ ବିଭିନ୍ନ କାରଣରୁ ଗୋଟାଏ ଭୂଗୋଳ, ଗୋଟାଏ ରାଜନୀତି, ଗୋଟାଏ ପ୍ରଶାସନ, ଗୋଟାଏ ଐତିହ୍ୟର ପରିପ୍ରକାଶ ରୂପେ ସମଗ୍ର ଦେଶବାସୀ ଦେଖିବାକୁ ଲାଗିଲେ । ତାର ପରିଣାମସ୍ୱରୂପ ଦେଶ ଭିତରେ 'ଆମେ ଏକ' ବୋଲି ଏକ ଭାବନାତ୍ମକ ସ୍ତରରେ ଏକତାବୋଧ ସୃଷ୍ଟି ହେଲା । ସ୍ୱାଧୀନତା ସଂଗ୍ରାମର ଆରମ୍ଭ ହେଲା । ସେହି ପରିପ୍ରେକ୍ଷୀରେ ୧୮୫୭ର ମହାସଂଗ୍ରାମ ସମୟରେ ନେତୃବର୍ଗ ମହାଭାରତୀୟ ଜାତୀୟତାବୋଧରେ ଓତପ୍ରୋତ ହୋଇ ନ ଥାଇ ପାରନ୍ତି ବୋଲି ଧରି ନିଆଯାଏ ଏବଂ 'ସଂଗ୍ରାମ'କୁ ଜାତୀୟତା ଆନ୍ଦୋଳନର ଅଂଶ ନୁହେଁ ବୋଲି କୁହାଯାଏ । ମାତ୍ର ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ ସଂଗ୍ରାମୀମାନେ ମହାଭାରତୀୟ ଜାତୀୟତାବୋଧ ଦ୍ୱାରା ପ୍ରଭାବିତ ହୋଇ ନ ପାରନ୍ତି ସତ । ତା ସତ୍ତ୍ୱେ ସେମାନେ ଇଂରେଜ ଶାସନରୁ ବିମୁକ୍ତି କାମନା କରୁଥିଲେ, ସ୍ୱାଧୀନତା ପାଇଁ ଲଢୁଥିଲେ, ସେଥିରେ ସନ୍ଦେହ ନାହିଁ । ତେଣୁ ତାଙ୍କ ସଂଗ୍ରାମକୁ ସ୍ୱାଧୀନତା ସଂଗ୍ରାମର ଅଂଶବିଶେଷ ବୋଲି ମାନିନେବାରେ କୌଣସି ଅନୌଚିତ୍ୟ ବୋଧେ ନାହିଁ ।

କଥା ହେଲା ଯେ, ୧୭୫୭ ମସିହାର ପଲାସୀ ଯୁଦ୍ଧରେ ଇଂରେଜମାନେ ଜୟଯୁକ୍ତ ହେଲା ପରେ ଇଂରେଜ ଶାସନ ପ୍ରଥମେ ବଂଗପ୍ରଦେଶରେ ଆରମ୍ଭ ହୋଇ କିଛି ବର୍ଷ ମଧ୍ୟରେ ସମଗ୍ର ଭାରତ ଭୂଖଣ୍ଡକୁ ବିସ୍ତାରିତ ହେଲା । ଯେଉଁଠି ଇଂରେଜ ଶାସନ ପ୍ରତିଷ୍ଠିତ ହେଲା ସେଇଠି ଇଂରେଜ ବିରୋଧୀ ବିଦ୍ରୋହର ମଧ୍ୟ ଶୁଭାରମ୍ଭ ହେଲା । ଉଦାହରଣ ସ୍ୱରୂପ, ୧୮୫୭ରେ ଯଦି ଇଂରେଜ ଶାସନ ବଂଗରେ ଆରମ୍ଭ ହେଲା, ୧୮୬୩ ମସିହା ବେଳକୁ ସେଠି ସନ୍ନ୍ୟାସୀ ବିଦ୍ରୋହର ମଧ୍ୟ ସୂତ୍ରପାତ ହେଲା । ୧୮୦୩ ମସିହାରେ ଓଡ଼ିଶାକୁ ଇଂରେଜ ଶାସନ ଆସିଲା, ତା'ର କେତୋଟି ମାସ ପରେ ୧୮୦୪ରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଖୋର୍ଦ୍ଧାରେ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ମଧ୍ୟ ଆରମ୍ଭ ହୋଇଗଲା । ସବୁ ବିଦ୍ରୋହ ବା ସଂଗ୍ରାମ ପଛରେ

କେତେଗୋଟି ସାଧାରଣ କାରଣ ରହିଥିଲେ-ଉପନିବେଶବାଦ ଯୋଗୁଁ ସାମାଜିକ, ଆର୍ଥିକ ଏବଂ ରାଜନୈତିକ ସ୍ତରରେ ଯେଉଁ ଦ୍ରୁତ ପରିବର୍ତ୍ତନମାନ ଅନୁଭୂତ ହେଲା, ଭାରତୀୟ ସମାଜ ତାକୁ ସହଜରେ ଗ୍ରହଣ କରିପାରିଲା ନାହିଁ । ରାଜନୀତି ସେତେବେଳେ ଯେହେତୁ ସାଧାରଣ ଲୋକସ୍ତରକୁ ଆସିନଥିଲା, ଗଣ-ଅସନ୍ତୋଷର ନେତୃତ୍ୱ ନେବାକୁ ଅବସର ପାଇଲେ ରକ୍ଷଣଶୀଳ ରାଜା-ରାଜୁଡ଼ାମାନେ କାରଣ ରାଜନ୍ୟ ବର୍ଗ ଭାବରେ ଇଂରେଜ ରାଜୁତି ଯୋଗୁଁ ସେମାନଙ୍କୁ ଅତ୍ୟନ୍ତ ପଦମର୍ଯ୍ୟାଦା ହାନିର ଶିକାର ହେବାକୁ ପଡ଼ିଥିଲା । ୧୮୫୦ ମସିହା ବେଳକୁ ଯେତେବେଳେ ସମଗ୍ର ଭାରତ ଭୂଖଣ୍ଡ ଇଂରେଜ କବଳକୁ ଆସିଲା, ଏକ ମିଳିତ ସଂଗ୍ରାମର ଭିତ୍ତି ପଡ଼ିଲା । ତାକୁ ଇତିହାସରେ ୧୮୫୭ର ମହାସଂଗ୍ରାମ ବୋଲି କୁହାଯାଏ । ପ୍ରଥମଥର ପାଇଁ ଦେଶର ଅନେକ ରାଜା-ରାଜୁଡ଼ା ମିଳିତ ହେଲେ ଏବଂ ଶେଷଥର ପାଇଁ ସଶସ୍ତ୍ର ସଂଗ୍ରାମ ମାଧ୍ୟମରେ ଇଂରେଜ ଶକ୍ତିକୁ ଦେଶରୁ ବିତାଡ଼ିତ କରିବାକୁ ପ୍ରୟାସ କଲେ । ଏହି ପ୍ରୟାସରେ ଅନ୍ୟାନ୍ୟ ଭାରତୀୟ ବର୍ଗ ମଧ୍ୟ ପାରୁପର୍ଯ୍ୟନ୍ତ ସହଯୋଗ କଲେ; କିନ୍ତୁ ପ୍ରୟାସର ବଡ଼ ଭାଗିଦାର ହେଲେ ସିପାହିମାନେ, କାରଣ ସେମାନଙ୍କ ହାତରେ ଅସ୍ତ୍ର ରହିଥିଲା । ଇଂରେଜ ବିରୋଧୀ ସତ୍ତ୍ୱେ, ସାଧାରଣ ବ୍ୟକ୍ତି ଯଦି ନିରସ୍ତ୍ର, ସଶସ୍ତ୍ର ସଂଗ୍ରାମରେ ତା'ର ଭାଗ ନେବା ଦେଖାପଡ଼େନା । ସେ ଯାହାହେଉ, ୧୮୫୭ ମହାସଂଗ୍ରାମର ଅନୁଭୂତିରୁ ଗୋଟାଏ କଥା ସିଦ୍ଧ ହେଲା ଯେ, ସଶସ୍ତ୍ର ସଂଗ୍ରାମ ପନ୍ଥାରେ ଇଂରେଜମାନଙ୍କୁ ଭାରତରୁ ବାହାର କରିବା ଅତି କଷ୍ଟକର କଥା । ତେଣୁ, ୧୮୫୭ ମସିହା ପରେ କାଁ ଭାଁ ସଶସ୍ତ୍ର ସଂଗ୍ରାମ ହୋଇଛି ସତ, ମାତ୍ର ଇଂରେଜ ବିରୋଧୀ ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ସ୍ୱର ହୋଇଛି ଅହିଂସା ଆନ୍ଦୋଳନ । କେବଳ ମହାତ୍ମା ଗାନ୍ଧୀ କାହିଁକି, ଗାନ୍ଧୀଙ୍କର ପୂର୍ବସୂରୀମାନେ, ଅର୍ଥାତ୍ ଦାଦାଭାଇ ନାରୋଜୀ, ଗୋଖେଲ, ତିଳକ ଆଦି ମଧ୍ୟ ସଶସ୍ତ୍ର ସଂଗ୍ରାମକୁ ପନ୍ଥା କରି ନାହାନ୍ତି । '୧୮୫୭'ର ଆଉ ଏକ ବିଶେଷତ୍ୱ ହେଲା ଯେ ପରବର୍ତ୍ତୀ ସମୟରେ ସ୍ୱାଧୀନତା ମିଳିବା ଯାକେ ରାଜା-ରାଜୁଡ଼ାଙ୍କର ସାମନ୍ତବର୍ଗକୁ ଆଉ ଭାରତୀୟ ରାଜନୀତିରେ ନେତୃତ୍ୱ ମିଳିନି । ନୂଆ ଭାବେ ନେତୃତ୍ୱ ମିଳିଛି ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀକୁ । ୧୮୫୭ ପରେ ପ୍ରଥମଥର ପାଇଁ ରାଜୀନୀତି 'ରାଜରାସ୍ତା'ରୁ ଯାଇ 'ଜନପଥ'ରେ ରହିଛି; ଅର୍ଥାତ୍ ରାଜନ୍ୟବର୍ଗଙ୍କ ହାତରୁ ଯାଇ ରାଜନୀତି ସାଧାରଣ ଲୋକଙ୍କ ସ୍ତରକୁ ଆସିଛି । ତେଣିକି ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀ ଲୋକ ରାଜନୀତିର ପ୍ରକୃତ ପ୍ରତିନିଧିତ୍ୱ କରିଛନ୍ତି ନା ନାହିଁ-ତାହା ଦେଖିବା କଥା, ବିଚାର କରିବା କଥା ।

୧୮୫୭ ମହାସଂଗ୍ରାମର ପ୍ରମୁଖ ନାୟକ ହେଲେ ଇଷ୍ଟ ଇଣ୍ଡିଆ ସେନାର ସିପାହିମାନେ, ଏହା ଅନସ୍ୱୀକାର୍ଯ୍ୟ । ୧୮୫୭ ମେ ମାସ ୧୦ ତାରିଖ ଦିନ ମିରଟ ସେନା ଛାଉଣୀରେ ସେମାନେ ଚର୍ବିଯୁକ୍ତ ଗୁଳିକୁ ଏନ୍‌ଫିଲ୍ଡ୍ ବନ୍ଧୁକରେ ବ୍ୟବହାର

କରିବାକୁ ମନା କଲେ ଏବଂ ପ୍ରତିବାଦ ସ୍ୱରୂପ ସ୍ଥାନୀୟ ଇଂରେଜ ସେନା ଅଧିକାରୀଙ୍କୁ ହତ୍ୟା କରି ବିଦ୍ରୋହ ଘୋଷଣା କଲେ । ପରଦିନ ସେମାନେ ଦିଲ୍ଲୀରେ ପହଂଚି ନାମମାତ୍ର ମୋଗଲ ସମ୍ରାଟ ଦ୍ୱିତୀୟ ବାହାଦୁର ଶାହାଙ୍କୁ 'ଭାରତର ସମ୍ରାଟ' ଘୋଷଣା କଲେ । ମେ ୧୧ ତାରିଖରୁ ଆରମ୍ଭ କରି ସେପ୍ଟେମ୍ବର ୨୦ ତାରିଖ ପର୍ଯ୍ୟନ୍ତ ଦିଲ୍ଲୀରେ ଚାଲିଲା 'ସିପାହି ଶାସନ', ଯାହାକୁ ଇଂରାଜୀରେ 'ସିଲୋକ୍ରେସି' ବୋଲି କୁହାଯାଏ । ସାମ୍ବିଧାନିକ ମୁଖ୍ୟ ଭଳି ଯଦିଓ ସମ୍ରାଟଙ୍କୁ ଶାସନ ମୁଖ୍ୟ ବୋଲି ଘୋଷଣା କରାଗଲା, କ୍ଷମତା ରହିଲା ପ୍ରଶାସକ ପରିଷଦ ହାତରେ । ମୋଟ ଦଶଜଣରୁ ପରିଷଦରେ ରହିଥିଲେ ଛ'ଜଣ ସିପାହି । ଜେନେରାଲ ବକ୍ତ ଖାନ୍ ନାମକ ଜଣେ ସିପାହି ଯିଏ ବରେଲି ସେନା ଛାଉଣିରେ ବିଦ୍ରୋହ କରି ଦିଲ୍ଲୀ ଆସିଥିଲେ, ସେ ହେଲେ ପ୍ରକୃତ ଶାସନ ମୁଖ୍ୟ । ଦିଲ୍ଲୀ ସଂଗ୍ରାମର କେନ୍ଦ୍ର ହେଲା ଏବଂ କାନପୁର, ଝାନ୍ସୀ, ବରେଲି, ଲକ୍ଷ୍ନୌ, ମିରଟ ଆଦି ହେଲେ ଉପକେନ୍ଦ୍ର । ଜାଣି, ସିପାହିମାନେ ସେଦିନ ସ୍ଥିର କରି ଗଲେ ଯେ ଆଗାମୀ ଦିନରେ ଦିଲ୍ଲୀ ହେବ ଭାରତ ରାଜନୀତିର ମୁଖ୍ୟ କେନ୍ଦ୍ର, ରାଜଧାନୀ । ଆଜି ତା'ର ଶହେ ପଚାଶ ବର୍ଷ ପରେ ବି ସେହି ଐତିହାସିକ ନିଷ୍ପତ୍ତିକୁ କେହି ନଜର ଅଂଦାଜ କରିପାରିନାହାନ୍ତି । କେବଳ ଅଳ୍ପ ଦିନ ଭିତରେ ସଂଗ୍ରାମ ଯଦି ଉତ୍ତର ଭାରତର ବିଭିନ୍ନ ଅଂଚଳକୁ ପ୍ରସାରିତ ହେଲା, ତା'ପଛରେ ରହିଥିଲା ସିପାହିମାନଙ୍କର ପ୍ରତ୍ୟକ୍ଷ ସଂପୃକ୍ତି । ସେମାନଙ୍କ ସହଯୋଗରେ ନାନା ସାହେବ କାନପୁରରୁ ଇଂରେଜମାନଙ୍କୁ ବିତାଡ଼ିତ କଲେ, ଲକ୍ଷ୍ମୀବାଈ ଗୋୱାଲିୟର ଅଧିକାର କଲେ । ଗୋୱାଲିଅର ମହାରାଜା ସିଂଧିଆ ଇଂରେଜମାନଙ୍କ ପକ୍ଷ ନେଲେ ବୋଲି, ସେଠାକାର ସିପାହିମାନେ ଖୋଲାଖୋଲି ଭାବେ ଲକ୍ଷ୍ମୀବାଈଙ୍କ ସାଙ୍ଗରେ ଯାଇ ମିଶିଲେ । ଲକ୍ଷ୍ନୌରେ ବେଗମ୍ ହଜରତ ମହଲ ଇଂରେଜମାନଙ୍କୁ 'ରେସିଡେନ୍ସି ବିଲଡ଼ିଂ'ରେ ଅନେକ ଦିନ ଯାକେ ପଣବଂଦୀ କରି ରଖିଲେ ଏବଂ ଏହି ସଫଳତା ପଛରେ ମଧ୍ୟ ସିପାହୀମାନଙ୍କର ପ୍ରତ୍ୟକ୍ଷ ସହଯୋଗ ରହିଥିଲା ।

ସୁରେନ୍ଦ୍ର ସାଏ ୧୮୫୭ ମହାସଂଗ୍ରାମର ଜଣେ ପ୍ରମୁଖ ବ୍ୟକ୍ତିତ୍ୱ ବୋଲି ଓଡ଼ିଶାରେ ପରିଚିତି ପାଆନ୍ତି । ୧୮୫୭ର ବହୁପୂର୍ବରୁ ସେ ବିଦ୍ରୋହ ଘୋଷଣା କରିଥିଲେ ଏବଂ ଧରାପଡ଼ି ବିହାରର ହଜାରିବାଗ ଜେଲରେ ବନ୍ଦୀ ହୋଇ ରହିଥିଲେ । ୧୮୫୭ର ଘଟଣା ପରେ ଯେତେବେଳେ ସ୍ଥାନୀୟ ସିପାହିମାନେ ହଜାରିବାଗ ଜେଲ୍‌କୁ ଉନ୍ମୁକ୍ତ କରିଦେଲେ, ସୁରେନ୍ଦ୍ର ସାଏ ଏବଂ ତାଙ୍କ ଭାଇମାନେ ଜେଲରୁ ମୁକୁଳି ସମ୍ବଲପୁର ଫେରି ଆସିଲେ ଏବଂ ପୁଣିଥରେ ବିଦ୍ରୋହ ଆରମ୍ଭ କଲେ । ଅର୍ଥାତ୍ ୧୮୫୭ ସାଙ୍ଗରେ କୌଣସି ସିଧା ସମ୍ବନ୍ଧ ନ ଥାଇ ସୁଦ୍ଧା ସୁରେନ୍ଦ୍ର ସାଏ ସିପାହିମାନଙ୍କ ସହଯୋଗ ନେଇ ଜେଲ୍‌ରୁ ଛାଡ଼ ପାଇଲେ; କିନ୍ତୁ ତା'ଠାରୁ ବଡ଼ କଥା, ଏହି

ଘଟଣା ତାଙ୍କୁ ଇଂରେଜମାନଙ୍କଠାରେ ଆତ୍ମସମର୍ପଣ ନ କରି ପୁଣି ଥରେ ବିଦ୍ରୋହ କରିବାକୁ ସାହସ ଦେଲା । ଦେଶର ଚାରିଆଡ଼େ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ, ତେଣୁ ତହିଁରେ ନିଜର ସୀମିତ ଶକ୍ତିକୁ ବିନିଯୋଗ କରିବାର ପ୍ରେରଣା ପାଇଲେ ସୁରେନ୍ଦ୍ର ସାଏ ।

ଚର୍ବିଯୁକ୍ତ ଗୁଳିର ବ୍ୟବହାରକୁ ନେଇ ସିପାହିମାନେ ବିଦ୍ରୋହ ଆରମ୍ଭ କରିଥିଲେ ସତ, କାରଣ ତା'ଦ୍ୱାରା ସେମାନଙ୍କର ଧର୍ମନଷ୍ଟ ହେବାର ଆଶଙ୍କା ରହିଥିଲା । ମାତ୍ର ବିଦ୍ରୋହର କାରଣ କେବଳ ଏତିକି ନଥିଲା । ବିଦେଶୀ ଶାସନ, ତାର ଅହଂଭାବ, ଅର୍ଥନୀତି, ସମାଜ, ରାଜନୀତି, ଧର୍ମ, ସବୁଥିରେ ତାର କର୍ତ୍ତୃତ୍ୱ ଏବଂ ତା' ଯୋଗୁଁ ମାଡ଼ି ଆସୁଥିବା ଅସ୍ୱାଭାବିକ ବିପତ୍ତିର ଏକ ସାମଗ୍ରିକ ପ୍ରତିରୋଧ ମାତ୍ର ଥିଲା ଏହି ମହାସଂଗ୍ରାମ । ସିପାହିମାନଙ୍କୁ ଏଥିରେ ଅଗ୍ରଣୀ ଭୂମିକା ନେବାକୁ ପଡ଼ିଲା, କାରଣ ସେମାନଙ୍କ ହାତରେ ଅସ୍ତ୍ର ରହିଥିଲା, କାରଣ ସଶସ୍ତ୍ର ସଂଗ୍ରାମ ବ୍ୟତୀତ ଅନ୍ୟ ସଂଗ୍ରାମର ପରଂପରା ସେତେବେଳେ ନଥିଲା, କାରଣ ସିପାହିମାନେ ହିଁ ସେନାଛାଉଣିରେ ନିତିପ୍ରତି ଇଂରେଜ ଅଫିସରଙ୍କ ଦ୍ୱାରା ଲାଞ୍ଛିତ ଓ ଅପମାନିତ ହେଉଥିଲେ, ହୀନମନ୍ୟତାର ଶିକାର ହେଉଥିଲେ ।

୧୮୫୭ ଗଣସଂଗ୍ରାମର ଏକ ବଡ଼ ଦୁର୍ବଳତା ହେଲା ପଢ଼ାଲେଖା ଏବଂ ନେତୃବର୍ଗ ମଧ୍ୟରେ ରହିଥିବା ଦୂରତା । ଏହା କେବଳ ସେମାନଙ୍କ ପାଇଁ ସମସ୍ୟା ସୃଷ୍ଟି କରିନାହିଁ, ସାଙ୍ଗରେ ପରବର୍ତ୍ତୀ ସମୟରେ ସେମାନଙ୍କୁ ଏବଂ ସେମାନଙ୍କ ସଂଗ୍ରାମକୁ ବୁଝିବା ପାଇଁ ପ୍ରୟାସ କରୁଥିବା ଗବେଷକମାନଙ୍କ ପାଇଁ ମଧ୍ୟ ସମସ୍ୟା ସୃଷ୍ଟି କରିଛି । ସାମାନ୍ୟ ସିପାହିମାନେ ସେମାନେ । ସ୍ୱାକ୍ଷର ହୋଇପାରନ୍ତି, ମାତ୍ର ଶିକ୍ଷିତ ନୁହନ୍ତି । ହାତରେ ଅସ୍ତ୍ର ଅଛି ବୋଲି ଇଂରେଜ ଅଧିକାରୀଙ୍କୁ ଆରମ୍ଭରେ ପରାଜିତ କରିଛନ୍ତି ତଥା ନେତୃତ୍ୱ ନେଉଥିବା ରାଜା-ଜମିଦାରଙ୍କୁ ପ୍ରତିକଥାରେ ନିର୍ଦ୍ଦେଶ ଦେଇଛନ୍ତି । ମାତ୍ର ଶିକ୍ଷାର ଅଭାବ ଯୋଗୁଁ ପରବର୍ତ୍ତୀ ପର୍ଯ୍ୟାୟରେ ସଂଗ୍ରାମକୁ ସୁନିୟୋଜିତ ଢଙ୍ଗରେ ପରିଚାଳିତ କରିପାରିନାହାନ୍ତି । ମିଳିଥିବା ବିଜୟକୁ ସ୍ଥାୟୀ କରିବା ପାଇଁ ଶିକ୍ଷାତନ୍ତ୍ରର ଯେଉଁ ଆବଶ୍ୟକତା, ପ୍ରତି କଥାକୁ ଲିପିବଦ୍ଧ କରିବାର ଯେଉଁ ଆବଶ୍ୟକତା ତା'ର ଅଭାବରେ ସେମାନଙ୍କ ସଂଗ୍ରାମ ସ୍ଥାୟୀ ହୋଇ ପାରିନି । ପୁଣି, ଶିକ୍ଷିତ ନୁହନ୍ତି ବୋଲି ସମକାଳୀନ ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀର ସେମାନଙ୍କୁ ସହଯୋଗ ମିଳିନି । ଶିକ୍ଷିତ ନୁହନ୍ତି ବୋଲି ଇଂରେଜ ଶାସନର ବିକଳ୍ପ ରୂପେ ପୂର୍ବରୁ ପ୍ରଚଳିତ ରାଜା-ରାଜୁଡ଼ାଙ୍କର ସାମନ୍ତବାଦୀ ବ୍ୟବସ୍ଥା କେବଳ ତାଙ୍କୁ ଦେଖା ପଡ଼ିଛି ଏବଂ ତା'ର ପ୍ରତିରୋପଣ ପାଇଁ ସେମାନେ ଉଦ୍ୟମ କରିଛନ୍ତି । ଅନ୍ୟଥା ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଯେତେବେଳେ ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ଆଦି ଦେଶରେ ଆଧୁନିକ ଗଣତାନ୍ତ୍ରିକ ବ୍ୟବସ୍ଥାର ଏତେ ଶକ୍ତ ଭିତ୍ତି, ସେତେବେଳେ ସେମାନେ

ମଧ୍ୟକାଳୀନ ସାମନ୍ତବାଦୀ ବ୍ୟବସ୍ଥାର ପ୍ରତିରୋପଣ କଥା ଚିନ୍ତା କରିନଥାନ୍ତେ ! ତା'ଠାରୁ ବଡ଼ କଥା, ଶିକ୍ଷିତ ନୁହନ୍ତି ବୋଲି, ସେମାନେ ନିଜ ବିଚାର ଓ କାର୍ଯ୍ୟକଳାପ ସଂବନ୍ଧରେ ବିଶେଷ କିଛି ଲିଖିତ ବିବରଣୀ ଛାଡ଼ିଯାଇ ନାହାନ୍ତି । ଏତେ ନିକଟ ଅତୀତର ଘଟଣା ସେ, ମାତ୍ର ୧୫୦ ବର୍ଷ ମାତ୍ର ପୂରୁଛି ତାକୁ, ଅଥଚ ତାକୁ ଜାଣିବା ପାଇଁ 'ବିଜେତା' ଦଳ ଇଂରେଜ ଦସ୍ତାବେଜ ହିଁ ଆଜି ମୁଖ୍ୟ ସ୍ରୋତ ସାମଗ୍ରୀ ହୁଏ । ଆଜି ଯଦି ସେତେବେଳକାର କେଉଁ ଏକ ସିପାହିର ହାତଲେଖା ଡାଏରୀଟିଏ କିମ୍ବା ଆତ୍ମଜୀବନୀଟିଏ ହସ୍ତଗତ ହୁଅନ୍ତା, ୧୮୫୭ର ସେହି ମହାସଂଗ୍ରାମର ସାମଗ୍ରିକ ରୂପକୁ ଦେଖିବା କେତେ ସହଜ ତଥା ଆନନ୍ଦଦାୟୀ ନ ହୁଅନ୍ତା ! ବିଜେତା ଇଂରେଜ ଅଧିକାରୀଙ୍କ ଟୀକା-ଟୀପ୍ପଣୀକୁ କେବଳ ଆଧାର କରି କି କେବେ ସେହି ମହାସଂଗ୍ରାମର ସାମୂହିକ ରୂପକୁ ଦେଖି ହେବ ?

ଅବଶୋଷର ବିଷୟ ଯେ, ସମକାଳୀନ ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀ ମଧ୍ୟ ୧୮୫୭ର ମହାସଂଗ୍ରାମ ସଂବନ୍ଧରେ ବିଶେଷ କିଛି ବିବରଣୀ ଦିଅନ୍ତି ନାହିଁ । କେବଳ ଓଡ଼ିଶା କଥା ଯଦି ବିଚାର କରାଯାଏ, ୧୮୫୭ ପୂର୍ବରୁ ଅନେକ ପ୍ରଖ୍ୟାତ ବୁଦ୍ଧିଜୀବୀ, ଯଥା ଫକୀର ମୋହନ ସେନାପତି, ମଧୁସୂଦନ ରାଓ, ମଧୁସୂଦନ ଦାସ, ରାଧାନାଥ ରାୟଙ୍କର ଜନ୍ମ । 'ସିପାହି ବିଦ୍ରୋହ'ର ମାତ୍ର ନଅ ବର୍ଷ ପରେ 'ଉତ୍କଳ ଦୀପିକା' ପତ୍ରିକାର ଜନ୍ମ । ୧୮୮୪ ମସିହାରେ ସୁରେନ୍ଦ୍ର ସାଏ ଯେତେବେଳେ ଅସୁରଗଡ଼ ଜେଲ୍‌ରେ ମୃତ୍ୟୁବରଣ କଲେ, ସେତେବେଳକୁ 'ଉତ୍କଳ ଦୀପିକା' ବାହାରେ 'ସଂବାଦ ବାହିକା (୧୮୬୮)', 'ଉତ୍କଳପୁତ୍ର (୧୮୭୩)', 'ସଂସ୍କାରକ (୧୮୮୩)', 'ଉତ୍କଳ ଦର୍ପଣ (୧୮୭୩)' ଓ 'ଉତ୍କଳ ହିତୈଷିଣୀ (୧୮୬୮)' ଆଦି ଅନେକ ପତ୍ରପତ୍ରିକା ଓଡ଼ିଶାରେ । ପ୍ରତ୍ୟେକ ପତ୍ରପତ୍ରିକା 'ମାତୃଭୂମି'ର ସାମୂହିକ ସ୍ୱାର୍ଥ ନିମନ୍ତେ ପ୍ରତିବଦ୍ଧ । ଅଥଚ 'ମାତୃଭୂମି'ର ସ୍ୱାଧୀନତା ପାଇଁ ୩୭ ବର୍ଷରୁ ଊର୍ଦ୍ଧ୍ୱକାଳ ଜେଲ୍ ଖଟିଥିବା ସୁରେନ୍ଦ୍ର ସାଏଙ୍କୁ ନେଇ କେହି କବିତାଟିଏ ଲେଖିନାହାନ୍ତି, ଶୋକବାର୍ତ୍ତାଟିଏ ବି କାହିଁ ପ୍ରକାଶିତ ହୋଇନାହିଁ । ଠିକ୍ ସେହିଭଳି ଫକୀର ମୋହନଙ୍କ ଲେଖାରେ ଊନବିଂଶ ଶତାବ୍ଦୀର ଅନେକ ସାମାଜିକ କଥା ଜଣାପଡ଼େ- ନଅଙ୍କ ଦୁର୍ଭିକ୍ଷ, ଭାଷା ଆନ୍ଦୋଳନ, ଜାତୀୟ କଂଗ୍ରେସ, 'ଭଗିଆ' ଚାଷୀ ତନ୍ତୀର ଭୂମିହୀନ ହେବା, ନୂଆଁ ଜମିଦାର 'ମଂଗରାଜ'ର ଜମିମାଲିକ ହେବା ଇତ୍ୟାଦି; ଅଥଚ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଘଟିଥିବା ଏହି ମହାସଂଗ୍ରାମ ବା ତାର ସ୍ଥାନୀୟ ନାୟକ ସୁରେନ୍ଦ୍ର ସାଏ ସମ୍ବନ୍ଧରେ ତହିଁରେ କିଛି ବିବରଣୀ ନାହିଁ । '୧୮୫୭'ର ମହାନାୟକମାନେ ଶିକ୍ଷିତ ହୋଇଥାନ୍ତେ ଯଦି କି ସେମାନଙ୍କ କାହାଣୀ ଏମିତି ଅକୁହା ହୋଇ ରହିଯାଇଥାନ୍ତା ?

ପ୍ରଶ୍ନ ଉଠେ, ୧୮୫୭ର ମହାସଂଗ୍ରାମ ବା ସେ ସମୟର ଅନ୍ୟାନ୍ୟ ଏଭଳିଆ ଇଂରେଜ ବିରୋଧୀ ଆଦିବାସୀ ଓ ପ୍ରଜା ବିଦ୍ରୋହ ପ୍ରତି ଶିକ୍ଷିତ ବୁଦ୍ଧିଜୀବୀର ଏତେ

ମାତ୍ରାରେ ବିମୁଖ କାହିଁକି ? ତା'ର ତ ଗୋଟାଏ କାରଣ, ଯାହା ଆଗରୁ ଉଲ୍ଲିଖିତ, ହେଲା ଯେ ବିଦ୍ରୋହୀମାନେ ନିଜେ ଶିକ୍ଷିତ ବର୍ଗର ନୁହନ୍ତି । ତେଣୁ ଦୁଇଗୋଷ୍ଠୀ ମଧ୍ୟରେ କୌଣସି ଭାବଗତ ସଂବନ୍ଧ ରହି ପାରିନି; ମାତ୍ର ତା'ଠାରୁ ବୋଧହୁଏ ବଡ଼ କାରଣ ହେବ ଯେ, ନବଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଯେଉଁ ଧରଣର ଏକ ଆଧୁନିକ ସମାଜର ପରିକଳ୍ପନା କରୁଥିଲେ, ତା' ପାଇଁ, ସେମାନଙ୍କ ମତରେ, ଇଂରେଜ ରାଜୁତି ବାଧକ ନ ହୋଇ, ବରଂ ସହାୟକ ଥିଲା । ସେଥିପାଇଁ ଫକୀରମୋହନ ଟି.ଇ. ରେଭେନ୍ସାଙ୍କର ଓଡ଼ିଶାରେ କାର୍ଯ୍ୟକାଳକୁ ଓଡ଼ିଶା ଇତିହାସର ସୁବର୍ଣ୍ଣଯୁଗ ବୋଲି 'ଭାରତ ଇତିହାସ' ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ଗଂଗାଧର ମେହେର 'ଭିକ୍ଟୋରିଆ ସ୍ତବ' ଗାଇଛନ୍ତି । ପ୍ରଥମ ମହାଯୁଦ୍ଧ ପରେ ଯେତେବେଳେ ପଂଜାବର ଜାଲିଆନୱାଲା ବାଗ୍‌ରେ ଅମାନବୀୟ ଭାବରେ ଶାନ୍ତିପ୍ରିୟ ଜନତାଙ୍କୁ ହତ୍ୟା କରାଗଲା । ମହାତ୍ମାଗାନ୍ଧି ଭାରତୀୟ ରାଜନୀତିକୁ ନୂଆ ଦିଗ୍‌ଦର୍ଶନ ଦେଲେ, ତଥା ଶାସନ ସଂସ୍କାର ନାଁରେ ସରକାର 'ରାଓଲଟ୍ ଆଇନ୍' ଭଳି ଜନ-ବିରୋଧୀ ନିୟମ ପ୍ରଣୟନ କଲେ । ବୁଦ୍ଧିଜୀବୀଙ୍କ ଇଂରେଜ ଶାସନକୁ ନେଇ ଧାରଣା ବଦଳିଲା । ଅର୍ଥାତ୍ ୧୮୫୭ର ମହାସଂଗ୍ରାମ ସମୟରେ ବୁଦ୍ଧିଜୀବୀ ଗୋଷ୍ଠୀ ଇଂରେଜ ସରକାରକୁ ଦେଶର ଶତ୍ରୁ ବୋଲି ବିଚାର କରୁନଥିଲେ । ଅନ୍ୟ ପକ୍ଷରେ ଅଶିକ୍ଷିତ ସିପାହି ଓ ସାମନ୍ତବାଦୀ ରାଜା-ଜମିଦାରଙ୍କ ନେତୃତ୍ୱରେ ପରିଚାଳିତ ବିଦ୍ରୋହର ଉଦ୍ଦେଶ୍ୟକୁ ନେଇ ସେମାନେ ବିଶେଷ ଆଶାବାଦୀ ନ ଥିଲେ । ଫଳରେ ଦୁଇଗୋଷ୍ଠୀ ମଧ୍ୟରେ କୌଣସି ଭାବଗତ ସଂବଂଧ ରହିପାରିଲା ନାହିଁ ।

ଇତିହାସର ଏକ ବିଡ଼ମ୍ବନା ଯେ ସ୍ୱାଧୀନୋତ୍ତର ଭାରତରେ ମଧ୍ୟ 'ସ୍ୱାଧୀନତା ସଂଗ୍ରାମ' 'କଂଗ୍ରେସ ଆନ୍ଦୋଳନ' 'ଉନବିଂଶ ଶତାବ୍ଦୀର ସାମାଜିକ ଆନ୍ଦୋଳନ' ଆଦି ବିଷୟକୁ ଗବେଷଣା ବେଳେ ଯେଉଁ ପ୍ରାଧାନ୍ୟ ଦିଆଯାଏ, ୧୮୫୭ର ମହାସଂଗ୍ରାମର ଗବେଷଣାକୁ ସେହି ପ୍ରାଧାନ୍ୟ ମିଳେ ନାହିଁ । ତେଣୁ ଆଜି ସୁଦ୍ଧା ୧୮୫୭ର ଅନେକ ଦିଗ ଅନାଲୋଚିତ ପ୍ରାୟ ସ୍ଥିତିରେ । ଫଳରେ '୧୮୫୭' ଓ ତାର ନାୟକମାନଙ୍କୁ ନେଇ ରାଷ୍ଟ୍ରବାଦର ମୋହରେ ମୋହଗ୍ରସ୍ତ ଆମ ସମାଜରେ ବୃଥା ଆସ୍ଫାଳନ କରାହୁଏ । ଭ୍ରମ ଧାରଣା ବଳବତ୍ତର ରହେ । ପରିଣାମ ସ୍ୱରୂପ ଅତି ନିକଟ ଅତୀତର ଘଟଣା ହେବା ସତ୍ତ୍ୱେ '୧୮୫୭' ଇତିହାସରୁ ଯାଇ କିମ୍ବଦନ୍ତୀରେ ପରିଣତ ହେଲାଣି । ଏହି ଦୃଷ୍ଟିରୁ ଆମ ଆଲୋଚନାକୁ ୧୮୫୭ ସଂପର୍କରେ ଏକ ନୂଆ ଦିଗଦର୍ଶନ ବୋଲି କହିବା ବାହାସ୍ଫୋଟ ହେବ ନିଶ୍ଚୟ । ବରଂ ଅଧିକ ପାଠକ ଏବଂ ଅଧିକ ଦାୟିତ୍ୱପୂର୍ଣ୍ଣ ଗବେଷକଙ୍କର ବିଷୟଟି ପ୍ରତି ଆଗ୍ରହ ସୃଷ୍ଟି କରିବା ସକାଶେ ଏହା ଏକ କ୍ଷୁଦ୍ର ଉଦ୍ୟମ ବୋଲି କହିବା ଉଚିତ ହେବ ।

❑❑

# ନରମପନ୍ଥୀ ଓ ସ୍ୱାଧୀନତା ସଂଗ୍ରାମ

ଭାରତର ସ୍ୱାଧୀନତା ସଂଗ୍ରାମକୁ ଦୁଇ ଚାରି ବର୍ଷର ସୀମିତ କାଳଖଣ୍ଡ କିମ୍ବା ଆଠ ଦଶ ଜଣ ନେତୃବୃନ୍ଦଙ୍କର କ୍ରିୟାକଳାପ ମଧ୍ୟରେ ଆବଦ୍ଧ ରଖି କେବେ ଦେଖାଯାଇ ନପାରେ । ତା'ର ଅବଧି ଯେତିକି ଦୀର୍ଘ ତହିଁରେ ଅଂଶଗ୍ରହଣ କରିଥିବା ଜନସମୂହଙ୍କ ସଂଖ୍ୟା ସେତିକି ବ୍ୟାପକ । ୧୭୫୭ ମସିହାର ପଲାସୀ ଯୁଦ୍ଧର ପରିଣାମ ହେଲା ସିରାଜଉଦ୍ଦୌଲାଙ୍କର ଇଂରେଜମାନଙ୍କ ହାତରେ ପରାଜୟ । ତା' ପରଠାରୁ ବଙ୍ଗରେ ଆରମ୍ଭ ହୋଇ ବ୍ରିଟିଶ୍ ଉପନିବେଶବାଦ ଦେଶର ଅନ୍ୟାନ୍ୟ ଅଞ୍ଚଳକୁ ନିଜ କର୍ତ୍ତୃତ୍ୱାଧୀନ କଲା ଏବଂ ତା' ସାଙ୍ଗରେ ତାଳ ଦେଇ ଉପନିବେଶବାଦ ବିରୋଧୀ ବିଦ୍ରୋହଗୁଡ଼ିକର ମଧ୍ୟ ସୂତ୍ରପାତ ହେଲା । ସନ୍ନ୍ୟାସୀ ବିଦ୍ରୋହ (୧୭୬୩)ରୁ ଆରମ୍ଭ କରି ଅଗଷ୍ଟ ବିପ୍ଳବ (୧୯୪୨) ଯାଏ ସବୁଗୁଡ଼ିକର ଉଦ୍ଦେଶ୍ୟ ଥିଲା ବ୍ରିଟିଶ କର୍ତ୍ତୃତ୍ୱରୁ ମୁକ୍ତି । ମଝିରେ ପ୍ରତିବାଦର ପନ୍ଥା ବଦଳିଛି, ତାକୁ 'ବିଦ୍ରୋହ' ନକହି ଆମେ 'ଆନ୍ଦୋଳନ' କିମ୍ବା 'ବିପ୍ଳବ'ର ଆଖ୍ୟା ଦେଇଛନ୍ତି; ମାତ୍ର ମୂଳ ଉଦ୍ଦେଶ୍ୟରେ ପରିବର୍ତ୍ତନ ହୋଇନାହିଁ । ତେଣୁ ସେହି ବ୍ୟାପକ ଉପନିବେଶବାଦ ବିରୋଧୀ ସଂଗ୍ରାମର କୌଣସି ଖଣ୍ଡକୁ ସ୍ୱାଧୀନତା ସଂଗ୍ରାମ ବା ଜାତୀୟତା ଆନ୍ଦୋଳନର ଅଂଶ ନୁହେଁ ବୋଲି କାଢ଼ି ବାହାର କରିବା କଷ୍ଟ । ଠିକ୍ ସେହିଭଳି ସେହି ସୁଦୀର୍ଘ କାଳଖଣ୍ଡରେ ଭାରତ ଭଳି ଏକ ବିଶାଳ ଭୂମଣ୍ଡଳରେ କେତେ ସଂଖ୍ୟାରେ ଯେ ଲୋକ ସଂଗ୍ରାମରେ ବ୍ୟାପୃତ ରହିଛନ୍ତି, ତା'ର କଳନା ନାହିଁ । ତେଣୁ ସେମାନଙ୍କ ମଧ୍ୟରୁ କିଏ ମୁଖ୍ୟ ଏବଂ କିଏ ଗୌଣ, ତା' ବି ନିର୍ଦ୍ଧାରଣ କରିବା କଷ୍ଟ । ବଡ଼କଥା ହେଲା ସେତେବେଳେ ସଂଗ୍ରାମ ସାଙ୍ଗରେ ତାଳଦେଇ ଏକ ଆଧୁନିକ ଭାରତର ବି ନିର୍ମାଣ ଚାଲିଛି । ଏହି ନିର୍ମାଣ ପ୍ରକ୍ରିୟାରେ କିଏ ଭିତ୍ତି ପଡ଼ିଲା ବେଳେ ଯୋଗଦାନ କରିଛି ତ ପୁଣି ଆଉ କିଏ ପୂର୍ଣ୍ଣାହୂତି ବେଳେ । ସମସ୍ତଙ୍କର ଅବଦାନ ନିଜ ନିଜ ସ୍ତରରେ ଅନନ୍ୟ, ବୈଶିଷ୍ଟ୍ୟପୂର୍ଣ୍ଣ; ମୁଖ୍ୟ-ଗୌଣର ତରାଜୁରେ ତାକୁ ମାପିବା ଯୁକ୍ତିଯୁକ୍ତ ମନେ ହୁଏନା ।

ଏଭଳି ଏକ ବ୍ୟାପକ ପରିପ୍ରେକ୍ଷୀରେ ଯଦି ସଂଗ୍ରାମକୁ ଦେଖାଯାଏ, ତେବେ ମନେହେବ ଯେ, 'ମଡ଼ରେଟ' ବା ନରମପନ୍ଥୀ ରାଷ୍ଟ୍ରବାଦୀମାନଙ୍କର ମହତ୍ତ୍ୱପୂର୍ଣ୍ଣ

ଯୋଗଦାନ ରହିଥିଲା । ମାତ୍ର ସେମାନଙ୍କର ରାଜନୈତିକ ଅବଦାନକୁ ଯେଉଁ ମହତ୍ତ୍ୱ ମିଳିବା କଥା, ସାଧାରଣତଃ ତାହା ଦିଆଯାଏ ନାହିଁ । ଏହାର ଏକ ବଡ଼ ଉଦାହରଣ ହେଲା ୨୦୦୨ ମସିହାରେ କେନ୍ଦ୍ରରେ ବିଜେପି ନେତୃତ୍ୱାଧୀନ ସରକାର ଅମଳରେ ସ୍କୁଲ ଛାତ୍ରଙ୍କ ପାଇଁ ଏନ୍‌ସିଇଆର୍‌ଟି ଦ୍ୱାରା ଲେଖା ହୋଇଥିବା 'ଆଧୁନିକ ଭାରତ' ପୁସ୍ତକା ଏଥିରେ 'ମଡ଼ରେଟ୍' ବା ନରମପନ୍ଥୀମାନଙ୍କୁ ଜାତୀୟତାବାଦୀ ବା 'ନେସନାଲିଷ୍ଟ'ମାନଙ୍କଠାରୁ ଏକ ଅଲଗା ଗୋଷ୍ଠୀ ବୋଲି ଚିତ୍ରିତ କରାଯାଇଛି । ଭାରତର ସ୍ୱାଧୀନତା ସକାଶେ ହେଉଥିବା ପ୍ରୟାସକୁ ତିନି ଭାଗରେ ବିଭକ୍ତ କରି ଭାରି ପ୍ରଚ୍ଛନ୍ନ ଭାବରେ ଉଲ୍ଲେଖ କରାଯାଇଛି ଯେ, ଭାଗଗୁଡ଼ିକ ହେଲେ 'ମଡ଼ରେଟ୍', 'ନେସନାଲିଷ୍ଟ' ଏବଂ 'ରିଭୋଲ୍ୟୁସନାରୀ' । ଅର୍ଥାତ୍ 'ମଡ଼ରେଟ୍'ମାନେ 'ନେସନାଲିଷ୍ଟ' ଗୋଷ୍ଠୀଭୁକ୍ତ ହୋଇ ନ ପାରନ୍ତି । ଅବଶ୍ୟ ବିଜେପିର କ୍ଷମତାଚ୍ୟୁତ ହେବା ପରେ ସେହି ପୁସ୍ତକର ଆଉ ବ୍ୟବହାର ନାହିଁ ।

ଉଦ୍ଧୃତ ପୁସ୍ତକ ତ ଏକ ସାମୟିକ ଘଟଣା ମାତ୍ର । ଏମିତି ଲୌକିକ ସ୍ତରରେ ଚରମପନ୍ଥୀ, ଗାନ୍ଧିବାଦୀ କିମ୍ବା ଯୁବ ବିପ୍ଳବୀମାନଙ୍କ ତୁଳନାରେ ଆଜିର ପିଢ଼ି ନରମପନ୍ଥୀଙ୍କୁ କମ୍ ମନେ ରଖେ । ସ୍ୱାଧୀନତା ସଂଗ୍ରାମର କେତେଜଣ ପ୍ରମୁଖ ନେତାଙ୍କର ନାଁ ଗଣିବାକୁ କୁହାଗଲେ ସ୍ୱତଃ ନରମପନ୍ଥୀମାନେ ତୁଣ୍ଡକୁ ଆସନ୍ତି ନାହିଁ । ନାମର ତାଲିକାରେ ଗାନ୍ଧୀ, ନେହେରୁଙ୍କ ନାଁ ସ୍ଥାନ ପାଏ, ଯୁବ ବିପ୍ଳବୀ ଭଗତ ସିଂହ, ଚନ୍ଦ୍ରଶେଖର ଆଜାଦ ପ୍ରମୁଖତା ପାଆନ୍ତି, ଗାନ୍ଧୀ ନେତୃତ୍ୱର ବିକଳ୍ପ ଦେବାକୁ ପ୍ରୟାସ କରିଥିବା ସୁଭାଷ ବୋଷଙ୍କ ନାଁ ମଧ୍ୟ ରହେ । ଏପରିକି 'ସିପାହି ବିଦ୍ରୋହ' ନାମରେ ପରିଚିତ ୧୮୫୭ ମସିହାର ଗଣସଂଗ୍ରାମର ନାୟିକା ରାଣୀ ଲକ୍ଷ୍ମୀବାଈ ମଧ୍ଯ ଅପାଶୋରା ରହନ୍ତି ନାହିଁ । ସେମାନଙ୍କ ନାଁରେ ଦେଶର କୋଣ ଅନୁକୋଣରେ ଲୋକ ସ୍କୁଲ, ଯୁବକ ସଂଘକୁ ନାମିତ କରନ୍ତି; ନାଟକ ମଞ୍ଚସ୍ଥ ହୁଏ, କାବ୍ୟ କବିତା ଲେଖା ହୁଏ, ସିନେମା ତିଆରି ହୁଏ; ତ୍ୟାଗୀ, ନିଷ୍ଠାବାନ, ବିବେକୀ ମଣିଷଟିଏ କାହିଁ କେଉଁଠି ମିଳିଗଲେ ତାଙ୍କୁ 'ଗାନ୍ଧୀ' 'ଗୋପବନ୍ଧୁ' ଆଦିଙ୍କ ନାଁରେ ନାମକରଣ କରାଯାଏ; ଅଥଚ ସ୍ୱାଧୀନତା ସଂଗ୍ରାମର 'ଭୀଷ୍ମ ପିତାମହ' ନାମରେ ପରିଚିତ ନରମପନ୍ଥୀ ଦାଦାଭାଇ ନାରୋଜୀ, କିମ୍ବା ମହାତ୍ମା ଗାନ୍ଧୀଙ୍କର ରାଜନୈତିକ ଗୁରୁ ଗୋପାଳକୃଷ୍ଣ ଗୋଖଲେ; ଅଥବା ଜାତୀୟ କଂଗ୍ରେସର ପ୍ରଥମ ସଭାପତି ଉମେଶ ଚନ୍ଦ୍ର ବାନାର୍ଜୀଙ୍କର ନାଁ କ୍ୱଚିତ୍ ଚର୍ଚ୍ଚାର ପରିସରକୁ ଆସେ । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଏହି ନରମପନ୍ଥୀମାନେ ଜାତୀୟ ସଂଗ୍ରାମର ମହାମଞ୍ଚ ରୂପେ କଂଗ୍ରେସର ପିଣ୍ଡ ସ୍ଥାପନା କରିଛନ୍ତି, ଶୈଶବରେ ତା'ର ଲାଳନପାଳନ କରିଛନ୍ତି, ବ୍ରିଟିଶ୍ ରାଜତ୍ୱ

ସମୟରେ 'ସଭ୍ୟତା' ଆଳରେ ଚାଲିଥିବା ନିରନ୍ତର ଲୁଟ ଓ ଶୋଷଣର ବିଶ୍ୱଦରବାରରେ ପର୍ଦାଫାସ୍ କରିଛନ୍ତି । ତା' ସତ୍ତ୍ୱେ, ସଂଗ୍ରାମର ପୂର୍ଣ୍ଣାହୁତି ସମୟରେ ଆମେ ସେମାନଙ୍କୁ କ୍ୱଚିତ ମନେ ପକାନ୍ତି ।

ଏହାର ଅର୍ଥ ନୁହେଁ ଯେ ଆଧୁନିକ ଭାରତ ଇତିହାସର ଗବେଷଣାରେ ନରମପନ୍ଥୀଙ୍କ ଅବଦାନକୁ ଉପେକ୍ଷା କରାଯାଏ । ଏକାଧିକ ଐତିହାସିକ ଭାରି ଯୁକ୍ତିପୂର୍ଣ୍ଣ ଢଙ୍ଗରେ 'ନରମପନ୍ଥୀ' ବା 'ଆଦ୍ୟ ଜାତୀୟତାବାଦୀ'ମାନଙ୍କର (ଆର୍ଲି ନେସନାଲିଷ୍ଟ) ରାଜନୈତିକ ବୈଶିଷ୍ଟ୍ୟକୁ ଉପସ୍ଥାପିତ କରିଛନ୍ତି; ମାତ୍ର ସେସବୁ ଯୁକ୍ତି ଲୌକିକସ୍ତରକୁ ଆସି ନ ଥିବା ଭଳି ମନେହୁଏ । ସେଭଳି କେତୋଟି ଯୁକ୍ତିକୁ ସଂକ୍ଷେପରେ ଆଲୋଚନା କରିବା ହେଲା ଏହି ନିବନ୍ଧର ଉଦ୍ଦେଶ୍ୟ ।

'ସିପାହିବିଦ୍ରୋହ' ଦମନର କିଛିକାଳ ଉତ୍ତାରୁ ଭାରତରେ ଆଧୁନିକ ରାଜନୀତିର ଯେଉଁ ଅୟମାରମ୍ଭ ହେଲା, ସେହିଦିନଠାରୁ ଆରମ୍ଭ କରି ୧୯୦୭ ସୁରାଟ ଅଧିବେଶନରେ କଂଗ୍ରେସ ଦଳର ବିଭାଜନ ଯାଏଁ ସ୍ୱାଧୀନତା ଆନ୍ଦୋଳନର ଯେଉଁ ବିସ୍ତୃତ କାଳଖଣ୍ଡ ତାକୁ ସାଧାରଣତଃ 'ନରମପନ୍ଥୀ ଯୁଗ' ବୋଲି କୁହାଯାଏ । ଉମେଶ ଚନ୍ଦ୍ର ବାନାର୍ଜୀ, ସୁରେନ୍ଦ୍ର ନାଥ ବାନାର୍ଜୀ, ଗୋପାଳକୃଷ୍ଣ ଗୋଖଲେ, ଦାଦାଭାଇ ନାରୋଜୀ, ଆନନ୍ଦ ଚାରୁଲ୍, ଶଙ୍କରନ୍ ନାୟାର ପ୍ରମୁଖ ଥିଲେ ସେହି ଗୋଷ୍ଠୀର କେତେଜଣ ପ୍ରମୁଖ ନେତା । ନିକଟ ଅତୀତରେ ୧୮୫୭ ମସିହାର ଗଣସଂଗ୍ରାମକୁ ବ୍ରିଟିଶ୍ ସରକାର ଯେଉଁ ନିର୍ମମତାର ସହିତ ଦମନ କଲା, ତାହା ସେମାନଙ୍କ ସ୍ମୃତିରେ ଜୀବନ୍ତ ହୋଇ ରହିଥିଲା । ଏଥିରୁ ସେମାନେ ନିଶ୍ଚିତ ହେଲେ ଯେ ସଶସ୍ତ୍ର ସଂଗ୍ରାମ ବଳରେ ବ୍ରିଟିଶ୍ ଶାସନକୁ ପରାଜିତ କରାଯାଇ ନ ପାରେ । ତେଣୁ ମହାତ୍ମା ଗାନ୍ଧୀଙ୍କର ରାଜନୀତିରେ ଆବିର୍ଭାବ ହେବାର ବହୁ ପୂର୍ବରୁ ନରମପନ୍ଥୀମାନେ ସ୍ଥିର କରିଗଲେ ଯେ ଭବିଷ୍ୟତରେ ବ୍ରିଟିଶ୍ ବିରୋଧୀ ସଂଗ୍ରାମକୁ ଅହିଂସପନ୍ଥା ଆଚରଣ କରିବାକୁ ପଡ଼ିବ, ସାମ୍ବିଧାନିକ ପରିଧିର ଅର୍ଥାତ୍ ଇଂରେଜ ନୀତିନିୟମର ପରିଧି ଭିତରେ ରହି ଇଂରେଜ ହଟାଅ କହିବାକୁ ପଡ଼ିବ । ଗୋଟିଏ ଶବ୍ଦରେ କହିଲେ, ଶାସନ କଳର ଅନୁମତି ନେଇ, ଶାସନ ବିରୋଧୀ ସଂଗ୍ରାମ କରିବାକୁ ପଡ଼ିବ । ଦ୍ୱିତୀୟତଃ ଏହି ବିଚାରର ମଧ୍ୟ ଭିତ୍ତି ପଡ଼ିଲା ଯେ, ବ୍ରିଟିଶ୍ ଶକ୍ତିକୁ ଦେଶରୁ ବିତାଡ଼ିତ କରିବା କେବଳ ସ୍ୱାଧୀନତା ସଂଗ୍ରାମ ବା ଜାତୀୟତା ଆନ୍ଦୋଳନର ଏକମାତ୍ର ଉଦ୍ଦେଶ୍ୟ ହୋଇ ନ ପାରେ । ଯେଉଁ ସାମାଜିକ ଏବଂ ରାଜନୈତିକ ଦୁର୍ବଳତା ଯୋଗୁଁ ଭାରତ ଭଳି ଏତେ ବଡ଼ ଏକ ଭୂଖଣ୍ଡ ସାମାନ୍ୟ ବିଦେଶୀ ଆକ୍ରମଣକୁ ମଧ୍ୟ ମୁକାବିଲା କରି

ପାରେନା, ସେହି ଦୁର୍ବଳତାର ଦୂରୀକରଣ ନିମନ୍ତେ ସଂଗ୍ରାମକୁ ଏକ ସାମାଜିକ ଆନ୍ଦୋଳନ କରି ଗଢ଼ିବାକୁ ପଡ଼ିବ, ଉଭୟ ପାଶ୍ଚାତ୍ୟ ମୂଲ୍ୟବୋଧ ଏବଂ ଭାରତୀୟ ପରମ୍ପରାରୁ ଆବଶ୍ୟକ ଉପାଦାନ ନେଇ ଏକ ନୂଆ ଆଧୁନିକ ଭାରତ ଗଠନ ହେବ । ସ୍ୱାଧୀନତା ଆନ୍ଦୋଳନର ଏ ଯେଉଁ ନୂଆ ଏବଂ ବ୍ୟାପକ ପରିଭାଷା, ସେଥିରେ ମଝିରେ ଆଉ କୌଣସି ଫେର ବଦଳ ହୋଇନାହିଁ । ସ୍ୱାଧୀନତା ପ୍ରାପ୍ତି ଯାକେ ଆନ୍ଦୋଳନ ଇଂରେଜମାନଙ୍କୁ ଦେଶରୁ ବିତାଡ଼ିତ କରିବା ସାଙ୍ଗରେ ନୂଆ ଦେଶ ଗଠନ ପ୍ରଶ୍ନକୁ କେବେ ଉପେକ୍ଷା କରନି । ସେହି ଦୃଷ୍ଟିରୁ ନରମପନ୍ଥୀମାନଙ୍କର ଅବଦାନ ଅନ୍ୟମାନଙ୍କ ଅପେକ୍ଷା କଦାପି ଊଣା ହୋଇ ନପାରେ ।

ନରମପନ୍ଥୀମାନଙ୍କର ଆଉ ଏକ ମହତ୍ତ୍ୱପୂର୍ଣ୍ଣ ଅବଦାନ ହେଲା, ରାଜନୀତିକୁ 'ରାଜଦ୍ୱାର'ର ନିଭୃତ କୋଣରୁ ବାହାରକୁ ଆଣି 'ଜନପଥ'ରେ ସ୍ଥାପିତ କରି ରଖିବା । ପ୍ରଥମ ଥର ପାଇଁ ସେମାନେ ନିଜେ ରାଜନ୍ୟ ବର୍ଗର ନ ହେବା ସତ୍ତ୍ୱେ ରାଜନୀତିରେ ନିଜର କର୍ତ୍ତୃତ୍ୱ ଜାହିର କଲେ ଏବଂ ଜନସାଧାରଣଙ୍କର ଏଥିରେ ପୂର୍ଣ୍ଣ କର୍ତ୍ତୃତ୍ୱ ରହିଛି ବୋଲି ସିଦ୍ଧ କଲେ । ଏଣିକି ପ୍ରଶାସନ ବିରୁଦ୍ଧରେ ପ୍ରତିବାଦର ସ୍ୱର ଟୋକିବାକୁ ଆଉ ରାଜା-ରାଜୁଡ଼ା ବର୍ଗ ନେତୃତ୍ୱର କେହି ଆବଶ୍ୟକତା ମଣିଲେ ନାହିଁ; ଅର୍ଥାତ୍ ୧୮୫୭ ମସିହା ପର୍ଯ୍ୟନ୍ତ ଯେଉଁ ପରମ୍ପରା ରହିଥିଲା ଯେ ରାଜନ୍ୟବର୍ଗର ଲୋକେ, ସେ ରାଣୀ ଲକ୍ଷ୍ମୀବାଈ ହୁଅନ୍ତୁ, ବା ଶେଷ ମୋଗଲ ସମ୍ରାଟ ଦ୍ୱିତୀୟ ବାହାଦୁର ଶାହ ହୁଅନ୍ତୁ; କିମ୍ବା ସମ୍ବଲପୁରର ସୁରେନ୍ଦ୍ର ସାଏ ହୁଅନ୍ତୁ, କେବଳ ଇଂରେଜ ବିରୋଧୀ ସଂଗ୍ରାମର ନେତୃତ୍ୱ ନେବେ ତାହା ଆଉ ଏଣିକି ରହିଲା ନାହିଁ । ରାଜନ୍ୟ ବର୍ଗ ହାତରୁ ଦେଶର ସାମାଜିକ ନେତୃତ୍ୱ କରଛଡ଼ା ହେବା ଦ୍ୱାରା ଆନ୍ଦୋଳନ ରୂଢ଼ିବାଦରୁ ଅନେକାଂଶରେ ମୁକ୍ତ ହେଲା, ସାଙ୍ଗକୁ ଏକ ନୂଆ ଆଧୁନିକ ସମାଜ ଗଢ଼ିବା ପାଇଁ ଦିଶା ନିର୍ଦ୍ଦେଶ ପାଇଲା ।

ନରମପନ୍ଥୀମାନଙ୍କର ଆଉ ଏକ ଉପଲବ୍ଧି ହେଲା ଭାରତ ଭଳି ଏକ ମହାଜାତିର ଗଠନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା । ଏତେବେଳଯାଏ ଇଂରେଜ ବିରୋଧୀ ଅଭିଯାନଗୁଡ଼ିକ ସ୍ଥାନୀୟ ସମସ୍ୟାକୁ ନେଇ ଏକ ଆଞ୍ଚଳିକ ପରିଧି ଭିତରେ ସୀମାବଦ୍ଧ ହୋଇ ରହୁଥିଲେ । ନାନା ସାହେବ ଚାହୁଁଥିଲେ କାନପୁର ଇଂରେଜମାନଙ୍କ ହାତକୁ ନ ଯାଉ, ଅଯୋଧ୍ୟାର ବେଗମ୍ ହଜରତ ମହଲଙ୍କ ଦାବି ଥିଲା ଯୁବରାଜ ବିର୍ଜିସ କଦରକୁ ରାଜଗାଦି ମିଳୁ । ଇଂରେଜ ବିରୁଦ୍ଧରେ ସେମାନଙ୍କର ଏକତ୍ର ହେବା ପଛରେ ଭାରତୀୟ ମହାଜାତିକୁ ନେଇ ସେଭଳି କିଛି ଦୂରଦୃଷ୍ଟି ଥିବା କଥା ଜଣାପଡ଼େନି ।

ଅବଶ୍ୟ ୧୮୫୭ରେ ଅନ୍ତତଃ ବିଦ୍ରୋହୀମାନେ ନିଜ ନିଜ ଭିତରେ ଯୋଗସୂତ୍ର ରକ୍ଷା କରୁଥିଲେ । ତା' ପୂର୍ବରୁ ସାଧାରଣତଃ ଶତ୍ରୁ ଇଂରେଜ ବିରୁଦ୍ଧରେ ଲଢ଼ିବାବେଳେ ସେତକ ବି ସମ୍ଭବ ହେଉ ନଥିଲା । ପାଖ ପଡ଼ିଶାର ବିଦ୍ରୋହୀଙ୍କ ମଧ୍ୟରେ ବି ସାଙ୍ଗଠନିକ ସଂଯୋଜନାର ବିଶେଷ ଅଭାବ ଦେଖାଯାଉ ଥିଲା । ଫଳରେ ପ୍ରବଳ ପରାକ୍ରମୀ ଇଂରେଜ ବିରୁଦ୍ଧରେ ଏକା ଏକା ଲଢ଼ି ସେମାନେ ନିଆଁରେ କୀଟପତଙ୍ଗ ପରି ନାଶ ପାଉଥିଲେ । ଏହି ସ୍ଥିତିର ବିକଳ୍ପ ରୂପେ ନରମପନ୍ଥୀମାନେ ଏକ ମହାଭାରତୀୟ ରାଜନୈତିକ ମଞ୍ଚର ପରିକଳ୍ପନା କଲେ, ଯାହାକି ଭାରତୀୟ ଜାତୀୟ କଂଗ୍ରେସ ନାମରେ ୧୮୮୫ ମସିହାରେ ସ୍ଥାପିତ ହେଲା । ଲକ୍ଷ୍ୟ ହେଲା, ଆଞ୍ଚଳିକ ସ୍ତରରେ ସଭାସମିତିମାନ ସ୍ଥାନୀୟ ସମସ୍ୟାକୁ ନେଇ ବିଚାର ଆଲୋଚନା କରିବେ ଏବଂ ସେମାନଙ୍କ ମଧ୍ୟରେ ଏକତା ଓ ଯୋଗସୂତ୍ର ରହିବ ଜାତୀୟ କଂଗ୍ରେସ ନାମରେ । ଏକ ଜାତୀୟ ଆନ୍ଦୋଳନର ସୁଦୃଢ଼ ଭିତ୍ତି ସକାଶେ ଏଭଳି ଏକ ମହାମଞ୍ଚର ଯେ ଅତ୍ୟନ୍ତ ଆବଶ୍ୟକତା ରହିଥିଲା, ତାହା ନରମପନ୍ଥୀ ନେତୃବର୍ଗ ଭଲ ଭାବେ ବୁଝିଥିଲେ ।

ନରମପନ୍ଥୀ ରାଜନୀତିର ଉପଲବ୍ଧି ସବୁର ବିଷଦ ଆଲୋଚନା ଏଠାରେ ସମ୍ଭବ ନୁହେଁ । ଠିକ୍ ସେହିଭଳି, ତା'ର ବିଫଳତା ବି ରହିଥିଲା । ତାକୁ ସମାଲୋଚନା କରି ଗରମପନ୍ଥୀ ତିଳକ, ଲଜପତ ରାଏ ଆଦି ଆନ୍ଦୋଳନରେ ଲୋକପ୍ରିୟତା ପାଇଲେ । ତା' ମଧ୍ୟ ଏଠି ଆଲୋଚନାର ବିଷୟ ହୋଇନପାରେ । କେବଳ ଦେଖିବା କଥା ଯେ ନରମପନ୍ଥୀ ନାମକ ଏହି ବୁଦ୍ଧିଜୀବୀ ଗୋଷ୍ଠୀକୁ ଲୌକିକ ସ୍ତରରେ କାହିଁକି ବିଶେଷ ପରିଚିତି ମିଳେ ନାହିଁ ।

ଏଥିପାଇଁ ବୋଧହୁଏ ଏକ ବଡ଼ କାରଣ ହେବ, ନରମପନ୍ଥୀ କାର୍ଯ୍ୟଶୈଳୀରେ ନାଟକୀୟତାର ଅଭାବ । ଉପନ୍ୟାସ, ନାଟକ ପରି ଇତିହାସରେ ମଧ୍ୟ ପାଠକ ନାଟକୀୟତା ଖୋଜେ । ତାହା ଭଗତ ସିଂହ ଫାଶୀ ପାଇବା ଘଟଣାରେ ମିଳେ । ରାଣୀ ଲକ୍ଷ୍ମୀବାଈଙ୍କ ରଣାଙ୍ଗନରେ ନିହତ ହେବା ଘଟନାରେ ବି ମିଳେ । ଗୃହବନ୍ଦୀ ଶାଳାରୁ ସୁଭାଷ ବୋଷଙ୍କର ପଳାୟନ କିମ୍ବା ମହାତ୍ମା ଗାନ୍ଧୀଙ୍କର ଗୋରା ରେଳ କର୍ମଚାରୀ ହାତରେ ଟ୍ରେନ୍‌ରୁ ତଡ଼ା ହେବାର ଘଟନାରେ ବି ନାଟକୀୟତା ଅତୁଟ ରହେ, କିନ୍ତୁ ଏହି ଧରଣର ନାଟକୀୟତା ନରମପନ୍ଥୀଙ୍କର ରାଜନୈତିକ କାର୍ଯ୍ୟଶୈଳୀ ଯଥା ସରକାରଙ୍କୁ ଆବେଦନ, ପ୍ରତିବେଦନ ଲେଖାରେ କିମ୍ବା ସମ୍ବାଦପତ୍ରର ନିବନ୍ଧ ଲେଖାରେ ସାଧାରଣତଃ ଦେଖାଯାଏନି । ଦ୍ୱିତୀୟତଃ ନରମପନ୍ଥୀ ରାଜନୀତିରେ ଆତ୍ମବଳିଦାନ କଥା ଭଲ ଭାବେ ପରିସ୍ଫୁଟ ହୁଏନା । ଓକିଲ, ଜଜ୍

(ଜଷ୍ଟିସ୍ ରାନାଡ଼େ), ଆଇସିଏସ୍ (ରମେଶ ଚନ୍ଦ୍ର ଦତ୍ତ), ଅଧ୍ୟାପକ (ଗୋଖଲେ) ଆଦିର ମଧ୍ୟବର୍ଗୀୟ ଜୀବନ ଜୀଇଁବା ପ୍ରକ୍ରିୟାରେ ସେମାନେ ରାଜନୀତି କରିଛନ୍ତି । ଭାରତୀୟ ସମାଜର ଉନ୍ନତି ପାଇଁ ବିଚାର ପ୍ରକଟ କରିଛନ୍ତି । ରାଜନୀତି କଲାବେଳେ ସେମାନେ ନା ଜେଲ୍ ଯାଇଛନ୍ତି, ନା ଫାଶୀ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ଅନେକ ସମୟରେ ଇଂରେଜ ଅଧିକାରୀଙ୍କ ସାଙ୍ଗରେ ବ୍ୟକ୍ତିଗତ ସମ୍ପର୍କ ମଧ୍ୟ ସେମାନଙ୍କ ଭଲ । ଏଭଳି ସ୍ଥିତିରେ ଅହର୍ନିଶ 'ନାୟକ' ଅନ୍ୱେଷଣରେ ରହୁଥିବା ଜନସମୂହ ଆତ୍ମବଳିଦାନର ପ୍ରତୀକ ମହାତ୍ମା ଗାନ୍ଧୀ, ଭଗତ ସିଂହ, ସୁଭାଷ ବୋଷଙ୍କୁ ଯେ ନିହାତି ବରଣ କରିବ, ଏଥିରେ ସନ୍ଦେହ ନାହିଁ । ସେମାନେ ଦେଶ ପାଇଁ ପ୍ରାଣବଳି ଦେଇଛନ୍ତି, ବ୍ୟକ୍ତିସ୍ୱାର୍ଥ ଆଗରେ ସମୂହ ସ୍ୱାର୍ଥର ମହନିୟତାକୁ କାର୍ଯ୍ୟତଃ ପ୍ରତିପାଦିତ କରି ପାରିଛନ୍ତି । ଅନ୍ୟପକ୍ଷରେ ଏକଥା ମଧ୍ୟ ସତ ଯେ 'ନରମପନ୍ଥୀ ଯୁଗ'ରେ ଆଞ୍ଚଳିକ ସ୍ତରର ଗଣ ସଂଗ୍ରାମଗୁଡ଼ିକୁ ଦୃଢ଼ ହସ୍ତରେ ଦମନ କରି ଇଂରେଜ ସରକାର ଲୋକଙ୍କ ମନରେ ଯେଉଁ ଭୟ ସଞ୍ଚାର କରିଥିଲେ, ସେହି ଭୟକୁ ବୈଚାରିକ ସ୍ତରରେ ଯତ୍‌କିଞ୍ଚିତ୍ ଊଣା କରିବା ଥିଲା ସେତେବେଳର ଜାତୀୟତାବାଦୀ ଯୁଗଧର୍ମ । ତା' ପାଇଁ ରାଜନୈତିକ ପନ୍ଥା ହେଲା ଆବେଦନ, ପ୍ରତିବେଦନ ଲେଖିବା, ସଭା ସମିତି ଏବଂ ସମ୍ବାଦପତ୍ରରେ ପରୋକ୍ଷ ଭାବେ ସରକାରର ସମାଲୋଚନା କରିବା । ପରବର୍ତ୍ତୀ ସମୟରେ ଏହି ନରମପନ୍ଥୀ ଯୁଗଧର୍ମ ଯେ ଲୋକଙ୍କୁ ଜେଲ୍ ଯିବାକୁ, ସରକାରୀ ଆଇନର ଅମାନ୍ୟ କରିବାକୁ ତଥା ଅଗଷ୍ଟ ବିପ୍ଳବ ବେଳେ ଜେଲ୍ ପାଚେରି ଡେଇଁ ଆତ୍ମଗୋପନ କରିବାକୁ କିମ୍ବା ଇଂରେଜ ପ୍ରଶାସନ ପ୍ରତି ନିଡ଼ର, ନିର୍ଭର ହେବାକୁ ଭିତ୍ତି ଦେଇଛି, ତାକୁ ଆଜି ଅସ୍ୱୀକାର କରିହେବ ନାହିଁ । ଅନ୍ୟ ଅର୍ଥରେ କହିଲେ, ସେ ସ୍ୱାଧୀନତା ଆନ୍ଦୋଳନରେ ନରମପନ୍ଥୀ ହୁଅନ୍ତୁ, ବା ସମସାମୟିକ ଆଉ କେଉଁ ସମାଜ କିମ୍ବା ଧର୍ମ ହେଉ, ସେଗୁଡ଼ିକର ପ୍ରକୃତ ମୂଲ୍ୟାଙ୍କନ ପାଇଁ ଆମକୁ ସେମାନଙ୍କର ଯୁଗଧର୍ମକୁ ହୃଦ୍‌ବୋଧ କରିବାକୁ ପଡ଼ିବ । ଅନ୍ୟଥା ମୂଲ୍ୟାଙ୍କନ କାମ ବସ୍ତୁନିଷ୍ଠ ହେବନାହିଁ— ଏହା ସ୍ୱାଭାବିକ କଥା ।

□□

# ସହସ୍ର ଆନ୍ଦୋଳନ ଓ ତା' ନେତୃତ୍ୱ

ସ୍ୱାଧୀନତା ଆନ୍ଦୋଳନ ସମୟରେ ଛୋଟବଡ଼ ସ୍ତରରେ ଅନେକ ଆନ୍ଦୋଳନମାନ ସଂଗଠିତ ହୋଇଛି । ଚାଷୀ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ମନ୍ଦିର ପ୍ରବେଶ ଆନ୍ଦୋଳନ, ଦଳିତ ଆନ୍ଦୋଳନ, ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ଭାରତ ଛାଡ଼ ଆନ୍ଦୋଳନ ଇତ୍ୟାଦି ସାଙ୍ଗକୁ ଆହୁରି ଅନେକ ଆନ୍ଦୋଳନ ଯାହା ବାହାର ଆଖିରେ ପଡ଼େନି । ଉଦାହରଣ ସ୍ୱରୂପ, ମହିଳାମାନଙ୍କର ଘରକୋଣରୁ ଆସି ରାଜନୀତିର ଖୋଲା ଅଗଣାରେ ସାମିଲ ହେବାର ଆନ୍ଦୋଳନ । ଘରକୋଣରୁ ବାହାରି ଆସିଥିବା ମହିଳା ଜଣକ ସରକାର ବିରୋଧରେ ଧାରଣା ଦେଇ, ପିକେଟିଂ କରି ଜେଲ୍ ଗଲା ଯେତିକି ବଡ଼ କଥା, ତା'ଠାରୁ ଅଧିକ ବଡ଼ କଥା ହେଲା ଘରର ରକ୍ଷଣଶୀଳ ପରିବେଶ ବିରୁଦ୍ଧରେ ସେ ମୁଣ୍ଡ ଟେକିଛି, ସ୍କୁଲ, କଲେଜ ଯିବାକୁ, ସଭାସମିତିରେ ଯୋଗ ଦେବାକୁ ବଦ୍ଧପରିକର ହୋଇଛି- ଏହା କୌଣସି ସାନ ଆନ୍ଦୋଳନ ହୋଇନପାରେ । ଠିକ୍ ସେମିତି ଯୁଗ ଯୁଗ ଧରି 'ନୀଚ'ର ଆଖ୍ୟାକୁ ସହ୍ୟ କରିଥିବା ଦଳିତ ବ୍ୟକ୍ତି ଜଣେ ଯେତେବେଳେ ଅନ୍ୟମାନଙ୍କ ସାଙ୍ଗରେ ସଭା ସମିତିରେ ସମସ୍କନ୍ଧ ହୋଇ ଭାଗ ନେଇଛି, 'ଉଚ୍ଚ' ଜାତିର ଲୋକଙ୍କ ସହ ମିଶି ଜେଲ ଯାଇଛି, ସେ ବି କିଛି କମ୍ ଆନ୍ତରିକ ଆନ୍ଦୋଳନ ହୋଇ ନପାରେ । ଏହାଛଡ଼ା ଅନେକ କ୍ଷେତ୍ରରେ ଆମ ପିଢ଼ି ଯାଏଁ ବଞ୍ଚିଥିବା ବୁଢ଼ା ସ୍ୱାଧୀନତା ସଂଗ୍ରାମୀ ଜଣକ ଜାତିବାଦୀ ବା ସାମ୍ପ୍ରଦାୟିକ ବା ପୁରୁଷତନ୍ତ୍ରୀ ଅଥବା ଲାଞ୍ଚଖୋର ନୁହନ୍ତି; ବିବେକର ବାଣୀ ଶୁଣି ସେ ସତକଥା କହନ୍ତି, ଏହା କି କମ୍ ସାମାଜିକ ଆନ୍ଦୋଳନ ? ଏହିସବୁ ସାମାଜିକ ଆନ୍ଦୋଳନକୁ ବାଦ୍ ଦେଇ ସ୍ୱାଧୀନତା ଆନ୍ଦୋଳନକୁ ବୁଝିବା ସହଜ ହେବ ନାହିଁ ।

ମହାତ୍ମା ଗାନ୍ଧୀ ଆମ ସ୍ୱାଧୀନତା ଆନ୍ଦୋଳନର ଏକ ପ୍ରମୁଖ ପ୍ରତୀକ । ନିଜ ଅସଲି ନାଁ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ନାଁରେ ଯେତେ ଲୋକ ତାଙ୍କୁ ଜାଣନ୍ତି ନାହିଁ, ତା'ଠାରୁ ଅନେକ ଅଧିକ ସଂଖ୍ୟାରେ ତାଙ୍କୁ ଜାଣନ୍ତି ମହାତ୍ମା ଗାନ୍ଧୀ ନାମରେ ।

ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁର ଷାଠିଏ ବର୍ଷ ପରେ ବି ଆଜି ଲୋକ ଗାନ୍ଧୀ କହିଲେ ତାଙ୍କୁ (ମହାତ୍ମାଙ୍କୁ) ହିଁ ବୁଝନ୍ତି, ଯଦିଓ ଅନେକ ଗାନ୍ଧୀ ଏହା ଭିତରେ ରାଜନୀତିରେ ମିଶି ଶିଖରକୁ ଯାଇଛନ୍ତି । ଏହା ତାଙ୍କ ଲୋକ ପରିଚିତି ଏବଂ ତାଙ୍କ ପ୍ରତି ସମ୍ମାନକୁ ସୂଚିତ କରେ । ମହାତ୍ମା ଗାନ୍ଧୀ ଭାରତୀୟ ରାଜନୀତିକୁ ଆସିବାର ବହୁବର୍ଷ ଆଗରୁ ସ୍ୱାଧୀନତା ଆନ୍ଦୋଳନର ନିହ ପଡ଼ିଥିଲା । ତାଙ୍କ ପରି ଲକ୍ଷ ଲକ୍ଷ ଲୋକ ସ୍ୱାଧୀନତା ପାଇଁ ଲଢ଼ିଥିଲେ । ଭଗତ ସିଂ, ଲକ୍ଷ୍ମଣ ନାୟକ, ମାଷ୍ଟର ସୂର୍ଯ୍ୟ ସେନ୍; ପ୍ରମୁଖଙ୍କ ତୁଳନାରେ ସ୍ୱାଧୀନତା ଏବଂ ଦେଶ ପାଇଁ ମହାତ୍ମା ଗାନ୍ଧୀଙ୍କ ତ୍ୟାଗ ନିଶ୍ଚିତ ରୂପେ ଅଧିକ ହୋଇ ନ ପାରେ, କାରଣ ସେମାନେ ଫାଶୀ କାଠରେ ଝୁଲିଥିଲେ, ଅନ୍ୟମାନେ ସ୍ୱାଧୀନତା ପାଇବେ ବୋଲି ନିଜେ ସର୍ବସ୍ୱ ତ୍ୟାଗ କରିଥିଲେ । ତା' ସତ୍ତ୍ୱେ ଗାନ୍ଧୀଙ୍କୁ ହିଁ ଅଧିକ ଶ୍ରେୟ ମିଳେ, ମହତ୍ତ୍ୱ ମିଳେ । ଗାନ୍ଧୀଙ୍କର ବାଇଶ ବର୍ଷ କାଳ ଦକ୍ଷିଣ ଆଫ୍ରିକାରେ କଟିଥିଲା ରଙ୍ଗଭେଦ ନୀତି ବିରୁଦ୍ଧରେ ସଂଗ୍ରାମ କରି । ପରବର୍ତ୍ତୀ ସମୟରେ ଗାନ୍ଧୀ ଯେତେ ଭାରତରେ ଆନ୍ଦୋଳନ କଲେ, ଦକ୍ଷିଣ ଆଫ୍ରିକାରେ କରାଯାଇଥିବା ପ୍ରୟୋଗମାନ ବ୍ୟବହାରରେ ଆସିଲେ । ସତ କହିଲେ ଗାନ୍ଧୀ ସତ୍ୟାଗ୍ରହର ଭିତ୍ତି ପଡ଼ିଥିଲା ଦକ୍ଷିଣ ଆଫ୍ରିକା ଭୂମିରେ । ଏହି ଦୃଷ୍ଟିରୁ ଦକ୍ଷିଣ ଆଫ୍ରିକାର ଆନ୍ଦୋଳନକୁ ମଧ୍ୟ ଭାରତର ଜାତୀୟତା ଆନ୍ଦୋଳନ ସହ ଯୋଡ଼ି ଦେଖିବାର ଆବଶ୍ୟକତା ରହିଛି ।

ଏତେ ସବୁ ଆନ୍ଦୋଳନ ଭିତରେ ଯେକୌଣସି ଗୋଟାଏ ଆନ୍ଦୋଳନକୁ ବି ଯଦି ବିଶ୍ଳେଷଣ କରାଯାଏ, ତେବେ ଅନ୍ୟ ସବୁ ଆନ୍ଦୋଳନର ମଧ୍ୟ ଖିଅ ଖୋଲିଯାଏ, ବୁଝିବା ସହଜ ହୋଇଯାଏ । ଅନ୍ୟ ଅର୍ଥରେ କହିଲେ, ସବୁ ସଂଗ୍ରାମ ମଧ୍ୟରେ ଆପୋଷ ସୂତ୍ରଟିଏ ରହିବା ହେଲା ବୋଧହୁଏ ଭାରତର ଜାତୀୟତା 'ମହାସଂଗ୍ରାମ'ର ବଡ଼ ବୈଶିଷ୍ଟ୍ୟ । ଆଜି ସ୍ୱାଧୀନତାର ଷାଠିଏ ବର୍ଷ ପରେ ବି ସେହି ବୈଶିଷ୍ଟ୍ୟକୁ ବୁଝିବାର ପ୍ରାସଙ୍ଗିକତା ରହିଛି । ଏକରୁ ନଅ ଯାଏଁ ଅଙ୍କ ଶିଖି, ଶୂନ୍ୟର ବ୍ୟବହାର ଜାଣିଗଲେ ଆମେ ଯେମିତି ସବୁ ସଂଖ୍ୟା ଲେଖିବା ଶିଖି ଯାଆନ୍ତି, ଠିକ୍ ସେହିଭଳି କୌଣସି ଗୋଟାଏ ଆନ୍ଦୋଳନକୁ ଖିଅ କରି ସମଗ୍ର ଆନ୍ଦୋଳନର ଚରିତ୍ର ଓ ଉଦ୍ଦେଶ୍ୟ ଜାଣିଲେ, ପ୍ରୟାସ ଅଯଥା ସମୟସାପେକ୍ଷ ହୁଏ ନାହିଁ ।

ଉଦାହରଣ ପାଇଁ ଆମେ ନେବା ବିହାରର ଚମ୍ପାରନ ଜିଲ୍ଲାରେ ସଂଗଠିତ ହୋଇଥିବା ନୀଳଚାଷୀ ଆନ୍ଦୋଳନକୁ । ୧୯୧୫ ମସିହାରେ ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଭାରତକୁ ଫେରିଲେ । ନିଜ ରାଜନୈତିକ ଗୁରୁ ଗୋପାଳକୃଷ୍ଣ ଗୋଖଲଙ୍କ ପରାମର୍ଶରେ ଦେଶର କୋଣ ଅନୁକୋଣକୁ ଗସ୍ତ କରି ଲୋକଙ୍କର ସାମାଜିକ ବାସ୍ତବିକତାକୁ ନିଜ ଆଖିରେ ଦେଖିଲେ । କାରଣ ସ୍ୱାଧୀନତା ଆନ୍ଦୋଳନ ଯଦି ଉପନିବେଶବାଦ ବିରୋଧୀ ଏକ ଯୁଦ୍ଧ ଏବଂ ଗାନ୍ଧି ହେବେ ତାର ସେନାପତି, ତେବେ ସାଧାରଣ

ଜନତା ଅର୍ଥାତ୍ ସୈନ୍ୟଗଣଙ୍କ ମନୋସ୍ଥିତି ଜାଣିବା ଅତି ଜରୁରୀ । ସେହି ଗସ୍ତ ବେଳେ ସେ ଶୁଣିଲେ ନୀଳଚାଷୀଙ୍କ ଉପରେ ଚାଲିଥିବା ଗୋରା ଜମିଦାରଙ୍କ ଅତ୍ୟାଚାର ଏବଂ ଗସ୍ତ ପରେ ୧୯୧୭ ମସିହାରେ ଚମ୍ପାରନ ଯାଇ ଭାଗ ନେଲେ ନୀଳଚାଷୀଙ୍କର ଏକ ସ୍ଥାନୀୟ ଆନ୍ଦୋଳନରେ । ଏହି ସ୍ଥାନୀୟ ଆନ୍ଦୋଳନକୁ ପରବର୍ତ୍ତୀ ପର୍ଯ୍ୟାୟରେ ଆରମ୍ଭ ହୋଇଥିବା ତିନିଟି ଯାକ ପ୍ରମୁଖ ଗଣ ଆନ୍ଦୋଳନର (ଅସହଯୋଗ, ୧୯୨୦, ଆଇନ ଅମାନ୍ୟ, ୧୯୩୦, ଏବଂ ଭାରତ ଛାଡ଼, ୧୯୪୨) ପ୍ରସ୍ତୁତି ପର୍ବ-ରୂପେ ମଧ୍ୟ ଦେଖାଯାଇପାରେ ।

ନୀଳଚାଷୀ ଆନ୍ଦୋଳନର ଆଧାର ହେଲା ଯେ ଗୋରାମାନେ ଥିଲେ ସେଠିକାର ଜମିଦାର । ସେମାନେ ଚାଷୀଙ୍କୁ ବାଧ୍ୟ କରୁଥିଲେ ନୀଳ ଚାଷ କରିବାପାଇଁ, ଯଦିଓ ଚାଷ ଲାଭଜନକ ନଥିଲା । ଚାଷର କିସମ କାହିଁକି ଚାଷୀ ନୁହେଁ, ଜମିଦାର ସ୍ଥିର କରିବ, ଏହି ସମସ୍ୟାକୁ ନେଇ ସେଠି ଚାଷୀ ଆନ୍ଦୋଳନ ଚାଲିଥିଲା । ଗାନ୍ଧୀ ଆସି ତହିଁରେ କେବଳ ଭାଗ ନେଲେ, ଦାବିକୁ ଯୁକ୍ତିସିଦ୍ଧ ବୋଲି ଘୋଷଣା କଲେ । ଅର୍ଥାତ୍ ଚମ୍ପାରନ୍‌ରେ ଗାନ୍ଧି ଆନ୍ଦୋଳନକୁ ନିର୍ମାଣ କରିନାହାନ୍ତି, ବରଂ ନିର୍ମିତ ଆନ୍ଦୋଳନକୁ ଯାଇ ନେତୃତ୍ୱ ଦେଇଛନ୍ତି । ଏ ଯେଉଁ ଦୃଷ୍ଟିକୋଣ ତାହା ପରେ ବି ପରିବର୍ତ୍ତିତ ହୋଇନାହିଁ । ସମସ୍ୟାକୁ ନେଇ ଜନଅସନ୍ତୋଷ ଥିବ, ଲୋକଙ୍କ ମନରେ ଆନ୍ଦୋଳନରେ ଝାସ ଦେବାପାଇଁ ମାନସିକ ପ୍ରସ୍ତୁତି ଥିବ, ତେବେ ଯାଇ ନେତୃତ୍ୱର ଆବଶ୍ୟକତା ପଡ଼ିବ । କୁଶଳ ନେତୃତ୍ୱ ଆନ୍ଦୋଳନକୁ ବ୍ୟର୍ଥ ହେବାକୁ ଦେବନାହିଁ । ଅର୍ଥାତ୍ ଆନ୍ଦୋଳନକୁ ନେତା ତିଆରି କରେ ନାହିଁ । ତା ପାଇଁ ଲୋକଙ୍କର ଅନ୍ତଃଶକ୍ତି ରହିବା ଅତି ଆବଶ୍ୟକ । ପରବର୍ତ୍ତୀ ସମୟରେ ରାଓଲଟ ଆଇନ ବିରୁଦ୍ଧରେ ବା ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ବିରୁଦ୍ଧରେ ଜନ ଅସନ୍ତୋଷ ବଢ଼ିଲା । ଗାନ୍ଧୀ ଅସହଯୋଗର ଡାକରା ଦେଲେ । ଚୌରିଚୌରା ଘଟଣାକୁ ଆଳ କରି ସେ ୧୯୨୨ ମସିହାରେ 'ଅସହଯୋଗ'କୁ ପ୍ରତ୍ୟାହାର କଲେ; କାରଣ ସେତେବେଳକୁ ଆନ୍ଦୋଳନ ଶିଥିଳ ପଡ଼ି ସାରିଥିଲା । ପୁଣି ପରବର୍ତ୍ତୀ ପର୍ଯ୍ୟାୟ ପାଇଁ ପ୍ରସ୍ତୁତି ଚାଲିଲା, ରଚନାତ୍ମକ କାର୍ଯ୍ୟକ୍ରମ ଅର୍ଥାତ୍ ଖଦି ବୁଣା, ଅସ୍ପୃଶ୍ୟତା ନିବାରଣ ଓ ମଦ୍ୟ ନିଷେଧ ମାଧ୍ୟମରେ । ୧୯୨୮-୨୯ ମସିହା ବେଳକୁ ପୁଣି ଆନ୍ଦୋଳନ ପାଇଁ ଉତ୍ସାହ ଜାଗିଲା । ସାଇମନ କମିସନର ବିରୋଧ ମାଧ୍ୟମରେ ଏହା ପ୍ରତିଫଳିତ ହେଲା । ତେଣିକି କଂଗ୍ରେସ ଡାକ ଦେଲା 'ଆଇନ ଅମାନ୍ୟ' ପାଇଁ ଏବଂ ଗାନ୍ଧି ନେତୃତ୍ୱ ନେଲେ ଲବଣ ସତ୍ୟାଗ୍ରହର । ୧୯୨୦ ମସିହାରେ ସରକାର ପାଖରେ ଦାବି ଥିଲା 'ସ୍ୱରାଜ', ଯାହାକୁ ବ୍ରିଟିଶ ଅଧୀନରେ 'ଡୋମିନିଅନ୍' ମର୍ଯ୍ୟାଦା ବୋଲି କୁହାଯାଇପାରେ ।

ସ୍ୱରାଜ ମିଳିଲାନି । ମାତ୍ର ଦଶ ବର୍ଷ ପରେ କଂଗ୍ରେସର ଆଉ ଲକ୍ଷ୍ୟ ନଥିଲା ସ୍ୱରାଜ, ବରଂ ଲକ୍ଷ୍ୟ ହେଲା 'ପୂର୍ଣ୍ଣ ସ୍ୱରାଜ' । ସରକାରଠାରେ ଦାବି ଗୃହୀତ ହେବା ଅପେକ୍ଷା ସମସ୍ୟାକୁ ନେଇ ଲୋକଙ୍କ ଭିତରେ ଜାଗୃତି ସୃଷ୍ଟି ହେବା ଅଧିକ ଆବଶ୍ୟକ । ତେଣୁ ୧୯୩୦ରେ ସ୍ୱରାଜ ଦାବି କରି ସଂଗ୍ରାମ ଆଉ ପଛକୁ ଫେରିନି, ପୂର୍ଣ୍ଣ ସ୍ୱରାଜର ଲକ୍ଷ୍ୟ ନେଇ ଆଗକୁ ବଢ଼ିଛି ।

୧୯୪୨ ମସିହା ବେଳକୁ ଆନ୍ଦୋଳନ ପାଇଁ ଲୋକ ଏତେ ଆଗକୁ ବଢ଼ି ସାରିଥିଲେ ଯେ ଭାରତ ଛାଡ଼ ପାଇଁ ଡାକରା ଦେବା ବ୍ୟତୀତ କଂଗ୍ରେସ ପାଖରେ ଆଉ ବିକଳ୍ପ ନଥିଲା । ଅନ୍ୟଥା ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ବ୍ରିଟିଶ ସରକାର ଯେହେତୁ ମାନବତାର ଶତ୍ରୁ ଫାଶିବାଦୀ ଶକ୍ତି ବିରୁଦ୍ଧରେ ଲଢୁଥିଲା । ବିଶ୍ୱ-ରାଜନୀତିର ପରିପ୍ରେକ୍ଷୀରେ କଂଗ୍ରେସ ନେତୃତ୍ୱ ଚାହୁଁ ନଥିଲା ସରକାରକୁ ଅଧିକ ହଇରାଣରେ ପକାଇବା ପାଇଁ । ପ୍ରଥମେ ଫାଶିବାଦର ଉନ୍ମୂଳନ ହେବା କଥା । ମାତ୍ର ଫାସିବାଦୀ ଜାପାନ ଯଦି ଭାରତକୁ ଆକ୍ରମଣ କରେ ଇଂରେଜ ବିରୋଧୀ ଜନତା କ୍ୱାଳେ ଜାପାନ ପକ୍ଷରେ ଯିବ ସେଇ ଚିନ୍ତାରେ ଆନ୍ଦୋଳନ ଡାକରା ଦେବାକୁ ପଡ଼ିଲା । 'ଭାରତ ଛାଡ଼' ଆନ୍ଦୋଳନର ଏକ ବଡ଼ ବିଶେଷତ୍ୱ ହେଲା ଯେ, ଗାନ୍ଧି, ନେହେରୁ ଇତ୍ୟାଦି ସବୁ ବଡ଼ ନେତା ଆରମ୍ଭରୁ ରହିଲେ ଜେଲରେ । ତଥାପି ଚାଲିଲା ଆନ୍ଦୋଳନ । ପୂର୍ବର ସବୁ ଆନ୍ଦୋଳନ ଅପେକ୍ଷା, ନେତୃତ୍ୱ ନ ଥିବା ସତ୍ତ୍ୱେ, ଏହା ଥିଲା ଅଧିକ ତୀବ୍ର, ଅଧିକ ବ୍ୟାପକ, ଅଧିକ ଗଣାଭିମୁଖୀ । ଏଥର ବ୍ରିଟିଶ ସରକାର ପାଖରେ କିଛି ଦାବି ରଖି ନଥିଲେ ଜନଗଣ, ବରଂ ଆଦେଶ ଦେଇଥିଲେ ଭାରତ ଛାଡ଼ି ଚାଲିଯିବାକୁ । ଅସହଯୋଗବେଳେ ଆନ୍ଦୋଳନରେ ଭାଗ ନେବା ମାନେ ଚାକିରି, ସ୍କୁଲ, କଲେଜ, କୋର୍ଟ କଚେରି, ବିଦେଶୀ ଲୁଗା ଆଦି ବର୍ଜନ କରିବା । 'ଆଇନ ଅମାନ୍ୟ' ବେଳେ ଭାଗ ନେବାପାଇଁ ପରିମାପକ ବଦଳିଲା । ନୂଆ ପରିମାପକ ହେଲା ଆଇନଅମାନ୍ୟ କରିବା, ପିକେଟିଂ କରିବା, ଜେଲ ଯିବା, ଲାଠିମାଡ଼ ଖାଇବା । 'ଭାରତଛାଡ଼' ସମୟରେ ଏହି ପରିମାପକ ଆହୁରି କଠୋର ହେଲା– ନୂଆ ପରିମାପକ ହେଲା 'ଅଣ୍ଡରଗ୍ରାଉଣ୍ଡ' ରହିବା, ପାଚେରୀ ଡାଙ୍ଗି ଜେଲରୁ ବାହାରି ଆସିବା, ଗିରଫଦାରୀ ନ ଦେଇ ଆନ୍ଦୋଳନ କାମ କରିବା । ଓଡ଼ିଶାର ସୁରେନ୍ଦ୍ରନାଥ ଦ୍ୱିବେଦୀ 'ଅଣ୍ଡରଗ୍ରାଉଣ୍ଡ' ରହି ଓଡ଼ିଶାର ନେତା ହେଲେ, ଜୟପ୍ରକାଶ ନାରାୟଣ ହଜାରିବାଗ ଜେଲ ପାଚେରି ଡେଇଁ ଏହି ସମୟରେ ବଡ଼ ନେତା ହେବାର ଖ୍ୟାତି ପାଇଲେ । ଆନ୍ଦୋଳନରେ ଭାଗ ନେବାର ପୁରୁଣା ପରିମାପକ ରହିଲା, ସାଙ୍ଗରେ ନୂଆ ଯୋଡ଼ା ହେଲା । ପୁଣି, ଯେଉଁଭଳି ଭାବେ ନୂଆଁ ନୂଆଁ ଗୋଷ୍ଠୀ ଆସି ଆନ୍ଦୋଳନରେ ସାମିଲ ହେଲେ, ତା' 'ବି ଦେଖିବାର କଥା । ଅସହଯୋଗରେ

ମିଶିଲେ ବେଶି ଭାଗ ଛାତ୍ର ଓ ଯୁବକ । ସିଏ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ହୁଅନ୍ତୁ କି ଲକ୍ଷ୍ମୀନାରାୟଣ ମିଶ୍ର, ବୀର କିଶୋର ଦାସ ହୁଅନ୍ତୁ । 'ଆଇନ ଅମାନ୍ୟ' ବେଳେ ନୂଆଁ କରି ମିଶିଲେ ମାଳତୀ ଦେବୀଙ୍କ ପରି ମହିଳାମାନେ । 'ଭାରତ ଛାଡ଼' ବେଳେ ମିଶିବା ଲୋକଙ୍କ ସମୂହ ଆହୁରି ବ୍ୟାପକ ହେଲା । ଆଦିବାସୀ, କୃଷକ, ଶ୍ରମିକ, ସାଧାରଣ ଲୋକ ଆନ୍ଦୋଳନର ମୁଖ୍ୟ ପୁରୋଧା ହେଲେ । ଓଡ଼ିଶାର କୋରାପୁଟ, ତାଳଚେର ଭଳି ନୂଆ ନୂଆ ଜାଗାରେ ଆନ୍ଦୋଳନ ଏତେ ତୀବ୍ର ହେଲା ଯେ ତାଳଚେରରେ ସରକାରକୁ ଉପରୁ ବୋମା ପକାଇବାକୁ ପଡ଼ିଲା, କୋରାପୁଟରେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଗଲା ।

ଆନ୍ଦୋଳନର ଏ ଯେଉଁ ଉଗ୍ରତା, ତୀବ୍ରତା, ବ୍ୟାପକତା ତାକୁ ଦେଖିଲେ ମନେହୁଏ ଯେ ଲୋକଙ୍କ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ବିନା ତାହା କେବେ ସମ୍ଭବ ହୋଇନଥାନ୍ତା । କାହାରି ଉପରେ ବାଧ୍ୟବାଧକତା ନାହିଁ, ଯିଏ ଯେତେ ପାରୁଛି ଏହି 'ମହାଯଜ୍ଞ'ରେ ଆସି ଯୋଗଦାନ କରୁ । ନେତୃତ୍ୱ କେବଳ ସେହି ଗଣ ଆଗ୍ରହକୁ ସର୍ବଭାରତୀୟ ସୂତ୍ରରେ ସଂଯୋଜନା କରିଛି, ସୂତ୍ରଧରର କାମ କରିଛି । ମହାତ୍ମା ଗାନ୍ଧୀ ଯାଇନଥିଲେ, ଚମ୍ପାରନର ନୀଳଚାଷୀ ଆନ୍ଦୋଳନକୁ ମହତ୍ତ୍ୱ ମିଳିନଥାନ୍ତା । ସାଙ୍ଗରେ ଏକଥା ମଧ୍ୟ ସତ, ଯେ, ସ୍ଥାନୀୟ ସମସ୍ୟାଟି ବିରୁଦ୍ଧରେ ଲଢ଼ିବା ପାଇଁ ଲୋକ ଆଗ୍ରହ ନଥିଲେ, ମହାତ୍ମା ଗାନ୍ଧି କଦାପି ଚମ୍ପାରନ ଯାଇନଥାନ୍ତେ । ଚମ୍ପାରନ ଆନ୍ଦୋଳନର ବଡ଼ ସଫଳତା ହେଲା ଯେ, ଚାଷୀକୁ ତେଣିକି ନୀଳଚାଷ କରିବାକୁ ବାଧ୍ୟ କରାଗଲା ନାହିଁ । ଗୋରା ଜମିଦାର ଚାଷୀଠାରୁ ନେଇଥିବା ଟଙ୍କାର କିଛି ପରିମାଣ ମଧ୍ୟ ଫେରସ୍ତ କଲେ । ବୋଧହୁଏ ସେହି ସଫଳତା ବିନା ଭବିଷ୍ୟତରେ ନୂଆ ଏବଂ ଅଧିକ ବ୍ୟାପକ ଆନ୍ଦୋଳନର ପ୍ରସ୍ତୁତି ସହଜ ହୋଇନଥାନ୍ତା । ଗୋଟାଏ ଆନ୍ଦୋଳନ ଏବଂ ତାର ଆପେକ୍ଷିକ ସଫଳତା ପରବର୍ତ୍ତୀ ଆନ୍ଦୋଳନକୁ ପାହାଚ ଭଳି ସାହାଯ୍ୟ କରିଛି ଏବଂ ସବୁ ଆନ୍ଦୋଳନ ମିଶି ଶିଡ଼ି ପରି ସ୍ୱାଧୀନତାର ଆକାଶ କୁସୁମକୁ ହାତପାହାନ୍ତା କରିଛନ୍ତି । ତେଣୁ ସ୍ୱାଧୀନତା ମିଳିବାରେ 'ଭାରତଛାଡ଼' ପରି ନୀଳଚାଷୀ ଆନ୍ଦୋଳନର ଯେତିକି ଗୁରୁତ୍ୱ, ମହାତ୍ମାଗାନ୍ଧିଙ୍କ ପରି ଅନ୍ୟ ସଂଗ୍ରାମୀଙ୍କ ମଧ୍ୟ ସେତିକି ଯୋଗଦାନ- ଏହା କେବଳ ଅନୁମାନ କରିବା କଥା । ସ୍ୱାଧୀନତା ଆନ୍ଦୋଳନ ସମୟରେ ଆଧୁନିକ ଭାରତର ଭିତ୍ତି ପଡ଼ିଛି ଏବଂ ସେହି ଭିତ୍ତି ପଡ଼ିବା ବେଳେ ଦେଶର ଅଗଣିତ ଜନଗଣଙ୍କ ତ୍ୟାଗ, ବଳିଦାନ, ଯୋଗଦାନ ରହିଛି—ଏ ଯେଉଁ ଦୃଷ୍ଟିକୋଣ ତାହା ବୋଧହୁଏ ତର୍କସଂଗତ ଏବଂ ସଠିକ୍ ମଧ୍ୟ ।

❑❑

# ଭଗତ ସିଂଙ୍କୁ ଚର୍ଚ୍ଚାରେ ରଖି

ଭଗତ ସିଂଙ୍କର ଜନ୍ମ ୧୯୦୭ ମସିହାରେ । ଆଜି ଯଦି ସେ ଜୀବିତ ଥାଆନ୍ତେ, ତାଙ୍କୁ ଶହେ ବର୍ଷ ପୂରିଥାନ୍ତା । ଶତାୟୁ ହୋଇ ଅନେକ ଲୋକ ବଞ୍ଚି ରହିଛନ୍ତି । ତେଣୁ ମାର୍ଚ୍ଚ ୨୩ ତାରିଖ ୧୯୩୧ ମସିହାରେ ତାଙ୍କୁ ଫାଶୀ ହୋଇନଥିଲେ, ସେ ବି ଆମ ଗହଣରେ ଆଜି ରହିଥାନ୍ତେ ବୋଲି କଳ୍ପନା କରିବା ଅଯଥାର୍ଥ ନୁହେଁ; କିନ୍ତୁ ଯେଉଁ ସାମାଜିକ ସମ୍ମାନ ମାତ୍ର ୨୩ ବର୍ଷ ବୟସରେ ମୃତ୍ୟୁ ଲାଭ କରି ସେ ପାଇଛନ୍ତି, ସେହି ସମ୍ମାନ ଆଜି ଜୀବିତ ରହିଥିଲେ ତାଙ୍କୁ ମିଳିଥାନ୍ତା ବୋଲି ଜୋର୍ ଦେଇ କହିହେବ ନାହିଁ । ଅର୍ଥାତ୍ ତାଙ୍କର ବଳିଦାନ ହିଁ ତାଙ୍କୁ ମହାନ୍ ସମ୍ମାନର ଅଧିକାରୀ କରିଛି ।

ନିଜ ଅଞ୍ଚଳ ବାହାରେ ସର୍ବଭାରତୀୟ ସ୍ତରରେ ଯେଉଁ କେତେଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ପରିଚିତି ମିଳେ, ସେମାନଙ୍କ ମଧ୍ୟରେ ଭଗତ ସିଂହ ଅନ୍ୟତମ । ସେହି ଦୃଷ୍ଟିରୁ ମହାତ୍ମାଗାନ୍ଧି, ସୁଭାଷ ବୋଷ ଏବଂ ଭୀମରାଓ ଆମ୍ବେଦକର ପରି ଅଳ୍ପ କେତେଜଣଙ୍କୁ ବାଦ୍ ଦେଲେ ବୋଧହୁଏ ଭଗତ ସିଂ ହେବ ଗୋଟାଏ ନାଁ ଯେଉଁ ନାଁରେ ଲୌକିକ ସ୍ତରରେ ଗାଁ ଗାଁରେ କ୍ଲବ୍, ଯୁବକ ସଂଘ, ପାଠାଗାର, ସ୍କୁଲ ଆଦିକୁ ନାମିତ କରାଯାଏ । ଭଗତ ସିଂଙ୍କ ମୃତ୍ୟୁର ପ୍ରାୟ ୭୫ ବର୍ଷ ପରେ ବି ଆଜି ତାଙ୍କ ନାଁରେ ଏକାଧିକ ସିନେମା ତିଆରି ହେଉଛି । ସରକାରୀ ପ୍ରୋତ୍ସାହନ ନ ଥିଲେ ବି ଲୋକେ ନିଜ ନିଜ ସ୍ତରରେ ଏହି ଅମର ସହିଦଙ୍କୁ ସ୍ମୃତିରେ ରଖିବାକୁ ପ୍ରୟାସ କରନ୍ତି, ପ୍ରେରଣାର ଉତ୍ସ ବୋଲି ମନେ କରନ୍ତି ।

କିଛି ମାସ ତଳେ ଶ୍ରେଣୀରେ ଛାତ୍ରମାନଙ୍କୁ କହିଲି ପ୍ରତ୍ୟେକେ ଦଶ ଦଶ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ତାଲିକା ପ୍ରସ୍ତୁତ କର । ଦେଖାଗଲା, ପ୍ରାୟ ପ୍ରତ୍ୟେକଙ୍କର ତାଲିକାରେ ଭଗତ ସିଂଙ୍କ ନାଁ ଅନ୍ତର୍ଭୁକ୍ତ ଅଛି; କିନ୍ତୁ ତା'ଠାରୁ ବଡ଼କଥା ଏୟା ଯେ, ତାଲିକାର ପ୍ରଥମ ତିନି ଚାରିଟି ନାଁ ମଧ୍ୟରେ ଭଗତ ସିଂ ସ୍ଥାନ ପାଇଥିଲେ । ମାତ୍ର ୨୩ ବର୍ଷ ବୟସରେ ଯେହେତୁ ସେ ମୃତ୍ୟୁବରଣ କରିଥିଲେ, ସେହେତୁ ଅତି ବେଶି

ହେଲେ ଦ୍ଦଶ ବର୍ଷରୁ ଅଧିକ କାଳ ସେ (ଭଗତ ସିଂ) ସାମାଜିକ ଏବଂ ରାଜନୈତିକ ଜୀବନରେ ରହି ନ ଥିବେ। ପୁଣି, ଯେହେତୁ ସେ ଅସ୍ତ୍ରଧାରୀ ବିପ୍ଳବୀ, ସବୁ ଯାକ ସମୟ ସେ ଗୋପନରେ ରହିଛନ୍ତି, ନୋହିଲେ ଜେଲ୍‌ରେ ବ୍ୟତିତ କରିଛନ୍ତି। ୧୯୨୯ ମସିହା ଏପ୍ରିଲ୍ ୮ ତାରିଖରେ କେନ୍ଦ୍ର ବିଧାୟିକା ସଭାରେ (ଆଜିର ଲୋକସଭା) ବୋମା ନିକ୍ଷେପ କଲା ପରେ ବଟୁକେଶ୍ୱର ଦତ୍ତଙ୍କ ସାଙ୍ଗରେ ସେ ଯେଉଁ ଗିରଫ ହେଲେ, ତା'ପରେ ମୃତ୍ୟୁ ପର୍ଯ୍ୟନ୍ତ ଆଉ ଲୋକଲୋଚନକୁ ଆସି ନାହାନ୍ତି। ଅର୍ଥାତ୍ ନିଜ ଜୀବଦ୍ଦଶାରେ ନା ସେ ସାଧାରଣ ସଭାରେ ଭାଷଣ ଦେଇଛନ୍ତି, ନା ପଦଯାତ୍ରା, ଶୋଭାଯାତ୍ରାର ନେତୃତ୍ୱ ନେଇଛନ୍ତି। ତା' ସତ୍ତ୍ୱେ ତାଙ୍କୁ ଆଜିର ପିଢ଼ି ବି ସ୍ମୃତିରେ ରଖେ, ସମ୍ମାନ ଦିଏ। ପଞ୍ଜାବର ଯୁବକ ସେ, ଅଥଚ ସୁଦୂର ଓଡ଼ିଶାର ଇତିହାସ ଶ୍ରେଣୀ ଗୃହରେ ପିଲାଏ ତାଙ୍କୁ ମନେ ରଖନ୍ତି। ଏ କିଛି ସାମାନ୍ୟ ଉପଲବ୍ଧି ନୁହେଁ।

ଏହି ସମ୍ମାନ କେବଳ ଆଜିର କଥା ନୁହେଁ। ଯଦି ୧୯୨୯-୩୦ର ସମ୍ବାଦପତ୍ରକୁ ଦେଖାଯାଏ, ସେତେବେଳେ ମଧ୍ୟ ଭଗତ ସିଂ ଏବଂ ତାଙ୍କ ସହଯୋଗୀମାନଙ୍କ ବିଚାର, ଜେଲ୍‌ଖାନାରେ ଅନଶନ, ଜଣେ ସହଯୋଗୀ ଯତୀନ୍ ଦାସଙ୍କର ଅନଶନ ଯୋଗୁଁ ୬୩ ଦିନ ପରେ ମୃତ୍ୟୁ ଏବଂ ଭଗତ ସିଂ, ସୁଖଦେବ, ରାଜଗୁରୁଙ୍କର ଫାଶୀଦଣ୍ଡକୁ ପ୍ରଭୂତ ପ୍ରାଥମିକତା ଦିଆଯାଇଥିଲା। ଓଡ଼ିଶାରୁ ପ୍ରକାଶିତ ହେଉଥିବା 'ସମାଜ', 'ଆଶା' ଏବଂ 'ପ୍ରଜାତନ୍ତ୍ର' ଆଦି ପତ୍ରିକାର ସମ୍ପାଦକମାନେ ସଶସ୍ତ୍ର ସଂଗ୍ରାମର ପକ୍ଷଧର ନଥିଲେ। 'ଆଶା'ର ସମ୍ପାଦକ ଶଶିଭୂଷଣ ରଥ ତ ନିଜକୁ 'ସହଯୋଗୀ' କହି ଅ-ସହଯୋଗ ଆନ୍ଦୋଳନର ମଧ୍ୟ ସିଧା ସମର୍ଥନ କରୁନଥିଲେ। ତା' ସତ୍ତ୍ୱେ ଭଗତ ସିଂ ଏବଂ ତାଙ୍କ ଯୁବ ସହଯୋଗୀମାନଙ୍କର ଦେଶ ପ୍ରେମକୁ ଯେଉଁ ଭାଷାରେ ସେ ପ୍ରଶଂସା କରିଛନ୍ତି, ତାହା କହିଲେ ନ ସରେ।

ଭଗତ ସିଂଙ୍କର ଏ ଯେଉଁ ସାମାଜିକ ପରିଚିତି, ତା' ପଛରେ କାରଣ ସବୁ କ'ଣ ହୋଇପାରେ ? ଗୋଟାଏ ତ ହେଲା ଯେ ତାଙ୍କର ବିପ୍ଳବାତ୍ମକ କାର୍ଯ୍ୟ। ଦେଶର ଦୁର୍ଗତି ଦୂର କରିବା ପାଇଁ ଶତ୍ରୁପକ୍ଷ ଇଂରେଜ ସରକାରଠାରେ ହାରିଗୁହାରି ହେବା ଅପେକ୍ଷା ଶତ୍ରୁ ବଳକୁ ନିପାତ କରିବା ଏକ ଅତି ଦୁଃସାହସିକ କାର୍ଯ୍ୟପନ୍ଥା। ତେଣୁ ଏଭଳି କାର୍ଯ୍ୟପନ୍ଥାର ନାୟକ ଭାବରେ ଭଗତ ସିଂ ଜନଗଣଙ୍କର ମନ କିଣି ନେବା ସ୍ୱାଭାବିକ କଥା। ସେହି ଦୁଃସାହସିକ କାର୍ଯ୍ୟ କରିବା ଯୋଗୁଁ ଭଗତ ସିଂଙ୍କୁ ଯେଉଁ ବଳିଦାନ ଦେବାକୁ ପଡ଼ିଛି, ତାକୁ ଲୋକ ଭୁଲି ପାରିନାହାନ୍ତି।

ଭଗତ ସିଂଙ୍କ ସାଙ୍ଗରେ ଉତ୍ତର ଭାରତରେ ଆହୁରି ଅନେକ ବିପ୍ଳବୀ ଥିଲେ । ଚନ୍ଦ୍ରଶେଖର ଆଜାଦ, ବଟୁକେଶ୍ୱର ଦତ୍ତ, ସୁଖଦେବ, ରାଜଗୁରୁ ଏବଂ ଯତୀନ ଦାସଙ୍କୁ ବାଦ୍ ଦେଲେ, ଆଉମାନଙ୍କର ନାଁ ବି ସହଜରେ ମନେପଡ଼େନା । ସେହି ଏକା ସମୟରେ ପ୍ରାୟ ବଙ୍ଗରେ ମାଷ୍ଟର ସୂର୍ଯ୍ୟସେନ୍ ଏବଂ ତାଙ୍କ ସହଯୋଗୀମାନେ ଚିଟାଗଙ୍ଗ (ଚଟ୍ଟଗ୍ରାମ)ରେ ଅସ୍ତ୍ରାଗାର ଲୁଣ୍ଠନ କରିଥିଲେ (୧୯୩୦ ମସିହା) । ବିଂଶ ଶତାବ୍ଦୀର ଆରମ୍ଭରେ ପ୍ରଫୁଲ୍ଲ ଚାକି ଏବଂ ଖୁଦିରାମ ବୋଷ୍ ଆଦି ମଧ୍ୟ ସଶସ୍ତ୍ର ସଂଗ୍ରାମ କରିଥିଲେ । ସେମାନଙ୍କ ଉପସ୍ଥିତି ସତ୍ତ୍ୱେ ଲୋକେ ଭଗତ ସିଂଙ୍କୁ ଅଧିକ ମନେ ପକାଇବା ପଛରେ ବୋଧହୁଏ ସ୍ୱାଧୀନତା ସଂଗ୍ରାମର ସେହି ବପ୍ଳବାତ୍ମକ ଗତିଧାରାକୁ ସ୍ମୃତିରେ ରଖିବାକୁ ପ୍ରୟାସ କରାଯାଏ । ଫଳରେ ମହାତ୍ମାଗାନ୍ଧି ଯେମିତି ସ୍ୱାଧୀନତା ସଂଗ୍ରାମର ପ୍ରତିନିଧି ରୂପେ ମନେ ପଡ଼ନ୍ତି, ଭଗତ ସିଂ ମଧ ସେମିତି ଲୋକଙ୍କ ନଜରରେ ବିପ୍ଳବାତ୍ମକ ଗତିଧାରାର ପ୍ରତିନିଧି ହୋଇଯା'ନ୍ତି ।

ମାତ୍ର ଭଗତ ସିଂଙ୍କୁ ସେହି ପ୍ରତିନିଧିତ୍ୱ ମିଳେ କେମିତି ? ଭଗତ ସିଂ ଖୁବ୍ ଅଳ୍ପ କାଳର ସାମାଜିକ ଜୀବନ ମଧ୍ୟରେ ସୁଦ୍ଧା ବୈଚାରିକ ସ୍ତରରେ ସ୍ଥାଣୁ ହୋଇ ରହିନାହାନ୍ତି । ଆରମ୍ଭରେ ସେ ବ୍ରିଟିଶ ଶାସନର ବିକଳ୍ପ ରୂପେ ଗାନ୍ଧୀବାଦୀ ଜାତୀୟତାବାଦ ପ୍ରତି ଆକୃଷ୍ଟ ହୋଇଛନ୍ତି । ସେହି ମର୍ମରେ କୈଶୋରାବସ୍ଥାରେ ଗାନ୍ଧୀ ନେତୃତ୍ୱରେ ପରିଚାଳିତ ଅସହଯୋଗ ଆନ୍ଦୋଳନରେ (୧୯୨୧-୨୨) ଭାଗ ନେଇଛନ୍ତି । 'ଅସହଯୋଗ' ସତ୍ତ୍ୱେ 'ସ୍ୱରାଜ୍ୟ' ମିଳିନି, ଚୌରିଚୌରା ଘଟଣା ପରେ କାହାରି ସହିତ ବିନା ପରାମର୍ଶ କରି ଗାନ୍ଧୀ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇଛନ୍ତି, ୧୯୨୨ ମସିହା ପରେ କଂଗ୍ରେସ ଦଳ ଭିତରେ ଅନ୍ତର୍ବିବାଦ ବଢ଼ିଛି, ପୁରୁଖା ନେତୃବୃନ୍ଦଙ୍କୁ ନେଇ ସ୍ୱରାଜ ଦଳ ଓ ଗାନ୍ଧୀ ଗୋଷ୍ଠୀ, ପରିବର୍ତ୍ତନକାମୀ ଓ ପରିବର୍ତ୍ତନ ବିରୋଧୀ ଭଳି ଦୁଇଟି ଗୋଷ୍ଠୀରେ କଂଗ୍ରେସ ବିଭାଜିତ ହୋଇଛି । କଂଗ୍ରେସ ଜାତୀୟତାବାଦର ଏ ଯେଉଁ ତୀବ୍ର ଅନୁଭୂତି, ତାହା ଭଗତ ସିଂ ଭଳି ଯୁବକମାନଙ୍କୁ କଂଗ୍ରେସ ପ୍ରତି ବୀତସ୍ପୃହ କରିଛି । ତେଣିକି ଭଗତ ସିଂ ସାଜିଛନ୍ତି ବିପ୍ଳବୀ । ଚନ୍ଦ୍ରଶେଖର ଆଜାଦ୍ ଆଦିଙ୍କ ସାଙ୍ଗରେ ମିଶି ୧୯୨୪ ମସିହାରେ କାନପୁରରେ ଗଢ଼ିଛନ୍ତି 'ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆର୍ମି' । ହେଲେ ଏଥିରେ ମଧ୍ୟ ସେ ସନ୍ତୁଷ୍ଟ ରହି ନାହାନ୍ତି । ବିପ୍ଳବ (ରାଷ୍ଟ୍ରଭଳି) କୌଣସି ଏକ ଭୌଗୋଳିକ ପରିସୀମା କିମ୍ବା କୌଣସି ବର୍ଗର ଗଣ୍ଡି ଭିତରେ ଆବଦ୍ଧ ରହିବ ନାହିଁ । ତାର ଉଦ୍ଦେଶ୍ୟ ହେବ

ଶ୍ରେଣୀହୀନ, ଶୋଷଣ ବିମୁକ୍ତ ସମାଜବାଦ; ଚୌହଦୀ ତାର ବିଶ୍ୱ ହେବ, ରାଷ୍ଟ୍ର ନୁହେଁ । ଫଳରେ ୧୯୨୮ ମସିହାରେ ଦିଲ୍ଲୀରେ ବସି ନିଜ ଦଳକୁ ସେ ନୂଆ ନାଁ ଦେଇଛନ୍ତି– 'ହିନ୍ଦୁସ୍ଥାନ ସୋସିଆଲିଷ୍ଟ ରିପବ୍ଲିକାନ୍ ଆର୍ମି' । ପୁଣି, ୧୯୨୯ ମସିହାରେ ଗିରଫ ହେବା ପୂର୍ବରୁ ପ୍ରତୀକାତ୍ମକ ହିଂସାର ପନ୍ଥାକୁ ପରିହାର କରି ମାର୍କ୍ସବାଦୀ ଧାରାରେ ଗଣଆନ୍ଦୋଳନ ଉପରେ ଜୋର୍ ଦେଇଛନ୍ତି । ଅନ୍ୟଥା ଆସେମ୍ବ୍ଲି ହଲ୍‌ରେ ବୋମା ଫିଙ୍ଗି ଗିରଫ ହେବା ଯାଏ ସେ ଅପେକ୍ଷା କରି ନଥାନ୍ତେ ବା ଅତି ଅଣ-ମାରାତ୍ମକ ବୋମା ଫିଙ୍ଗି ନଥାନ୍ତେ । ବୋମା ଫିଙ୍ଗି ସାରି ଅନ୍ତତଃ ପଳାୟନ କରିବାକୁ ପ୍ରୟାସ କରିଥାନ୍ତେ । ତାଙ୍କ ନିଜ ଭାଷାରେ, ବଧିରମାନଙ୍କୁ ନିଜ ପ୍ରତିବାଦର ସ୍ୱର ଶୁଣେଇବା ପାଇଁ ସେ ବୋମା ଫିଙ୍ଗିଥିଲେ । ଭଗତ ସିଂଙ୍କ ଭିତରେ·ଏ ଯେଉଁ ବୈଚାରିକ କ୍ରମ ପରିବର୍ତ୍ତନ, ତା' ପଛରେ ପଦପଦବୀର ଲାଳସା ବା ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟର କେବେ କାରଣ ନଥିଲା । ଅହରହ ସେ ବାସ୍ତବିକତାକୁ ଦେଖୁଥିଲେ, ତା' ସାଙ୍ଗରେ ଓତପ୍ରୋତ ଭାବେ ସମାହିତ ହୋଇ ଏକ ବିକଳ୍ପ ସମାଜର କଳ୍ପନା କରୁଥିଲେ । ଫଳରେ ବୈଚାରିକ ସ୍ତରରେ ସ୍ଥାଣୁ ହୋଇ ସେ ରହିନାହାନ୍ତି । ଫାଶୀ ଦଣ୍ଡ ଭୋଗ କରିବାର ମାତ୍ର ଦେଢ଼ ମାସ ପୂର୍ବେ (ଫେବୃୟାରୀ ୨, ୧୯୩୧) ସେ ଏକ ପତ୍ରରେ ଲେଖିଛନ୍ତି– 'ମୁଁ ଦୃଢ଼ତାର ସହିତ କହିବାକୁ ଚାହେଁ ଯେ, ମୁଁ କୌଣସି ସନ୍ତ୍ରାସବାଦୀ ନୁହେଁ, କିମ୍ବା ଅତୀତରେ ମଧ୍ୟ ନଥିଲି, ଯଦିଓ ମୋର ବିପ୍ଳବୀ ଜୀବନର ପ୍ରାରମ୍ଭିକ ସମୟରେ କିଛିଟା ସେଭଳିଆ କାର୍ଯ୍ୟ କରିଛି । ମୁଁ ଦୃଢ଼ ନିଶ୍ଚିତ ଯେ ସେହି ଧରଣର ପନ୍ଥା (ସନ୍ତ୍ରାସବାଦୀ) ଅବଲମ୍ବନ କରି ଆମର କିଛି ଲାଭ ହେବ ନାହିଁ ।'

ଭଗତ ସିଂଙ୍କର ଆଉ ଏକ ବିଶେଷତ୍ୱ ହେଲା ଯେ ସେ ନିଜ ବିଚାର ଓ କାମ ମଧ୍ୟରେ କୌଣସି ପାର୍ଥକ୍ୟ ରଖିଯାଇ ନାହାନ୍ତି । ବୈଚାରିକ ଆଧାରରେ ସେ ଥିଲେ ଦଳର ଅନ୍ୟତମ ତୁଙ୍ଗ ନେତା । ତଥାପି 'ସଣ୍ଡର୍ସ୍' ହତ୍ୟାକାଣ୍ଡରେ ପ୍ରମୁଖ ଭୂମିକା ସେ ନିଜେ ନେଲେ । ଆସେମ୍ବ୍ଲି ବୋମା ଫିଙ୍ଗାରେ ବି ଆଗରେ ରହିଲେ । ଯେଉଁ ବିଚାରର ସେ ଜନ୍ମଦାତା, ତାକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ବି ତାଙ୍କର । ତହିଁରେ ଜୀବନ ପ୍ରତି ବିପଦ ଥିବାର ଆଶଙ୍କା ତାଙ୍କୁ କେବେ ଦାୟିତ୍ୱ ନେବାରୁ ବିରତ କରିନାହିଁ । ବିଚାର ସାଙ୍ଗରେ ପୂର୍ଣ୍ଣ ପ୍ରତିବଦ୍ଧତା ବିନା କେବେ ଏହା ସମ୍ଭବ ନୁହେଁ । ସେହି ଦୃଷ୍ଟିରୁ, ବିଚାର ଓ କର୍ମର ସମନ୍ୱୟ ଭାବରେ ଯେଉଁ ବିପ୍ଳବୀର ଚିତ୍ରକଳ୍ପ ମନରେ ତିଆରି ହୁଏ, ତାର ପୂର୍ଣ୍ଣ ପ୍ରତିରୂପ ଭଗତ ସିଂଠାରେ ଦେଖିବାକୁ

ମିଳେ । 'ବିଚାର'ରେ ନିବିଷ୍ଟ ହେବା ଆଳରେ ସେ ସାଧାରଣ କର୍ମୀଙ୍କୁ 'କଷ୍ଟପ୍ରଦ' ଦାୟିତ୍ୱ ଦେଇନାହାନ୍ତି । ସେ କାମ ସବୁ ନିଜେ କରିଛନ୍ତି । ଅର୍ଥାତ୍ ତାଙ୍କ ବିଚାର ତାଙ୍କ କାମଠାରୁ ପୃଥକ ନୁହେଁ ।

ନିଜ ସ୍ୱାର୍ଥ ଦୃଷ୍ଟିରୁ ଅନେକ ଗୋଷ୍ଠୀ ଆଜି ଭଗତ ସିଂକୁ ଘାପଣେଇବାକୁ ଚାହାନ୍ତି । ପଞ୍ଜାବୀ ଆଞ୍ଚଳିକତାବାଦୀ, ଶିଖ୍ ରଢ଼ିବାଦୀ, ହିନ୍ଦୁ ସମ୍ପ୍ରଦାୟବାଦରେ ଓତପ୍ରୋତ ତଥାକଥିତ ଜାତୀୟତାବାଦୀ ଏବଂ ରଢ଼ିବାଦୀ ମାର୍କ୍ସବାଦୀମାନେ ତଥା କମ୍ୟୁନିଷ୍ଟ ମାନେ; ମାତ୍ର ଏ ସବୁଥିରୁ ଊର୍ଦ୍ଧ୍ୱରେ ରହିବା ଥିଲା ଭଗତ ସିଂଙ୍କର ଆଉ ଏକ ବିଶେଷତ୍ୱ । ତାଙ୍କୁ କୌଣସି ପ୍ରାଦେଶିକତା ଭିତରେ ଦେଖି ହେବନି, କୌଣସି ରଢ଼ିବାଦୀ ଧର୍ମର ସେ ଭକ୍ତ ନଥିଲେ । ନିଜକୁ ସର୍ବଦା ନାସ୍ତିକ ବୋଲି ସେ ପରିଚୟ ଦେଉଥିଲେ । ତାଙ୍କ ବିଚାରରେ ଯେତେ ଧର୍ମନିରପେକ୍ଷତା ଥିଲା, ତତୋଧିକ ମାତ୍ରାରେ ବିଶ୍ୱଭ୍ରାତୃତ୍ୱର କଥା ରହିଥିଲା । ବିଚାରାଳୟର କାଠଗଡ଼ାରେ ସେ ଓ ତାଙ୍କର ସାଥୀମାନେ 'ଇନ୍ କିଲାବ ଜିନ୍ଦାବାଦ୍', 'ସାମ୍ରାଜ୍ୟବାଦ ମୁର୍ଦ୍ଦାବାଦ'ର ଧ୍ୱନି ଦେଇ ବିଶ୍ୱର ସର୍ବହରା ପ୍ରତି ନିଜ ପ୍ରତିବଦ୍ଧତା ଜଣାଉଥିଲେ । ରାଷ୍ଟ୍ରର ସୀମିତ ପରିଧି ଭିତରେ କଦାପି ତାଙ୍କ ମାନବୀୟତାକୁ ବାନ୍ଧି ଦିଆ ଯାଇ ନପାରେ । ସେ ମାର୍କ୍ସବାଦୀ ଥିଲେ, କିନ୍ତୁ ତାଙ୍କର ମାର୍କ୍ସବାଦ ସ୍ଥାଣୁ ନଥିଲା । ବାସ୍ତବିକତାର ଆଇନାରେ ତାକୁ ପରଖୁଥିଲେ, ନିଜ ଚିନ୍ତନକୁ ନିରନ୍ତର ମାପୁଥିଲେ । ତେଣୁ, ନାସ୍ତିକ ହେବା ସତ୍ତ୍ୱେ, 'ଈଶ୍ୱର'ର କଳ୍ପନା ଦୁଃସମୟରେ ମଣିଷକୁ ସାହାରା ଦିଏ ବୋଲି ସେ ବୁଝି ପାରିଥିଲେ ଏବଂ ସେ କଥା କହୁଥିଲେ । ବିଚାରର ଏହି ସବୁ ବିଶେଷତ୍ୱ ଓ ପରିପକ୍ୱତା ଯୋଗୁଁ, ଆତ୍ମବଳିଦାନ ବେଳେ ବି ଭଗତ ସିଂ ବିଚଳିତ ହୋଇ ନାହାନ୍ତି, ହାରି ଯାଇନାହାନ୍ତି । ତାଙ୍କର ସେହି ପରିପକ୍ୱ ବିଚାର, ସାହସ ଓ ଦୃଢ଼ ପ୍ରତିବଦ୍ଧତା ଭଗତ ସିଂଙ୍କୁ ତାଙ୍କ ଜନ୍ମର ଶହେ ବର୍ଷ ପରେ ବି ଆଜି ପ୍ରାସଙ୍ଗିକ କରାଏ, ଯୁଗୋପଯୋଗୀ କରାଏ । ଆଗାମୀ ଦିନରେ ବି ତାଙ୍କର ଏହି ପ୍ରାସଙ୍ଗିକତା ଊଣା ହେବ ନାହିଁ– ଏହା କେବଳ ଆଶା କରାଯାଏନା, ଅନୁମାନ ବି କରିହୁଏ ।

□□

# 'କଳାପାଣି'ର ଐତିହ୍ୟ

ଆଣ୍ଡାମାନ୍ ଓ ନିକୋବର ଦ୍ୱୀପପୁଞ୍ଜକୁ ଲୋକ 'କଳାପାଣି' ନାଁରେ ଜାଣନ୍ତି । 'କଳାପାଣି' ମାନେ ଏକ ନିଶିଦ୍ଧାଞ୍ଚଳ, ସଭ୍ୟ ସମାଜ ଦ୍ୱାରା ତିରସ୍କୃତ ଏକ ଅଂଚଳ । ସାମାଜିକ ଜୀବନରେ ଯେଉଁମାନେ ଅଯୋଗ୍ୟ, ଠିକ୍ ରାସ୍ତାକୁ ଯାହାଙ୍କୁ ଅଣାଯାଇ ପାରିବ ନାହିଁ, କେବଳ ତାଙ୍କ ପାଇଁ ସେଠି ସ୍ଥାନ ! ଅତି ନୃଶଂସ ଅପରାଧୀ, ଯାହା ପାଇଁ ଏଠିକା ବନ୍ଦୀଗୃହ ବି ଯଥେଷ୍ଟ ନୁହେଁ, ସେଠିକି ତାଙ୍କୁ ପଠାଯାଉଥିଲା । ଜେଲ୍‌ରୁ ମୁକ୍ତି ନିମିତ୍ତ ସେମାନେ ଯୋଗ୍ୟ ନୁହନ୍ତି । କଳାପାଣିରେ ତାଙ୍କ ଦିନ କାଳ ସରୁ ।

ଆଣ୍ଡାମାନର ଏଭଳି ନକାରାତ୍ମକ ଅର୍ଥରେ ଆହୁରି ନକାରାତ୍ମକତା ଭରିଦେଲା ୨୦୦୪ ମସିହା ଡିସେମ୍ବରରେ ଆସିଥିବା 'ସୁନାମୀ' । ଭାରତରେ ସୁନାମୀ ଯେଉଁ ମାତ୍ରାରେ ଧନଜୀବନ ନଷ୍ଟ କଲା, ସେଠି ଆଗ ଭାଗ ରହିଲା ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜର । ଫଳରେ ଦେଶର ଚାରିଆଡୁ ସେଠିକି ସାହାଯ୍ୟ ଓ ସହଯୋଗର ଧାରା ବୋହିଲା । ତାଙ୍କ ନିଜର କୌଣସି ଭୁଲ ଭଟକା ନଥିବା ସତ୍ତ୍ୱେ ଆଣ୍ଡାମାନବାସୀ 'ସୁନାମୀ' ଯୋଗୁଁ ସାରା ବିଶ୍ୱ ସମକ୍ଷରେ ଦୟା ଓ କରୁଣାର ପାତ୍ର ହୋଇଗଲେ । ଆଣ୍ଡାମାନର ନାଁ ପଡ଼ନ୍ତେ ଲାଗିଲା ଯେମିତି 'କଳାପାଣି'ବାସୀ ଜଣେ ଭୀକ୍ଷାପାତ୍ର ଧରି ଦୟା ଓ ସାହାଯ୍ୟ ନିମିତ୍ତ ସଭ୍ୟ ସମାଜ ଆଗରେ ଛିଡ଼ା ହୋଇଛି ! ଆଣ୍ଡାମାନ ଏକ ସ୍ୱୟଂସଂପୂର୍ଣ୍ଣ କେନ୍ଦ୍ରଶାସିତ ଅଞ୍ଚଳ, ତା'ର ନିଜସ୍ୱ ଐତିହ୍ୟ, ସଭ୍ୟତା, ସଂସ୍କୃତି ରହିଛି, ଅନ୍ୟ କାହାରି ସଭ୍ୟତା, ସଂସ୍କୃତିଠାରୁ ସେ କେବେ ଊଣା ହୋଇ ନପାରେ । ଏସବୁ ତଥ୍ୟ ମୁଣ୍ଡରେ ପୂରାଇବା ଯେମିତି ସହଜ ନୁହେଁ । ବ୍ୟକ୍ତିଗତ ସ୍ତରରେ ଭୁଲ ନ କରି ସୁଦ୍ଧା ମିଛଟାରେ କିପରି ବ୍ୟକ୍ତି ବଦନାମ ହୁଏ, ହୀନମନ୍ୟତାର ଶିକାର ହୁଏ, ନିଜ ବୈଶିଷ୍ଟ୍ୟକୁ ସଗର୍ବରେ ସର୍ବସମକ୍ଷରେ ଅଭିବ୍ୟକ୍ତ କରି ପାରେନା, ତା'ର ଏକ ଉଦାହରଣ ହେବ ଆଣ୍ଡାମାନବାସୀ । ପ୍ରଶ୍ନଟି ଆମ ସମସ୍ତଙ୍କ ପାଇଁ ପ୍ରାସଙ୍ଗିକ । ତେଣୁ ତା'ର ଜଟିଳତାକୁ ବୁଝିବା ଆମ ସମସ୍ତଙ୍କ ପାଇଁ ଏକ ସାମାଜିକ ଆବଶ୍ୟକତା ।

'ସୁନାମୀ' ଆସିବାର ପ୍ରାୟ ମାସେ ପୂର୍ବରୁ ଅର୍ଥାତ୍ ୨୦୦୪ ମସିହା ନଭେମ୍ବର ମାସରେ ମତେ ଏକ ଶିକ୍ଷକ ତାଲିମ ଦେବା କାମରେ ସପ୍ତାହଟିଏ ଆଣ୍ଡାମାନର ରାଜଧାନୀ ପୋର୍ଟବ୍ଲେଆରରେ ରହିବାର ସୁଯୋଗ ମିଳିଥିଲା । ତା'ପୂର୍ବରୁ ପାଞ୍ଚବର୍ଷ ତଳେ ଆଉ ଥରେ ମଧ୍ୟ ସେଠି କିଛି ଦିନ ରହିବାକୁ ମିଳିଥିଲା ! ଏହି ଉଭୟ ରହଣି ବେଳେ ହୃଦ୍‌ବୋଧ ହେଲା ଯେ ଦୁଇଟି ଶବ୍ଦର ସେଠି ଖୁବ୍ ପ୍ରଚଳନ- 'ଆଇଲେଣ୍ଡର୍' ଏବଂ 'ମେନ୍‌ଲେଣ୍ଡର୍' ଅର୍ଥାତ୍ 'ଦ୍ୱୀପବାସୀ' ଏବଂ 'ମୁଖ୍ୟଭୂମିବାସୀ' । ଦୁଇଟି ଯାକ ଶବ୍ଦର ବିଶେଷ ଅର୍ଥ ରହିଛି । ମନେହୁଏ, ସେଠିକା ଲୋକ ଭାବନ୍ତି, ସାହିତ୍ୟ, ସଂସ୍କୃତି, ଇତିହାସ– ପ୍ରତ୍ୟେକ କ୍ଷେତ୍ରରେ 'ମେନଲେଣ୍ଡର'ମାନେ 'ଆଇଲେଣ୍ଡର୍'କୁ ବାଟ ଦେଖାଇବେ । ଅର୍ଥାତ୍ 'ଆଇଲେଣ୍ଡର' ହେବ 'ଗ୍ରହିତା', ଏବଂ ମେନଲେଣ୍ଡର ହେବ 'ଜ୍ଞାନଦାତା' । ଜଣେ ହେବ 'ଗୁରୁ' ଆଉ ଜଣକ ହେବ 'ଶିଷ୍ୟ' । ଜାଣି, ସର୍ବଦା ଆଇଲେଣ୍ଡର ବୁଦ୍ଧି ବିବେକର ସୂତ୍ର ପାଇବା ପାଇଁ 'ମେନଲେଣ୍ଡର'ର ବାଟ ଚାହିଁ ରହିଥାଏ ।

କୌଣସି ବ୍ୟକ୍ତି ବା ସମାଜର ମନରେ ଶିଖିବାର ଭାବ ରହିବାଟା ବହୁତ ଭଲ କଥା । 'ମତେ ଜଣା' କହିବା ପରିବର୍ତ୍ତେ 'ଜାଣିବା ପାଇଁ ମୁଁ ଆଗ୍ରହୀ' ବୋଲି ସ୍ୱୀକାର କରିବାରେ ଗୋଟାଏ ଅଭିନବ ଆନନ୍ଦ ରହିଥାଏ, ତହିଁରୁ ବ୍ୟକ୍ତିର ନମ୍ରତା, ଭଦ୍ରତା ବି ଉକୁଟେ । ମାତ୍ର ଏହି ଶିକ୍ଷଣୀୟ ଭାବ ପଛରେ କୌଣସି ପ୍ରକାର ହୀନମନ୍ୟତା ରହିବା କଥା ନୁହେଁ । ଅନ୍ୟ ଅର୍ଥରେ କହିଲେ ଗ୍ରହଣଶୀଳତା ପଛରେ ସ୍ୱାଭିମାନ ରହିବା କଥା । ନିଜ ସଭ୍ୟତା, ସଂସ୍କୃତିକୁ ନେଇ ସ୍ୱାଭିମାନ, ଐତିହ୍ୟକୁ ନେଇ ସ୍ୱାଭିମାନ । ସେ ବ୍ୟକ୍ତି ହେଉ ବା ସମାଜ- ସ୍ୱାଭିମାନ ବିନା କାହାରି ଉତ୍ଥାନ ନାହିଁ । ମୋର ସ୍ୱଳ୍ପ ରହଣି ଅବସରରେ ମନେହେଲା, ଆଣ୍ଡାମାନର ଶିକ୍ଷକ ସମାଜ (ଶିକ୍ଷିତ ସମାଜ !) ସେହି ସ୍ୱାଭିମାନକୁ ଯଥେଷ୍ଟ ମହତ୍ତ୍ୱ ଦେଉନାହାନ୍ତି । ସେମାନଙ୍କର ବୋଧେ ଧାରଣା, ଆଧୁନିକତାର ଦୌଡ଼ରେ ସେମାନେ ଊଣା ପଡ଼ୁଛନ୍ତି ଏବଂ 'ମେନଲେଣ୍ଡର'ର ସହଯୋଗରେ ସେ ଊଣା ନିଶ୍ଚୟ ଭରଣା ହୋଇ ପାରିବ ।

ଏ ଯେଉଁ ମାନସିକ ସ୍ଥିତି, ତାର ସଂପୂର୍ଣ୍ଣ ବିପରୀତ ମନେ ହେଲା ଆଣ୍ଡମାନର ବସ୍ତୁସ୍ଥିତି । ତା'ର ଇତିହାସ ଓ ସଂସ୍କୃତିକୁ ନଜର ଦେଲେ ଲାଗେ ମୁଖ୍ୟ ଭୂମିବାସୀଙ୍କ ପାଇଁ ସେ ପ୍ରେରଣାର ସ୍ରୋତ ହେବା କଥା । ଏହି ଦାବିର ପୁଷ୍ଟି ପାଇଁ ସଂକ୍ଷେପରେ ମାତ୍ର ଦୁଇ ଚାରୋଟି ଉଦାହରଣ ଇତିହାସରୁ ନିଆଯାଇ ପାରେ ।

ପ୍ରଥମ ଉଦାହରଣ ହେଲା, ସେଠିକାର ସେଲ୍ୟୁଲାର ଜେଲ ବା 'କଳାପାଣି' । ୧୮୯୬ ମସିହାରେ ଏହି ଜେଲର ନିର୍ମାଣ ଆରମ୍ଭ ହୋଇ ୧୯୦୬ ମସିହାରେ ଶେଷ ହେଲା । ତିନି ତାଲା ବିଶିଷ୍ଟ ଏହି ଜେଲରେ ୬୯୮ ଜଣ ବନ୍ଦୀଙ୍କ ପାଇଁ ସ୍ୱତନ୍ତ୍ର କୋଠରୀ ରହିଥିଲା । ସାତଟି 'ୱିଂଗ' ବିଶିଷ୍ଟ ଏହି ତାରକା ଆକାର ଜେଲ୍ କେନ୍ଦ୍ରରେ ରହିଛି ଏକ 'ୱାଚ୍‌ଟାୱାର୍' । ସେଠି ବସି କେବଳ ଜଣେ ଜଗୁଆଳି ସମଗ୍ର ଜେଲ୍ ନିୟନ୍ତ୍ରଣ କରେ । ଯଦି ସ୍ୱାଧୀନତା ସଂଗ୍ରାମକୁ ଦେଖାଯାଏ, ୧୮୫୭ ମସିହାରେ ସିପାହି ବିଦ୍ରୋହ ପରଠାରୁ କେତେ ଯେ ସ୍ୱାଧୀନତା ସଂଗ୍ରାମୀ ଏହି ଜେଲ୍‌ରେ ଦିନ କାଟିଛନ୍ତି, ତା'ର ଠିକଣା ନାହିଁ । ଭିନାୟକ ସାଭରକର, ଶ୍ରୀ ଅରବିନ୍ଦଙ୍କ ସାନଭାଇ ବାରୀନ୍ଦ୍ର ଘୋଷ, ଗଦର ପାର୍ଟିର ଭାଇ ପରମାନନ୍ଦଙ୍କଠାରୁ ଆରମ୍ଭ କରି ଆମ ଓଡ଼ିଶାର ସୁରେନ୍ଦ୍ର ସାଏଙ୍କ ମୁଖ୍ୟ ସହଯୋଗୀ ଘେଁସ ଜମିଦାର ହଟେସିଂ ସମସ୍ତେ ସେଠି ବର୍ଷ ବର୍ଷ ଧରି କାଳ କାଟିଛନ୍ତି, ଅନେକେ ପ୍ରାଣ ଦେଇଛନ୍ତି । ଆଜି ପ୍ରତ୍ୟେକ ସ୍ୱାଧୀନତା କାମୀ ଭାରତୀୟଙ୍କ ପାଇଁ ସେଲ୍ୟୁଲାର ଜେଲ୍ ଏକ ତୀର୍ଥଭୂମି ହେବା କଥା, କାରଣ ଜନ୍ମଭୂମି ପାଇଁ ସ୍ୱାର୍ଥତ୍ୟାଗ କରିବାକୁ ତାହା ଆମକୁ ପ୍ରୋତ୍ସାହନ ଦିଏ । ଆମ ମନରେ ବଳ ଓ ସାହସ ଯୋଗାଏ । 'ଲାଲକିଲ୍ଲା' ବା 'ଷ୍ଟେଚ୍ୟୁ ଅଫ୍ ଲିବର୍ଟି' ଅପେକ୍ଷା ତାର ଐତିହାସିକ ମହତ୍ୱ ଊଣା ହୋଇ ନ ପାରେ ।

ସ୍ୱାଧୀନତା ସଂଗ୍ରାମୀଙ୍କୁ ବାଦ ଦେଲେ, ଅନ୍ୟ ନୃଶଂସ ଅପରାଧୀ ମଧ୍ୟ ସେଲ୍ୟୁଲାର ଜେଲ୍‌ରେ ବନ୍ଦୀ ହୋଇ ରହୁଥିଲେ । ସେ ଭଳିଆ ଏକ ନୃଶଂସ ବନ୍ଦୀ ଥିଲେ ଶେର ଅଲ୍ଲୀ । ଜେଲଦଣ୍ଡ ଭୋଗିବା ପରେ ଆଣ୍ଡାମାନ ଜଙ୍ଗଲରେ ସେ ଦିନ କାଟୁଥିଲେ । ବନ୍ଦୀ ଅବସ୍ଥାରେ ତାଙ୍କର ବନ୍ଧୁତା ହୋଇଥିଲା ୱାହାବୀ ଆନ୍ଦୋଳନର ନେତା ସହବନ୍ଦୀମାନଙ୍କ ସହ । 'ଦସ୍ୟୁ ରତ୍ନାକର' ରୁ 'ବାଲ୍ମୀକି' ହେଲା ପରି ସେ ଚାହୁଁଥିଲେ କିଛି ମହତ କାମ କରିବାକୁ, ଶତ୍ରୁ ଇଂରେଜମାନଙ୍କ ଉପରେ ପ୍ରତିଶୋଧ ନେବାକୁ । ୧୮୭୨ ମସିହାରେ ତାଙ୍କୁ ସେହି ଅବସର ମିଳିଲା । ଆଣ୍ଡାମାନ ପରିଦର୍ଶନରେ ଯାଇଥିବା ବଡ଼ଲାଟ୍ ଲର୍ଡ଼ ମେୟୋଙ୍କୁ ହତ୍ୟାକରି ଇଂରେଜ ସାମ୍ରାଜ୍ୟବାଦକୁ ଯେଉଁ ଧକ୍କା ଦେଲେ, ତାର ପଟାନ୍ତର ନାହିଁ । ଯଦି ସ୍ୱାଧୀନତା ସଂଗ୍ରାମର ଇତିହାସକୁ ଦେଖାଯାଏ, ବଡ଼ଲାଟ ପରି ସର୍ବୋଚ୍ଚ ବ୍ରିଟିଶ୍ ଅଧିକାରୀଙ୍କ ହତ୍ୟା ଆଉ କେବେ ହୋଇନି । ଆଜି ଭଗତ ସିଂ ବଡ଼ ବିପ୍ଳବୀ ବୋଲି ପରିଚିତି ପାଆନ୍ତି । ଜଣେ ଇଂରେଜ ପୋଲିସ ଏସ୍.ପି.କୁ ମାରି ଯଦି ସେ ଏତେ ବଡ଼ ବିପ୍ଳବୀ ହୋଇ ପାରିଲେ, ଶେର୍ ଅଲ୍ଲୀଙ୍କୁ କେତେ ପ୍ରସିଦ୍ଧି ମିଳିବା କଥା ତାହା ଅନୁମାନ କରାଯାଇପାରେ । ମାତ୍ର ଦୁଃଖର କଥା ଶେର ଅଲ୍ଲୀଙ୍କୁ କେହି ଜାଣନ୍ତିନି, ତାଙ୍କର କର୍ମଭୂମି ଆଣ୍ଡାମାନ ତାଙ୍କ ନାଁରେ ଗର୍ବ କରିବାକୁ ସୁଦ୍ଧା ଅବସର ପାଏନା ।

୧୮୫୭ ମସିହାର ସିପାହି ବିଦ୍ରୋହ ବେଳେ ମୋଗଲ ସମ୍ରାଟ ଦ୍ୱିତୀୟ ବାହାଦୁର ଶାହାଙ୍କୁ ବିପ୍ଳବୀମାନେ ଭାରତର ସମ୍ରାଟ ଘୋଷଣା କଲେ, ଦିଲ୍ଲୀ ନଗରୀକୁ ପ୍ରାୟ ବର୍ଷେ କାଳ ଇଂରେଜମାନଙ୍କ କବଳରୁ ମୁକ୍ତ କରି ରଖିଲେ । ବାହାଦୁର ଶାହାଙ୍କ ଜଣେ ମୁଖ୍ୟ ପରାମର୍ଶଦାତା ଥିଲେ ହଜରତ ଆଲମାହ ଫଜଲ ହକ୍ ଖୈରାବାଦୀ । ଆରବୀ ଭାଷାର ଜଣେ ବଡ଼ ପଣ୍ଡିତ । ଇଂରେଜମାନଙ୍କୁ ବିତାଡ଼ିତ କଲାପରେ ନିର୍ମିତ ହେବାକୁ ଥିବା ସ୍ୱାଧୀନ ଭାରତର 'ସମ୍ବିଧାନ'ର ରୂପରେଖ ସେ ଦେଇଥିଲେ । ଇଂରେଜମାନଙ୍କ ଦ୍ୱାରା ଦିଲ୍ଲୀ ପୁନର୍ବାର ଅଧିକୃତ ହେଲା ପରେ ବାହାଦୁର ଶାହାଙ୍କୁ ବର୍ମାର ଜଙ୍ଗଲରେ ବନ୍ଦୀ କରି ରଖାଗଲା, ଖୈରାବାଦୀଙ୍କୁ ପଠେଇ ଦିଆଗଲା ଆଣ୍ଡାମାନ । ହେଲେ କଳାପାଣିର ସେହି କଠୋର ଶୃଙ୍ଖଳ ଭିତରେ ବି ସେ ଚୁପ୍ ରହିନାହାନ୍ତି । ଚୁଲିରୁ ଆଣି ନରମ କୋଇଲାକୁ କଲମ ରୂପେ ବ୍ୟବହାର କରି ଧଳା ଧୋତିରେ ସେ ଆରବୀ ଭାଷାରେ ଦୁଇଖଣ୍ଡି କାବ୍ୟ ଲେଖିଛନ୍ତି- 'ଅଲ୍‌ସୁରାତଲ ହିନ୍ଦ୍' ଏବଂ 'ଅଫିତନାତୁ ହିନ୍ଦ୍' । ସ୍ୱାଧୀନ ଭାରତର ତାଙ୍କର କାବ୍ୟିକ ଓ ବୌଦ୍ଧିକ ସ୍ୱପ୍ନ ତହିଁରେ ରୂପାୟିତ । କାବ୍ୟ ଦୁଇଟିକୁ ପୁଣି ଜେଲ୍‌ରୁ ମୁକ୍ତି ପାଇ ମୁଖ୍ୟଭୂମିକୁ ଫେରୁଥିବା ଜଣେ ବନ୍ଦୀ ହାତରେ ସେ ନିଜ ପୁଅ ପାଖକୁ ପଠାଇଲେ । ପରେ ପ୍ରକାଶିତ ହୋଇ ତାହା ଖ୍ୟାତି ମଧ ଅର୍ଜନ କଲା ।

ଖୈରାବାଦୀଙ୍କ ସଂଗ୍ରାମର କାହାଣୀ ଏଇଠି ସରି ଯାଏନା; ବରଂ ଆରମ୍ଭ ହୁଏ କହିଲେ ଭଲ ହେବ । ଅନେକ ବର୍ଷର ଜେଲ ରହଣି ପରେ ତାଙ୍କୁ ମୁକ୍ତି ଦିଆଗଲା । ମାତ୍ର ରହିବାକୁ ହେବ ଆଣ୍ଡମାନ ଦ୍ୱୀପରେ । ଫଳରେ ଜେଲ୍‌ରୁ ବାହାରି ଆସି ଅନତି ଦୂରରେ ବାରିକ କାମ କରି ସେ ଦିନ କାଟିଲେ । ଏଣିକି ଲୋକଙ୍କୁ ପରିଷ୍କାର ପରିଚ୍ଛନ୍ନ କରିବା ତାଙ୍କର 'ଯୁଗଧର୍ମ' ହେଲା । ସାଂଗରେ ସ୍ଥାନୀୟ ସ୍ତରରେ ଲୋକଙ୍କ ଭିତରେ ସାମାଜିକ ସଂସ୍କାର ଆଣିବାକୁ ପ୍ରଚେଷ୍ଟା କଲେ । ଏହି ଲୋକହିତକର କାମ ଯୋଗୁଁ ତାଙ୍କର ଏତେ ଖ୍ୟାତି ବଢ଼ିଲା ଯେ ତାଙ୍କୁ ଲୌକିକ ସ୍ତରରେ ଜଣେ ସୁଫିସନ୍ଥର ସ୍ୱୀକୃତି ମିଳିଲା । ନାଁ ହେଲା 'ମଜାର୍ ବାବା' । ଖେରାବାଦୀଙ୍କ ମୃତ୍ୟୁ ପରେ ମଜାର ବାବାଙ୍କ 'ମଜାର୍' ବା କବର ଦ୍ୱୀପବାସୀଙ୍କ ପାଇଁ ଏକ ତୀର୍ଥସ୍ଥାନ ଆଜି । ମୁସଲମାନ ଯାଆନ୍ତି, ତା'ଠାରୁ ଢେର ଅଧିକ ସଂଖ୍ୟାରେ ହିନ୍ଦୁ ଭକ୍ତମାନେ ଯାଆନ୍ତି 'ମଜାର ବାବା' ପାଖକୁ । ସମସ୍ତଙ୍କର ବିଶ୍ୱାସ କାହାରି ଯୁକ୍ତିଯୁକ୍ତ ମନୋକାମନାକୁ 'ମଜାର ବାବା' ଅପୂର୍ଣ୍ଣ ରଖିବେ ନାହିଁ । ଆଜି ମୃତ୍ୟୁର ଅନେକ ବର୍ଷ ପରେ ବି ଖୈରାବାଦୀ ହିନ୍ଦୁ-ମୁସଲିମ୍ ଏକତା ଏବଂ ମୈତ୍ରୀର ପ୍ରତୀକ ହୋଇ ରହିଛନ୍ତି ସେଠି । ଯୁବାବସ୍ଥାରେ ଇଂରେଜ ବିରୋଧୀ ସଂଗ୍ରାମରେ ଝାସ ଦେଇ ସେ ଯେମିତି ଯୁଗଧର୍ମ

ପାଳନ କରିଛନ୍ତି, ଜେଲ ଭିତରେ କାବ୍ୟ ରଚନା କରି ସେମିତି ନିଜ କର୍ତ୍ତବ୍ୟ ପାଳନ କରିଛନ୍ତି, ପୁଣି ଜେଲ୍‌ରୁ ବାହାରିଲା ପରେ ବି ଶୁଙ୍ଘେଇବାର ନାହିଁ, ଥକିବାର ନାହିଁ । ସମାଜ ସଂସ୍କାରକୁ ସେ ଜୀବନର ବ୍ରତ କରିଛନ୍ତି । ତେଣୁ ମଲାପରେ ବି ସମାଜ ପାଇଁ ସେ ସଂପତ୍ତି, ତାଙ୍କର କର୍ମଭୂମି ଆଣ୍ଡାମାନ୍ ସମଗ୍ର ମାନବତା ନିମିତ୍ତ ସମ୍ପତ୍ତି ।

ସମସାମୟିକ ଇତିହାସକୁ ଦୃଷ୍ଟିଦେଲେ ମନେହୁଏ ଆଣ୍ଡାମାନବାସୀଙ୍କୁ ଯେଉଁ ମାନବୀୟ ତାଡ଼ନାର ଶିକାର ହେବାକୁ ପଡ଼ିଛି, ତାହା ନିକଟ ଅତୀତରେ ସଂଘଟିତ ହୋଇଥିବା 'ସୁନାମୀ' ଅପେକ୍ଷା କମ୍ ଭୟାବହ ନୁହେଁ । ଅନ୍ତତଃ ଭାରତର ଅନ୍ୟ କୌଣସି ଅଂଚଳରେ ସେହି ଧରଣର ସାମ୍ରାଜ୍ୟବାଦୀ ଉତ୍ପୀଡ଼ନ ଦେଖିବାକୁ ମିଳେନା ।

୧୮୯୬ ମସିହାରେ ସେଲ୍ୟୁଲାର ଜେଲ୍ ନିର୍ମାଣର ବହୁ ବର୍ଷ ପୂର୍ବରୁ ସିପାହି ବିଦ୍ରୋହର ବିପ୍ଳବୀମାନଙ୍କୁ ୧୮୫୮ ମସିହାରେ ଆଣ୍ଡାମାନ ନିଆଗଲା । ଦ୍ୱୀପରେ ଓହ୍ଲାଉ ଓହ୍ଲାଉ ବିପ୍ଳବୀମାନେ ଏତେ ମାତ୍ରାରେ ବିରୋଧ ପ୍ରକଟ କଲେ ଯେ ଗୋଟାଏ ଦିନରେ ୮୬ ଜଣ ବିପ୍ଳବୀଙ୍କୁ ଫାଶୀ ଦେବାକୁ ପଡ଼ିଲା । ଜଣେ ବିପ୍ଳବୀ ଜେଲ୍‌ରୁ ପଳେଇ ଯାଇ ମିଶିଲା ସ୍ଥାନୀୟ ଆଣ୍ଡାମାନିଜଙ୍କ ସାଙ୍ଗରେ । ସେ ଦୀକ୍ଷା ଦେଲା ସ୍ଥାନୀୟ ଆଦିବାସୀଙ୍କୁ ଇଂରେଜମାନଙ୍କ ବିରୁଦ୍ଧରେ । ଫଳରେ ପ୍ରାୟ ବର୍ଷେ ପରେ (୧୮୫୯ରେ) ଆଦିବାସୀମାନେ ଧନୁତୀର ଧରି ଇଂରେଜମାନଙ୍କୁ ଆକ୍ରମଣ କଲେ ଏବଂ ଅନେକ ମୃତାହତ ହୋଇ ପରାସ୍ତ ହେଲେ । 'ଆବରଡ଼ିନ ଯୁଦ୍ଧ' ନାମରେ ପରିଚିତ ଏହି ଆଦିବାସୀ ସଶସ୍ତ୍ର ସଂଗ୍ରାମ ଭାରତୀୟ ମୁକ୍ତି ସଂଗ୍ରାମର ଏକ ଅଭୁଲା ସ୍ମୃତି ହୋଇ ସ୍ଥାନିତ ହେବା କଥା; ମାତ୍ର ସେ ହୋଇ ପାରିନି । ପୁଣି ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ୧୯୪୩ ମସିହାରେ ଜାପାନ ଆଣ୍ଡାମାନକୁ ଅଧିକାର କରିନେଲା । ନେତାଜୀ ସୁଭାଷ ବୋଷ ଓ ତାଙ୍କର ଆଜାଦ୍ ହିନ୍ଦ୍ ଫୌଜ ଜାପାନକୁ ସମର୍ଥନ କରୁଥିଲେ ବୋଲି ଦ୍ୱୀପବାସୀ ଜାପାନକୁ ସ୍ୱାଗତ କଲେ । ମାତ୍ର, ଦୁଇବର୍ଷର ସେହି ଜାପାନୀ ଅଧିକାର ଦ୍ୱୀପବାସୀଙ୍କ ପାଇଁ ଏତେ ମର୍ମାନ୍ତକ ଯନ୍ତ୍ରଣା ଆଣିଦେଲା ଯେ, ତାହା ବର୍ଣ୍ଣନା କରିହେବ ନାହିଁ । ହତ୍ୟା, ଲୁଟ, ବଳତ୍କାର, ସବୁ ଅକଥନୀୟ ଅତ୍ୟାଚାର ଚାଲିଲା ଦ୍ୱୀପବାସୀଙ୍କ ଉପରେ । ଗୋଟାଏ ଦିନରେ ପୋର୍ଟବ୍ଲେଆର୍ ସହରରୁ ୪୬ଜଣ ବିଶିଷ୍ଟ ବ୍ୟାପାରୀ, ଶିକ୍ଷିତ, ଧନୀ ଲୋକଙ୍କୁ ଧରି ଆଣି ହାପ୍ରିଗଂଜ ନାମକ ଏକ ଜାଗାରେ କୁହାଗଲା 'ଗାତ ଖୋଳ' । ସେହି ଗାତର କଡ଼ରେ ଠିଆକରି ସମସ୍ତଙ୍କୁ ଗୁଳି କରିଦେଲେ ଜାପାନୀ ସୈନିକମାନେ । ନିଜେ ଖୋଳିଥିବା ଗାତରେ ଟଳି ପଡ଼ିଲେ ୪୬ ଜଣ ନୀରିହ ଦ୍ୱୀପବାସୀ । ଉପରେ କେବଳ ମାଟି ପୋଡ଼ି

ଦେଲେ ଜାପାନୀମାନେ । କବରେ ଦେବା ପାଇଁ ତାଙ୍କୁ ନୂଆ କରି ଗାତ ଖୋଳିବାକୁ ପଡ଼ିଲା ନାହିଁ ।

ସବୁଠାରୁ ବଡ଼ କଥା, ଭାରତ ମୁଖ୍ୟଭୂମିରୁ କୌଣସି ସାହାଯ୍ୟ ନ ପାଇ ସୁଦ୍ଧା ଦ୍ୱୀପବାସୀ ପ୍ରତିଟି ସ୍ତରରେ ସାମ୍ରାଜ୍ୟବାଦର ଦୃଢ଼ ବିରୋଧ କରିଛନ୍ତି । ସେମାନେ ବିରୋଧ କରିଛନ୍ତି ଇଂରେଜ ସାମ୍ରାଜ୍ୟବାଦର, ପୁଣି ବିରୋଧ କଲେ ଜାପାନୀ ସାମ୍ରାଜ୍ୟବାଦର । ୧୯୪୪ ମସିହାରେ ଜାପାନ ଅପସରିଗଲା ଉତ୍ତାରୁ ଯେତେବେଳେ ଇଂରେଜମାନେ ଅଧିକାର କଲେ, ତାର ବି ବିରୋଧ କରିବାକୁ ସେମାନେ ପଛେଇ ନାହାନ୍ତି । ଜାଣି ସାମ୍ରାଜ୍ୟବାଦର ବିରୋଧ କରି ଚିରକାଳ ଦଣ୍ଡ ଭୋଗିବା ହିଁ ତାଙ୍କ ନିୟତି । ଏଭଳିଆ ଜଣେ ଆଜନ୍ମ ସଂଗ୍ରାମୀଙ୍କ ସହ ସାକ୍ଷାତ ହୋଇଥିଲା, ଯେତେବେଳେ ପ୍ରଥମଥର ମୁଁ ଆଣ୍ଡାମାନ୍ ଯାଇଥିଲି, ୧୯୯୯ ମସିହାରେ । ନାଁ ତାଙ୍କ କେଶରଜୀ । ଲୋକ ଡାକନ୍ତି 'କେଶର ମାଷ୍ଟର' । ସରକାରୀ ସ୍କୁଲ୍ ବା ଅନ୍ୟ କେଉଁ ସ୍କୁଲ୍‌ରେ ମାଷ୍ଟର ନ ଥିଲେ କେବେ ସେ । ଲୋକଙ୍କ ଭିତରେ ନିରକ୍ଷରତା ଦୂର କରିବା ସକାଶେ ନିଜେ ନିଜେ 'ମାଷ୍ଟର' ସାଜି ପାଠ ପଢ଼ାଉଥିଲେ । ଇଂରେଜମାନଙ୍କୁ ବିରୋଧ କରି ସେ ମାଡ଼ ଖାଇଥିଲେ, ଜେଲ୍ ଯାଇଥିଲେ । ଜାପାନୀମାନଙ୍କ ସହାୟତାରେ ସୁଭାଷ ବୋଷ ଯେତେବେଳେ ପୋର୍ଟବ୍ଲେଆର୍ ଆସିଥିଲେ ତାଙ୍କୁ ସ୍ୱାଗତ ଗୀତିକା ଗାଇ ଆମନ୍ତ୍ରଣ ଜଣାଇଥିଲେ । ପରେ ଜାପାନୀମାନଙ୍କ ବିରୁଦ୍ଧରେ ଲଢ଼ି ସେ ଜେଲ୍ ଗଲେ । ୧୯୪୪ରେ ଜାପାନୀଙ୍କ ଗଲା ଉତ୍ତାରୁ ଇଂରେଜମାନେ ପୁଣି ଆଣ୍ଡାମାନ ଅଧିକାର କଲେ । ତା'ର ବିରୋଧ କରି ବି ସେ ଜେଲ୍ ଦଣ୍ଡ ଭୋଗିଲେ । ସ୍ୱାଧୀନତା ପରେ ସେ ଏମ୍.ପି.,ଏମ୍.ଏଲ୍.ଏ ହୋଇ ନାହାନ୍ତି । ପଦ୍ମଭୂଷଣ, ପଦ୍ମଶ୍ରୀ ବି ପାଇ ନାହାନ୍ତି । ସ୍ୱେଚ୍ଛାରେ ବୁଲିବୁଲି ଲୋକଙ୍କୁ ଶିକ୍ଷିତ କରିବାଁ ପାଇଁ ପାଠ ପଢ଼େଇଛନ୍ତି । ସେହି ତାଙ୍କର ଯୁଗଧର୍ମ । ଦ୍ୱିତୀୟଥର ମୁଁ ଗଲି ଯେତେବେଳେ ଅବଶୋଷର କଥା 'କେଶର ମାଷ୍ଟର' ମରି ସାରିଥିଲେ । ଖୈରାବନ୍ଦୀଙ୍କପରି ସାରା ଜୀବନ ସେ ଯୁଗଧର୍ମ ପାଳନ କରିଛନ୍ତି । ମିଛ ପ୍ରସିଦ୍ଧ ଓ ପୁରସ୍କାର ତାଙ୍କର ଲକ୍ଷ୍ୟ ନୁହେଁ । ତେବେ ତାଙ୍କର କର୍ମଭୂମି ଆଣ୍ଡାମାନ ବା ମିଛ ପ୍ରସିଦ୍ଧିର ଲୋଭ ରଖିବ କାହିଁକି ଯେ ? ସ୍ୱାଭିମାନ ରକ୍ଷାପାଇଁ ବ୍ୟକ୍ତିକୁ କ'ଣ କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ ହେବ– ତାହା ତାଙ୍କୁ ନିଜ ଅନୁଭବରୁ ମିଳିଛି । କାହାରି 'ଉପଦେଶ' ତାଙ୍କୁ ଲୋଡ଼ା ନାହିଁ । ବରଂ ପ୍ରତ୍ୟେକ ସ୍ୱାଭିମାନୀ ମଣିଷକୁ ସେ ପ୍ରେରଣା ଦେବେ, ସାହସ ଦେବେ– ଏଥିରେ ସନ୍ଦେହ ନାହିଁ ।

□□

# ଅହିଂସ ଓ ସହିଂସ ଆନ୍ଦୋଳନ

ଭାରତର ସ୍ୱାଧୀନତା ଆନ୍ଦୋଳନ ବୋଧହୁଏ ହେବ ଆଧୁନିକ ବିଶ୍ୱ ଇତିହାସର ସବୁଠାରୁ ବଡ଼ ଓ ଲମ୍ବା ଅହିଂସ ଗଣଆନ୍ଦୋଳନ । ଯଦି ଜାତୀୟ କଂଗ୍ରେସର ପ୍ରତିଷ୍ଠା ବର୍ଷରୁ ବି ଗଣତି ଆରମ୍ଭ କରାଯାଏ, ଦୀର୍ଘ ବା'ଷଠି ବର୍ଷ ଧରି ଚାଲିଥିବା ଏ ଆନ୍ଦୋଳନ । ଲକ୍ଷ ଲକ୍ଷ ଲୋକ ପ୍ରତ୍ୟକ୍ଷ ରୂପେ ଭାଗ ନେଇଥିଲେ । ପରୋକ୍ଷ ରୂପେ ଅର୍ଥାତ୍ ସଦିଚ୍ଛା ଓ ସହାନୁଭୂତି ଦେଇ ଆହୁରି କୋଟି କୋଟି ଲୋକ ଆନ୍ଦୋଳନର ଅଙ୍ଗ ହୋଇ ରହିଥିଲେ । ତା' ସତ୍ତ୍ୱେ ନେତୃବର୍ଗ ଆନ୍ଦୋଳନକୁ ସହିଂସ ହେବାର ସୁଯୋଗ ଦେଇ ନାହାନ୍ତି । ଅସହଯୋଗ ଆନ୍ଦୋଳନବେଳେ ଯେତେବେଳେ ୧୯୨୨ ମସିହାରେ ଉତ୍ତର ପ୍ରଦେଶର ଚୌରିଚୌରାଠାରେ ଉତ୍ୟକ୍ତ ଜନତା କେତେଜଣ ପୁଲିସ ସିପାହିଙ୍କୁ ମାରି ପକାଇଲେ, ଥାନାକୁ ଜାଳିଦେଲେ, ପରିଣାମ ପ୍ରତି ଆଦୌ ଭ୍ରୂକ୍ଷେପ ନ କରି ମହାତ୍ମା ଗାନ୍ଧୀ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ । ଏହି ଘଟନା ଯୋଗୁଁ ଗାନ୍ଧୀଙ୍କର ଅନେକ ନିକଟ ସହଯୋଗୀ ମଧ୍ୟ ତାଙ୍କ ଉପରେ ନାରାଜ ହେଲେ; ତଥାପି ଗାନ୍ଧୀଙ୍କର ଦୃଢ଼ ଯୁକ୍ତି— ହିଂସାତ୍ମକ ପନ୍ଥା ଆଚରଣ କରି ବ୍ରିଟିଶ ଉପନିବେଶବାଦ ଏବଂ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲଢ଼େଇ କରାଯାଇ ନପାରେ । କେବଳ ମହାତ୍ମା ଗାନ୍ଧୀ କାହିଁକି ତାଙ୍କର ପୂର୍ବସୂରୀ ଯଥା ଗୋପାଳକୃଷ୍ଣ ଗୋଖଲେ, ଫିରୋଜଶାହ ମେହେଟ୍ଟା କିମ୍ବା ଗାନ୍ଧିଙ୍କର ଦାୟାଦମାନେ ବି କେବେ ସ୍ୱାଧୀନତା ପ୍ରାପ୍ତି ସକାଶେ ହିଂସା ମାର୍ଗକୁ ଆଦରି ନାହାନ୍ତି । ଅହିଂସା ଓ ସତ୍ୟାଗ୍ରହକୁ ଭାରତୀୟ ଜାତୀୟତା ରାଜନୀତିର ମୂଳମନ୍ତ୍ର ରୂପେ ମହାତ୍ମା ଗାନ୍ଧୀ ସ୍ଥାପିତ କଲେ ବୋଲି ଆମେ ସମସ୍ତେ ଜାଣୁ; ମାତ୍ର ତାଙ୍କ ଆଗରୁ ମଧ୍ୟ ହିଂସାବାଦ ଜାତୀୟତା ଆନ୍ଦୋଳନର ମୁଖ୍ୟ ସ୍ୱର ହୋଇ ରହି ନଥିଲା । ୧୮୫୭ ମସିହାର 'ଗଣସଂଗ୍ରାମ' ପରଠାରୁ ଅହିଂସ ଆନ୍ଦୋଳନ ହିଁ ଭାରତୀୟ ରାଜନୀତିର ପ୍ରମୁଖ ସ୍ୱର ବୋଲି ସର୍ବଦା ଗଣା ହୋଇଛି । ହିଂସାତ୍ମକ ପନ୍ଥାରେ ସଂଗଠିତ ୧୮୫୭ ମସିହାର ଗଣସଂଗ୍ରାମ ବା ସିପାହିବିଦ୍ରୋହ ଯେତେବେଳେ ବ୍ରିଟିଶ ସାମ୍ରାଜ୍ୟବାଦ ହାତରେ

ଦୃଢ଼ ଭାବେ ଅବଦମିତ ହେଲା, ନୂଆଁ ଶିକ୍ଷିତ ନେତୃବର୍ଗ ସ୍ଥିର ନିଶ୍ଚିତ କରିନେଲେ ଯେ, ଏଣିକି ସହିଂସ ଆନ୍ଦୋଳନ ନୁହେଁ, ବରଂ ଅହିଂସ ଆନ୍ଦୋଳନ ବଳରେ ଦେଶକୁ ବିଦେଶୀ ତନ୍ତ୍ର କବଳରୁ ମୁକ୍ତ କରିବାକୁ ଚେଷ୍ଟା କରାଯିବ । ତେଣିକି ଯେତେ ଲମ୍ବା ହେଉ ସେ ମୁକ୍ତି ସଂଗ୍ରାମ ।

ଏତେ ବଡ଼ ଏକ ଗଣସଂଗ୍ରାମ ଅହିଂସ ହେବା ପଛରେ ଗାନ୍ଧୀ ପରି ନେତୃବର୍ଗଙ୍କର ଅହିଂସା ପ୍ରତି ଦୃଢ଼ ବିଶ୍ୱାସ ଏକ କାରଣ ହୋଇପାରେ; ମାତ୍ର ତା'ଠାରୁ ବଳି ବଡ଼ କାରଣ ହେଲା, ବ୍ରିଟିଶ୍ ଉପନିବେଶବାଦୀ ପ୍ରଶାସନର ଚରିତ୍ର । ରୁଷିଆର ଜାର ଶାସନ କିମ୍ବା ଏବେ ଇରାକରେ ଚାଲିଥିବା ଆମେରିକୀୟ ଶାସନ କିମ୍ବା ଦକ୍ଷିଣ ଆଫ୍ରିକାର କିଛି ବର୍ଷ ତଳେ ଚାଲିଥିବା ବର୍ଣ୍ଣଭେଦି ସରକାର ପରି ଏହା ଅତି ମାତ୍ରାରେ 'ଅଟୋକ୍ରେଟିକ୍' ବା ସ୍ୱେଚ୍ଛାଚାରୀ ନ ଥିଲା । ବେଶି ହେଲେ ବ୍ରିଟିଶ୍ ଉପନିବେଶବାଦୀ ପ୍ରଶାସନକୁ ଅଧା-ସ୍ୱେଚ୍ଛାଚାରୀ କୁହାଯାଇପାରେ; ଅର୍ଥାତ୍ ବୈଧାନିକ ଆନ୍ଦୋଳନ ବା ଆଇନର ଚାରି ପାଚେରି ଭିତରେ ସଂଘଟିତ ହେଉଥିବା ରାଜନୈତିକ ଆନ୍ଦୋଳନକୁ ଏହା ଯଥେଷ୍ଟ ସ୍ୱୀକୃତି ଦେଉଥିଲା, ଆନ୍ଦୋଳନକାରୀଙ୍କ ଦାବିକୁ ଗ୍ରହଣ ମଧ୍ୟ କରୁଥିଲା, ଯଦ୍ୱାରା କି ଇଂଲଣ୍ଡ ଗଣତନ୍ତ୍ରର ଆଦିଭୂମି ବୋଲି ବିସ୍ତାରିତ ହୋଇଥିବା ପ୍ରବାଦକୁ ବଳ ମିଳିବ । ଫଳରେ ମହାତ୍ମା ଗାନ୍ଧୀ ବ୍ରିଟିଶ୍ ପ୍ରଶାସନର ବଡ଼ ଶତ୍ରୁ ହେବା ସତ୍ତ୍ୱେ ଖୋଲାମେଲାରେ ପଦଯାତ୍ରା କରି ପାରୁଥିଲେ, ସଭାସମିତିରେ ଯୋଗ ଦେଇ ପାରୁଥିଲେ । ଅନ୍ୟଥା କେଉଁକାଳୁ ତାଙ୍କୁ ପୁଲିସ ମୁଠଭେଡ଼୍‌ରେ ମାରି ଦିଆଯାଇ ପାରିଥାନ୍ତା । ଭାରତରେ ବ୍ରିଟିଶ୍ ପ୍ରଶାସନର ମୂଳୋତ୍ପାଟନ ସକାଶେ ଜାତୀୟ କଂଗ୍ରେସ ବଦ୍ଧପରିକର ଜାଣି ସୁଦ୍ଧା, କଂଗ୍ରେସର ସଂଗଠନ ପାଇଁ ପ୍ରକାଶ୍ୟରେ ସରକାର କୌଣସି ପ୍ରତିବନ୍ଧକ ସୃଷ୍ଟି କରୁନଥିଲେ ।

କେବଳ ଏତିକି ନୁହେଁ । ପୂର୍ଣ୍ଣ ସ୍ୱାଧୀନତା ମିଳିଲା ୧୯୪୭ ମସିହାରେ । ମାତ୍ର ତା'ର ଅନେକ ବର୍ଷ ଆଗରୁ ଶାସନ ସଂସ୍କାର ମାଧମରେ ଦେଶକୁ ସ୍ୱାୟତ୍ତ ଶାସନର ସୁବିଧା ମିଳିଛି । ୧୯୩୬ ମସିହାରେ ପ୍ରତ୍ୟକ୍ଷ ନିର୍ବାଚନରେ ଭାଗ ନେବାର ଅଧିକାର ମିଳିଛି । ପ୍ରାଦେଶିକ ସରକାରମାନ ଗଠିତ ହୋଇଛନ୍ତି । ୧୯୪୨ ମସିହାରେ ଶାନ୍ତିପୂର୍ଣ୍ଣ ସଂଗ୍ରାମର ଚାପକୁ ସ୍ୱୀକାର କରି ସରକାର 'ଡୋମିନିଅନ' ମର୍ଯ୍ୟାଦା ଦେବାକୁ ମଧ୍ୟ ପ୍ରସ୍ତାବ ଦେଇଛନ୍ତି । ଏସବୁ ତ ଗଲା ବଡ଼ ଆକାରର ଉପଲବ୍ଧି, ଯାହାକୁ ଆଧାର କରି କିଛି ଐତିହାସିକ ଯୁକ୍ତି କରନ୍ତି ଯେ, ଗଣତାନ୍ତ୍ରିକ ବ୍ୟବସ୍ଥାରେ ବିଶ୍ୱାସ ରଖିଥିବା ବ୍ରିଟିଶ୍ ସରକାର ଏମିତିରେ ତୁହା ତୁହା କରି ସ୍ୱାଧୀନତା ବାଣ୍ଟୁଥିଲେ ଏବଂ କଂଗ୍ରେସ ଆନ୍ଦୋଳନ କରି ନ ଥିଲେ ବି ପୂର୍ଣ୍ଣ ସ୍ୱାଧୀନତା କିଛି ବର୍ଷ ପରେ ଦେଇଥାନ୍ତେ ।

ସାନ ଆକାରରେ ଅର୍ଥାତ୍ ଆଞ୍ଚଳିକ ସ୍ତରରେ ବି ଯଦି ଦେଖାଯାଏ, ଦେଶୀୟ ରାଜ୍ୟ ତୁଳନାରେ ସର୍ବଦା ମୋଗଲବନ୍ଦୀ ବା ଇଂରେଜ ଶାସନ କମ୍ ସ୍ୱେଚ୍ଛାଚାରୀ ରୂପେ ପରିଗଣିତ ହେବ । ଫଳରେ ପ୍ରଜାମଣ୍ଡଳ ଆନ୍ଦୋଳନବେଳେ ନୀଳଗିରି, ଢେଙ୍କାନାଳ ଆଦି ଗଡ଼ଜାତରୁ ଲୋକ ଚାଲିଆସି ମୋଗଲବନ୍ଦୀରେ ଆଶ୍ରୟ ଲୋଡ଼ିଛନ୍ତି । ଆଜି ସ୍ୱାଧୀନତାର ପ୍ରାୟ ଷାଠିଏ ବର୍ଷ ପରେ ସୁଦ୍ଧା ଲୋକ କୁହାକୁହି ହୁଅନ୍ତି, ଇଂରେଜ ଶାସନବେଳେ ଅପରାଧୀ ଦଣ୍ଡ ଭୋଗୁଥିଲେ, ଶିକ୍ଷକ ପାଠ ପଢ଼ାରେ ଅବହେଳା କରିବାକୁ ସାହସ କରୁନଥିଲେ, ଡାକ୍ତର ଚିକିତ୍ସାଳୟରେ ବସୁଥିଲେ, ପଇସା ନେଇ ନିଜ ଘରେ ରୋଗୀ ଦେଖୁ ନ ଥିଲେ, ସରକାରୀ କାର୍ଯ୍ୟାଳୟରେ ନିଜର ହକ୍ ଦାବି ପାଇବା ପାଇଁ ଲୋକଙ୍କୁ ଉପୁରି ଦେବାକୁ ପଡୁନଥିଲା । କହିବା କଥା ହେଲା ଯେ, ବ୍ରିଟିଶ ଉପନିବେଶବାଦୀ ଶାସନ ଶୋଷଣକାରୀ, ଅତ୍ୟାଚାରୀ ହେବା ସତ୍ତ୍ୱେ, ଅହିଂସ ଆନ୍ଦୋଳନର ସଂଗଠନ ପାଇଁ ଅବସର ରହିଥିଲା । ରାଷ୍ଟ୍ରର କେତେକ ଜନମଙ୍ଗଳକାରୀ ଚରିତ୍ରକୁ ଲୋକ ଅନୁଭବ କରି ପାରୁଥିଲା ।

ଅନ୍ୟ ପକ୍ଷରେ ଏହା ସର୍ବଜନ ବିଦିତ ଯେ, କଂଗ୍ରେସର ସେହି ଅହିଂସ ଆନ୍ଦୋଳନ ଚାଲିଥିବାବେଳେ ବି ଖୁଦିରାମ, ଭଗତ ସିଂ, ଚନ୍ଦ୍ରଶେଖର ଆଜାଦ, ସୂର୍ଯ୍ୟ ସେନ୍ ଆଦି ନେତୃବର୍ଗ ସହିଂସ ଆନ୍ଦୋଳନ ପରିଚାଳନା କରୁଥିଲେ । ସମଗ୍ର ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ସ୍ୱର ନ ହେଲେ ବି ଏହି ସହିଂସ ଆନ୍ଦୋଳନର ଉପସ୍ଥିତିକୁ କେବେ ଅସ୍ୱୀକାର କରାଯାଇ ନପାରେ । ଆଜି ଭଗତ ସିଂହ ବା ଚନ୍ଦ୍ରଶେଖର ସ୍ୱାଧୀନୋତ୍ତର ଭାରତୀୟ ସମାଜରେ କମ୍ ସମ୍ମାନର ଅଧିକାରୀ ନୁହନ୍ତି; ମାତ୍ର ଲକ୍ଷ୍ୟ କଲେ ଅନୁମିତ ହେବ ଯେ, ସହିଂସ ଆନ୍ଦୋଳନ ସେତେବେଳେ ତୀବ୍ର ହୋଇଛି, ଯେତେବେଳେ ଅହିଂସ ଆନ୍ଦୋଳନ ବିଫଳ ପ୍ରତୀତ ହୋଇଛି ଏବଂ ତା' ସାଙ୍ଗକୁ ବ୍ରିଟିଶ୍ ପ୍ରଶାସନ ଅହିଂସ ଆନ୍ଦୋଳନକୁ ଉପେକ୍ଷା କରି ଅଧିକ କଠୋର ଦମନ ନୀତି ଆଚରଣ କରିଛି । ବଂଗଭଙ୍ଗ ଆନ୍ଦୋଳନ ହେଲା ୧୯୦୫ ମସିହାରେ । ହିନ୍ଦୁ-ମୁସଲିମ୍, ନାରୀ-ପୁରୁଷ ମିଶି ରକ୍ଷାବନ୍ଧନ କଲେ, ସଭା ସମିତି କଲେ, ରାସ୍ତାରେ ସ୍ଲୋଗାନ୍ ଦେଲେ- ବଂଗ ପ୍ରଦେଶକୁ ଦୁଇ ଭାଗ କରନାହିଁ । ସରକାର ଲୋକଙ୍କ ଦାବିକୁ ଉପେକ୍ଷା କଲେ । ଅନ୍ୟ ପକ୍ଷରେ ଦେଶର ଚାରିଆଡ଼େ କଂଗ୍ରେସର ଚରମପନ୍ଥୀ ନେତୃବର୍ଗଙ୍କୁ ବାଛି ବାଛି କଠୋର ଦଣ୍ଡ ଦେଲେ । ୧୯୦୬ରୁ ୧୯୯୦ ମସିହା ଭିତରେ ସାଢ଼େ ପାଞ୍ଚଶହରୁ ଊର୍ଦ୍ଧ୍ୱ ରାଜନୀତିକ 'କେସ୍' ଦାୟର ହେଲା କେବଳ ବଂଗ ପ୍ରଦେଶର କଚେରିମାନଙ୍କରେ । ଭାରତୀୟ ସମ୍ବାଦପତ୍ରଗୁଡ଼ିକ ଉପରେ କଟକଣା ଜାରି ହେଲା । ୧୯୦୭ ମସିହାରେ ଲାଲା ଲଜପତ ରାୟ, ଅଜିତ

ସିଂହଙ୍କୁ ଦେଶାନ୍ତର ଆଦେଶ ହେଲା । ୧୯୦୮ ମସିହାରେ ବାଳ ଗଙ୍ଗାଧର ତିଳକଙ୍କୁ ଛ' ବର୍ଷର କାରାଦଣ୍ଡ ମିଳିଲା । ପୁଣି, ଏହି ସମୟରେ କଂଗ୍ରେସ ଦଳ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଏତେ ବୃଦ୍ଧି ପାଇଲା ଯେ, ଶେଷକୁ ୧୯୦୭ ମସିହାରେ ସୁରାଟ ବାର୍ଷିକ ଅଧିବେଶନବେଳେ ଦଳ ଭାଙ୍ଗିଗଲା । ୧୯୨୨ ମସିହା ପରେ ଅର୍ଥାତ୍ ଅସହଯୋଗ ଆନ୍ଦୋଳନ ପରେ ମଧ୍ୟ ସେହି ଏକା ରକମର ସ୍ଥିତି – କଂଗ୍ରେସ ଦଳ ଭିତରେ ଅନ୍ତର୍ବିବାଦ, ସରକାରଙ୍କ କଠୋର ଦମନ ନୀତି ଇତ୍ୟାଦି । ପରିଣାମ ସ୍ୱରୂପ ଆନ୍ଦୋଳନରେ ଭରସା ରଖି ଅଂଶ ଗ୍ରହଣ କରିଥିବା ଯୁବଗୋଷ୍ଠୀ ଧରିନେଲେ ଯେ, ଅହିଂସ ଆନ୍ଦୋଳନ ଦ୍ୱାରା କିଛି ଲାଭ ହେବନାହିଁ । ଏକମାତ୍ର ବିକଳ୍ପ ସହିଂସ ଆନ୍ଦୋଳନ । ୧୯୦୭-୦୮ ମସିହାରେ ଯେମିତି ସହିଂସ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ୧୯୨୨-୨୮ ମସିହାରେ ସେମିତି ଚନ୍ଦ୍ରଶେଖର ଆଜାଦ, ଭଗତ୍ ସିଂହ, ରାମ ପ୍ରସାଦ ବିସମିଲ୍ ଆଦିଙ୍କ ନେତୃତ୍ୱରେ କ୍ରାନ୍ତିକାରୀ ସଂଗ୍ରାମର ପୁନରାବୃତ୍ତି ହେଲା । ୧୯୩୦-୩୨ର ଆଇନ ଅମାନ୍ୟ ଆନ୍ଦୋଳନ ପରେ ସରକାର କଂଗ୍ରେସକୁ ବେଆଇନ ଘୋଷଣା କଲେ, ସତ୍ୟାଗ୍ରହୀଙ୍କ ଉପରେ ପୁଲିସ୍ ବେ-ହିସାବ ଲାଠିମାଡ଼ କଲେ । ଅନ୍ୟ ପକ୍ଷରେ କଂଗ୍ରେସର ଦାବି ମତେ ପୂର୍ଣ୍ଣ ସ୍ୱାଧୀନତା ଲାଭ ହେଲାନାହିଁ । ଫଳତଃ ୧୯୩୪ ମସିହାରେ ସୋସିଆଲିଷ୍ଟ ଆନ୍ଦୋଳନ ଆରମ୍ଭହେଲା । ପରେ କମ୍ୟୁନିଷ୍ଟ ଚେତନା ଦେଶର ଚାରିଆଡ଼େ ବୃଦ୍ଧି ପାଇଲା । ସୋସିଆଲିଷ୍ଟ ଓ କମ୍ୟୁନିଷ୍ଟ ଚେତନା ବୃଦ୍ଧି ପାଇଲା । ସୋସିଆଲିଷ୍ଟ ଓ କମ୍ୟୁନିଷ୍ଟମାନେ ଏଣିକି ଆଉ ହିଂସାତ୍ମକ ପନ୍ଥାର ପ୍ରୟୋଗକୁ ଅନୁଚିତ ମନେ କଲେନାହିଁ ।

ମୋଟ କଥା ହେଲା, ସହିଂସ ଆନ୍ଦୋଳନ ସେତେବେଳେ ଜରୁରୀ ହୋଇପଡ଼େ, ଯେତେବେଳେ ରାଜ୍ୟ-ରାଷ୍ଟ୍ର ବା ପ୍ରକାରାନ୍ତରେ କହିଲେ, ପ୍ରଶାସନ ଗଣତାନ୍ତ୍ରିକ ପନ୍ଥାରେ ଚାଲୁଥିବା ବାଦ-ପ୍ରତିବାଦକୁ ବେଖାତିର କରନ୍ତି, ସ୍ୱେଚ୍ଛାଚାରୀ ହୋଇ ପଡ଼ନ୍ତି, ଭଲରେ ଭଲରେ ଲୋକଙ୍କ କଥା ଶୁଣନ୍ତି ନାହିଁ । ଦ୍ୱିତୀୟତଃ, ଗଣତାନ୍ତ୍ରିକ ପନ୍ଥାରେ କାର୍ଯ୍ୟ କରୁଥିବା ରାଜନୈତିକ ଦଳମାନେ ସ୍ୱାର୍ଥପରତା ଯୋଗୁଁ ଜନସାଧାରଣଙ୍କ ଆସ୍ଥା ହରାନ୍ତି । ଲୋକ ଯେତେବେଳେ ଉଭୟ ପ୍ରଶାସନ ଓ ତଥାକଥିତ ଗଣତାନ୍ତ୍ରିକ ଦଳ ଓ କର୍ମୀ ଉପରେ ଭରସା ରଖି ପାରନ୍ତିନି, ସହିଂସ ଆନ୍ଦୋଳନ କରିବାକୁ ବାଧ୍ୟ ହୁଅନ୍ତି । ଅନ୍ୟଥା, ସହିଂସ ଆନ୍ଦୋଳନରେ ପ୍ରତିକ୍ଷଣରେ ପ୍ରାଣ ଯିବାର ଡର ଥାଏ । ପ୍ରାଣ ନ ଗଲେ ବି ସଦାବେଳେ ବଣଜଙ୍ଗଲରେ ଲୁଚିଛପି ରାଜନୈତିକ କାର୍ଯ୍ୟ କରିବା, ସବୁ ପ୍ରକାର ଆଧୁନିକ ସୁଖ ସୁବିଧାରୁ ବଞ୍ଚିତ ରହିବା କେବେ କମ୍ କଷ୍ଟକର ହୋଇ ନ ପାରେ । ଅନେକ ଅସୁବିଧା ସତ୍ତ୍ୱେ ଯଦି ଦଳେ

ଲୋକ ସହିଂସ ପନ୍ଥାକୁ ଆଦରନ୍ତି, ତା' ପଛରେ ଥିବା ମଜବୁରୀକୁ ସମାଜ ବୁଝିବା ଉଚିତ । ସେମାନଙ୍କୁ କେବଳ ଚୋର, ଖୁନିଙ୍କ ସାଙ୍ଗରେ ତୁଳନା କଲେ, ସମାଜ ପରିବର୍ତ୍ତନ ପ୍ରକ୍ରିୟା ନିଶ୍ଚିତ ରୂପେ ଅବୁଝା ରହିଯିବ । କେବଳ ଭାରତ ନୁହେଁ, ଅତୀତର ରୁଷିଆ, ଚୀନ୍ ଏବଂ ସମସାମୟିକ ଇରାକ, ନେପାଳ, ସବୁଠି ସହିଂସ ଆନ୍ଦୋଳନର ସେହି ଏକା କାହାଣୀ । ସ୍ଥାନ ଓ ପାତ୍ର ପରିବର୍ତ୍ତନ ହୁଅନ୍ତି, ମାତ୍ର ସବୁଠାରେ ସେହି ଗୋଟାଏ ଭୂମିକା– ଉତ୍ପୀଡ଼ନର ମାତ୍ରା ଅଧିକ ହେଉଥିବା ବେଳେ ଗଣତାନ୍ତ୍ରିକ ପନ୍ଥାରେ ସଂଘଟିତ ପ୍ରତିବାଦର ଯଦି ମୂଲ୍ୟ ନାହିଁ ତେବେ ଅତିଷ୍ଠ ଯୁବଗୋଷ୍ଠୀ ସକାଶେ ବିକଳ୍ପ ହେଲା ସହିଂସ ସଂଗ୍ରାମ ।

ଏହି ପରିପ୍ରେକ୍ଷୀରେ ଦେଖିବା କଥା ଯେ, ଖାସ୍ କରି ୧୯୯୦ ଦଶକର ଜଗତୀକରଣ ପ୍ରକ୍ରିୟା ପରଠାରୁ ଭାରତରେ ରାଜ୍ୟ-ରାଷ୍ଟ୍ରର ସ୍ୱରୂପରେ ଦ୍ରୁତ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି । ରାଷ୍ଟ୍ର ଗୋଟିଏ ପକ୍ଷରେ ଲୋକ ମଙ୍ଗଳକାରୀ ଚରିତ୍ରକୁ ତ୍ୟାଗ କରୁଛି ଏବଂ ଅନ୍ୟ ପକ୍ଷରେ ଅଧିକରୁ ଅଧିକ ସ୍ୱେଚ୍ଛାଚାରୀ ଏବଂ ପୁଲିସପ୍ରିୟ ହୋଇଚାଲିଛି । ସବୁ ସମସ୍ୟାର ସମାଧାନ ପାଇଁ ସାମରିକ ବଳ ଉପରେ ଆଶ୍ରୟ ନେବା ଦ୍ୱାରା ରାଜ୍ୟ-ରାଷ୍ଟ୍ରର ସ୍ୱେଚ୍ଛାଚାରିତା ବଢ଼େ । ମାନବିକ ଅଧିକାରର ସୁରକ୍ଷା ପ୍ରଶ୍ନଠାରୁ ଆରମ୍ଭ କରି ପଡ଼ୋଶୀ ଦେଶ ସହ ସଂପର୍କ ପ୍ରଶ୍ନ ଯାଏଁ- ସବୁ କଥାରେ ଆମେରିକାର ସମ୍ମତିକୁ ରାଷ୍ଟ୍ରର ନଜର ରହିଥାଏ । ଯଦି ଆମେରିକାର ଅସମ୍ମତି ନାହିଁ, ନାଗରିକ ଅଧିକାରର ଯେତେ ଉଲ୍ଲଂଘନ ହେଲେ ବି ଯେମିତି କାହାରି କିଛି କହିବାର ନାହିଁ । ଅନ୍ୟ ପକ୍ଷରେ ସବୁ କ୍ଷେତ୍ରରେ ପ୍ରଶାସନ ତୀବ୍ର ଭାବେ ବିଫଳ ଆଜି । ଥାନା, ଡାକ୍ତରଖାନା, କୋର୍ଟ, କଚେରି, ସରକାରୀ ଅଫିସ୍ ସବୁ ସରକାରୀ ଅର୍ଦ୍ଧସରକାରୀ ଅନୁଷ୍ଠାନ ସ୍ଥାଣୁ ଏବଂ ଦୁର୍ନୀତିଗ୍ରସ୍ତ । ଏକମାତ୍ର ଅଲିଖିତ ଏବଂ ସିଧା ସରଳ ନିୟମ ହେଲା, ଉପୁରି ଦେଇ କାମ କରାଅ । ବାହୁବଳ ପ୍ରଦର୍ଶନ କରି କାମ ହାସଲ କର । ହିଂସାପୂର୍ଣ୍ଣ ଉପାୟରେ ନୋହିଲେ ଉପୁରି ଦେଲେ ଠିକାଦାରର ବିଲ୍ ପାସ୍ ହୁଏ, ତାକୁ ନିୟମ ମୁତାବକ କାମ କରିବାକୁ ପଡ଼େନି । ଉପୁରି ଦେଲେ ଆସାମୀ ନିର୍ଦ୍ଦୋଷ ପ୍ରମାଣିତ ହୁଏ, ଚାକିରି ମିଳେ, ଚାକିରି ଜାଗାରୁ ବଦଳି ହୁଏ ବା ବଦଳି ବନ୍ଦ ହୁଏ ।

ଏ ଯେଉଁ ନୂଆ ସାମାଜିକ ସ୍ଥିତି- ସେଥିରେ ନିସ୍ୱ ଦରିଦ୍ର ଲୋକ ଦିନୁ ଦିନ ଦରିଦ୍ରତର ହୁଏ । ପିଢ଼ି ପିଢ଼ି ଧରି ହଳ ଯୋଚି ବଢ଼େଇ, ମଜୁରିଆ କାମ କରି ସୁଦ୍ଧା ସେ ଆଗକୁ ଉଠି ପାରେନା; ଅଥଚ ଦୁଇ ଚାରିଟି ଠିକାଦାରି ବା ଦୁଇ ତିନି ବର୍ଷ ଧରି କଣ୍ଟ୍ରୋଲ ଡିଲର ହୋଇ ଆଉ ଜଣେ ଦୁଇ ତିନି ମହଲା ଘର ତୋଳି

ପକାଏ । ସେହି ଆଞ୍ଚଳିକ ସମାଜର କ୍ରମବୃଦ୍ଧିମାନ ସାମାଜିକ ବୈଷମ୍ୟ ସାଧାରଣ ଲୋକଙ୍କୁ ବିଦ୍ରୋହୀ ଭାବେ ସଜାଏ । ବିପ୍ଳବୀ ସାଜିବାକୁ ସେମାନଙ୍କୁ ମାର୍କ୍ସଙ୍କ ପୃଥୁଳ ବହି ସବୁ ପଢ଼ିବାର ଦରକାର ପଡ଼େନା । ସେମାନଙ୍କ ଜୀବନ ହିଁ ଏକ ଖୋଲା ବହି, ଯାହାର ପ୍ରତି ପର୍ଦ୍ଦରେ ବିପ୍ଳବର ବାଣୀ ଗୁନ୍ଥା ହୋଇଛି । ତା' ସତ୍ତ୍ୱେ, ଏକଥା ସତ ଯେ, ସମସ୍ତେ ବିପ୍ଳବୀ ସାଜି ପାରନ୍ତିନି, ଅନେକ ମନ ମାରି ରହନ୍ତି । କେବଳ କିଛି ଲୋକ ବିଶେଷକରି ଯୁବଗୋଷ୍ଠୀର କିଛି ବ୍ୟକ୍ତି ଜୀବନକୁ ପାଣି ଛଡ଼େଇ ଆଗକୁ ଆସନ୍ତି । ନିଜର ପ୍ରାଣ ଦିଅନ୍ତି, ସାଙ୍ଗରେ ପ୍ରାଣ ନିଅନ୍ତି ମଧ୍ୟ । ସଂଖ୍ୟାଲଘୁ ହେବା ସତ୍ତ୍ୱେ ଲକ୍ଷ୍ୟ ପ୍ରତି ଦୃଢ଼ ପ୍ରତିବଦ୍ଧତା ରହିଥିବା ଯୋଗୁଁ ପ୍ରବଳ ପ୍ରତାପୀ ପ୍ରଶାସନକୁ ମଧ୍ୟ ଏମାନେ, କିଛି କାଳ ପାଇଁ ହେଉ ପଛେ, ହଲଚଲ କରିପକାନ୍ତି ।

ଏକଥା ସତ ଯେ, ପରବର୍ତ୍ତୀ ସମୟରେ ଅନେକ ସହିଂସ ଆନ୍ଦୋଳନ ଲକ୍ଷ୍ୟ ଭ୍ରଷ୍ଟ ହୁଅନ୍ତି । ଯେଉଁ ପ୍ରଶାସନର ବାହୁବଳକୁ ପ୍ରତିରୋଧ କରିବାକୁ ସେମାନେ ଦିନେ ଦୃଢ଼ ସଂକଳ୍ପବଦ୍ଧ ହୋଇଥିଲେ, କିଛି କାଳ ପରେ ନିଜେ ସେହି ବାହୁବଳକୁ ଆଶ୍ରା କରି ନିରୀହ ଓ ନିର୍ଦ୍ଦୋଷ ଆଗରେ ଉତ୍ପାତ କରନ୍ତି । କ୍ଷମତାର ବୈକଳ୍ପିକ କେନ୍ଦ୍ର ସାଜି ଭ୍ରଷ୍ଟତାକୁ ପ୍ରୋତ୍ସାହିତ କରନ୍ତି । ପୁଲିସର ଗୁଳି-ଗୋଳା ଦ୍ୱାରା ସମାଜ, ପରିବର୍ତ୍ତନର ପ୍ରକ୍ରିୟା ଯେତେ ବାଧାପ୍ରାପ୍ତ ହୁଏନି, ତା'ଠାରୁ ଅଧିକା ବାଧାପ୍ରାପ୍ତ ହୁଏ ଏହିଭଳି ପ୍ରତି-ବିପ୍ଳବୀ ଏବଂ ହିଂସାବାଦୀଙ୍କ କାର୍ଯ୍ୟକଳାପ ଯୋଗୁଁ । କିଛି ଗୋଟାଏ ପରିବର୍ତ୍ତନ ହେବ ବୋଲି ଆଶା ବାନ୍ଧିଥିବା ସାଧାରଣ ଜନତା ହଠାତ୍ ପୁଣି ଥରେ ଭରସା ଶୂନ୍ୟ ହୋଇପଡ଼େ । ଏଭଳି 'ଖାଲି ହିଂସାବାଦୀ', ବାହୁବଳ ପ୍ରଶାସନର 'ବିକଳ୍ପ' ନ ହୋଇ 'ରୂପାନ୍ତର' ମାତ୍ର ହୁଏ । ଫଳରେ ସାମୟିକ ଭାବେ ହେଉ ପଛେ, ବୈପ୍ଳବିକ ପରିବର୍ତ୍ତନର ପ୍ରକ୍ରିୟା ଢେର ମାତ୍ରାରେ କ୍ଷତିଗ୍ରସ୍ତ ହୁଏ । ଏସବୁ ସତ୍ତ୍ୱେ, ଏହି ଧରଣର ସହିଂସ ଜନଆନ୍ଦୋଳନର ପ୍ରାସଙ୍ଗିକତା ଊଣା ହୁଏନାହିଁ । ତା'ର ପ୍ରାସଙ୍ଗିକତା ଅତୀତରେ ରହିଥିଲା ଏବଂ ଭବିଷ୍ୟତରେ ବି ରହିବ— ଏକଥା ସ୍ୱତଃସିଦ୍ଧ ।

□□

# ଓଡ଼ିଶା ଜାତୀୟତା ଆନ୍ଦୋଳନର ବୈଶିଷ୍ଟ୍ୟ

ଆଧୁନିକ ବିଶ୍ୱର ପ୍ରତ୍ୟେକ ସମାଜରେ ଜାତୀୟତାବାଦ ହେଲା ରାଜନୀତିର ମୁଖ୍ୟ ସ୍ୱର । ମାତ୍ର ସବୁ ସମାଜରେ ଏହାର ଚରିତ୍ର ଏକା ନୁହେଁ । ଆଫ୍ରିକାରେ ଜାତୀୟତା ରଂଗଭେଦ ବିରୋଧୀ, ତ ୟୁରୋପରେ ଅନ୍ତତଃ ବିଂଶ ଶତାବ୍ଦୀର ମଧ୍ୟ ଯାକେ ଏହା ଉପନିବେଶବାଦର ପକ୍ଷଧର । ପୁଣି ଏସିଆରେ ଉପନିବେଶବାଦ ଓ ସାମ୍ରାଜ୍ୟବାଦର ବିରୋଧ ହେଲା ଏହାର ପ୍ରଧାନ ବୈଶିଷ୍ଟ୍ୟ । ଏହି କ୍ରମରେ ଭାରତର ଜାତୀୟତା ଆନ୍ଦୋଳନ ମଧ୍ୟ ବିବିଧତାପୂର୍ଣ୍ଣ । ତାର ମୁଖ୍ୟ ସ୍ୱର ବ୍ରିଟିଶ ଉପନିବେଶବାଦ ବିରୋଧୀ ହେବା ସାଂଗରେ ପ୍ରାନ୍ତୀୟ ସ୍ତରରେ ବିଶେଷତ୍ୱ ଭିନ୍ନ ଭିନ୍ନ । ପ୍ରାନ୍ତୀୟ ବୈଶିଷ୍ଟ୍ୟ ଜାତୀୟତା ଆନ୍ଦୋଳନକୁ ରଂଗଦିଏ, ଶକ୍ତି ଦିଏ, ବୁଦ୍ଧିମନ୍ତ କରାଏ । ଏହି ପରିପ୍ରେକ୍ଷୀରେ ଓଡ଼ିଶା 'ଜାତୀୟତା ଆନ୍ଦୋଳନର ବୈଶିଷ୍ଟ୍ୟ ଖୋଜିବା ନିଶ୍ଚିତ ରୂପେ ଆଗ୍ରହପୂର୍ଣ୍ଣ, ଆମୋଦପୂର୍ଣ୍ଣ ।

ଓଡ଼ିଶା ଆନ୍ଦୋଳନର ଏକ ବଡ଼ ବୈଶିଷ୍ଟ୍ୟ ହେଲା ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ତା'ର ଭାଷା-ସଂସ୍କୃତିକୁ ବିଲୁପ୍ତ ହେବାରୁ ରକ୍ଷା କରିବା । ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ ଓଡ଼ିଆ ଅଂଚଳମାନ ଥିଲେ ବିଭିନ୍ନ ପ୍ରଦେଶର ଶାସନାଧୀନ । ଦକ୍ଷିଣ ଯାଇ ମାଡ୍ରାସ ପ୍ରେସିଡେନ୍ସିରେ ତ ଉତ୍ତର ଓଡ଼ିଶା ଥିଲା ବଂଗରେ ପୁଣି ପଶ୍ଚିମ ରହିଲା କେନ୍ଦ୍ର ପ୍ରଦେଶରେ । କେଉଁଠି ଓଡ଼ିଆ କୋର୍ଟ କଚେରୀ ଭାଷା ନୁହେଁ ତ ପୁଣି କେଉଁଠି ତାକୁ ବଂଗଳାର ଉପଭାଷାର ଦରଜା ଦିଆଗଲାଣି । ରାଜନୈତିକ ବିଚ୍ଛିନ୍ନତା ଓଡ଼ିଆ ସମାଜ ତଥା ତାର ଆତ୍ମୀକ ପରିଚୟକୁ, ସମସ୍ତ ସାଂସ୍କୃତିକ ଏକାତ୍ମକତା ସତ୍ତ୍ୱେ, ଧ୍ୱଂସାଭିମୁଖୀ କଲା । ଆତ୍ମୀକ ସ୍ୱୀକୃତି ଦାବି କରି ମୁଣ୍ଡ ଟେକିଲା ଓଡ଼ିଆ ଭାଷା- ସଂସ୍କୃତି ଆନ୍ଦୋଳନ । ଏହି ପରିପ୍ରେକ୍ଷୀରେ ୧୯୦୩ ରେ 'ଉତ୍କଳ ସମ୍ମିଳନୀ'ର ସ୍ଥାପନା ଥିଲା ସ୍ଥାନୀୟ ଜାତୀୟତା ଆନ୍ଦୋଳନର ଏକ ବିଶିଷ୍ଟ ଉପଲବ୍ଧି । 'ସମ୍ମିଳନୀ'ର ପୂର୍ବସୂରୀ ରୂପେ ୧୮୮୦ ପରଠାରୁ ସଂସ୍ଥାପିତ କଟକର 'ଉତ୍କଳ ସଭା', ବାଲେଶ୍ୱରର 'ନେସନାଲ୍ ସୋସାଇଟି' ତଥା ପାରଳାଖେମୁଣ୍ଡିର 'ଉତ୍କଳ ହିତୈଷିଣୀ ସଭା'କୁ ଦେଖାଯାଇପାରେ । ସବୁଯାକ

ଆଞ୍ଚଳିକ ସ୍ତରର ଜାତୀୟ ସଂଗଠନ 'ସମ୍ମିଳନୀ'ର ଅଂଗ ହେଲେ, 'ସମ୍ମିଳନୀ'କୁ 'ଜାତୀୟ ମହାସଭା'ର ରୂପ ଦେଲେ । ଫଳରେ ଉତ୍କଳ ସମ୍ମିଳନୀ ଓଡ଼ିଶା ଜାତୀୟତା ଆନ୍ଦୋଳନର ମୁଖ୍ୟ ସ୍ରୋତ ହେଲା ।

ଓଡ଼ିଆ ଆନ୍ଦୋଳନ ଆଞ୍ଚଳିକ ଦାବିକୁ ପ୍ରମୁଖତା ଦେବା ସତ୍ତ୍ୱେ କଦାପି ମହାଭାରତୀୟ ଜାତୀୟତାର ପରିପନ୍ଥୀ ନଥିଲା । କଂଗ୍ରେସ ଅଧିବେଶନରେ ଓଡ଼ିଶା ପ୍ରତିନିଧି ଭାଗ ନେଉଥିଲେ ତଥା 'ଉତ୍କଳ ଦୀପିକା', 'ସମ୍ବଲପୁର ହିତୈଷିଣୀ', 'ସଂବାଦ ବାହିକା' ଆଦି ଓଡ଼ିଆ ପତ୍ରିକାରେ ମହାଭାରତୀୟ ସମସ୍ୟାଗୁଡ଼ିକ ଉପରେ ଟିକାଟିପ୍ପଣୀ ହେଉଥିଲା । ଏପରିକି ଉତ୍କଳ ସମ୍ମିଳନୀର ଆବାହନୀ ସଂଗୀତର ଶୀର୍ଷ ପଦ ଥିଲା- 'ସର୍ବେ ସାଂ ନୋ ଜନନୀ ଭାରତ... ।' ଭାରତ ଜନନୀରୁ ବିଚ୍ଛିନ୍ନ ହୋଇ ଓଡ଼ିଆ ଆନ୍ଦୋଳନ କସ୍ମିନ୍‌କାଳେ ସ୍ୱ-ଭାଷା ସଂସ୍କୃତିର ସୁରକ୍ଷା କଥା ଚିନ୍ତା କରୁ ନଥିଲା ।

ଉତ୍କଳ ସମ୍ମିଳନୀ ବିଭିନ୍ନ ଆଂଚଳିକ ସଂଗଠନର ମୁଖ୍ୟ ସ୍ରୋତ ହେବା ସାଙ୍ଗକୁ ଭିନ୍ନ ଭିନ୍ନ ରାଜନୈତିକ ସ୍ୱରର ସମୂହରୂପ ଭାବରେ ମଧ କାର୍ଯ୍ୟ କରୁଥିଲା । ସମ୍ମିଳନୀରେ ମଧୁସୂଦନ ଦାସ, ଗୌରୀଶଙ୍କର ରାୟ, ବିଶ୍ୱନାଥ କରଙ୍କ ପରି ଜାତୀୟତାବାଦୀ ବୁଦ୍ଧିଜୀବୀ ଥିଲେ ସତ; ମାତ୍ର ପ୍ରଭୁତ୍ୱ ଥିଲା ରାଜା-ରାଜୁଡ଼ାଙ୍କର । ରାଜା-ରାଜୁଡ଼ା ଗୋଷ୍ଠୀ ଆନ୍ଦୋଳନକୁ ପାଣ୍ଠି ଯୋଗାଉଥିଲେ, ସମ୍ମିଳନୀ ଅଧିବେଶନରେ ସଭାପତି, ଉପଦେଷ୍ଟା ହୋଇ ପୁଣି କାର୍ଯ୍ୟ ନିର୍ବାହ କରୁଥିଲେ । ସେମାନେ ଥିଲେ ଶିକ୍ଷିତ 'ଆଧୁନିକ ବିଚାରବନ୍ତ', ପୁଣି ଅନ୍ୟ ପକ୍ଷରେ ଅତ୍ୟାଚାରୀ, ପ୍ରଜାପୀଡ଼କ, ବ୍ରିଟିଶ ଅନୁଗତ । ଫଳରେ ଆନ୍ଦୋଳନ ନା ବ୍ରିଟିଶ୍ ବିରୋଧୀ ହୋଇ ପାରୁଥିଲା, ନା ହୋଇ ପାରିଲା ଜନାଭିମୁଖୀ । ଅନ୍ୟପକ୍ଷରେ ପଡ଼ୋଶୀ ବଙ୍ଗଳା ଓ ବଙ୍ଗାଳିଙ୍କୁ ଓଡ଼ିଶାର ସବୁ ଦୁଃଖର କାରଣ ବୋଲି ଗଣିଲା । ମୋଟ ଉପରେ ରାଜା-ରାଜୁଡ଼ାଙ୍କ ପ୍ରଭୁତ୍ୱ ଯୋଗୁଁ ଅନ୍ତତଃ ୧୯୨୦ ମସିହା ପର୍ଯ୍ୟନ୍ତ ଓଡ଼ିଆ ଆନ୍ଦୋଳନର ସ୍ୱାଭାବିକ ଜାତୀୟ ଆବେଗ ଅବରୁଦ୍ଧ ହେଲା । ଫଳରେ ଜାତୀୟ କଂଗ୍ରେସ ଓ ଉତ୍କଳ-ସମ୍ମିଳନୀ ମଧ୍ୟରେ ବିଭେଦ ବୃଦ୍ଧି ପାଇଲା ।

ଏହି ସଂଦର୍ଭରେ ଗୋପବନ୍ଧୁ ଦାସ ଓ ସତ୍ୟବାଦୀ ଗୋଷ୍ଠୀ ଓ ପରେ ହରେକୃଷ୍ଣ ମହତାବ ଆଦିଙ୍କ ରାଜନୈତିକ ଉତ୍ଥାନ ଥିଲା ରାଜା-ରାଜୁଡ଼ାଙ୍କ ପ୍ରଭୁତ୍ୱ ବିରୁଦ୍ଧରେ ଏକ ଦୃଢ଼ ଲୋକମତ । ସତ୍ୟବାଦୀ ଗୋଷ୍ଠୀ 'ସମ୍ମିଳନୀ'ରୁ ବାହାରି ଗଲେ ନାହିଁ, ବରଂ ତା ଭିତରେ ରହି ସାମନ୍ତବାଦୀ ପ୍ରଭୁତ୍ୱର ତୀବ୍ର ବିରୋଧ କଲେ ଏବଂ ଶେଷକୁ ୧୯୨୦ରେ ସମ୍ମିଳନୀକୁ ଜାତୀୟ କଂଗ୍ରେସରେ ସାମିଲ କଲେ । ଏଣିକି ଓଡ଼ିଆ ଆନ୍ଦୋଳନ ଯେତେ ମାତ୍ରାରେ ଭାଷା-ସଂସ୍କୃତି ପାଇଁ ଲଢ଼ିଲା, ତତୋଦ୍ଧିକ ମାତ୍ରାରେ

ଲଢ଼ିଲା ବ୍ରିଟିଶରାଜ ବିରୁଦ୍ଧରେ । ଓଡ଼ିଶାରେ ଆରମ୍ଭ ହେଲା ଅସହଯୋଗ ଆନ୍ଦୋଳନ, ଆଗକୁ ବଢ଼ିଲା ଓଡ଼ିଶା ଆନ୍ଦୋଳନ- ଗୋଟାଏ ମୁଦ୍ରା, ଦୁଇଟି ପାର୍ଶ୍ୱ ।

୧୯୨୦ ପରଠାରୁ ସାମନ୍ତବାଦର ବିରୋଧ ହେଲା ଓଡ଼ିଶା ଜାତୀୟତା ଆନ୍ଦୋଳନର ଏକ ବିଶେଷ ଚରିତ୍ର । ସର୍ବଭାରତୀୟସ୍ତରରେ ଅନ୍ତତଃ ୧୯୩୭ ଯାଏ କଂଗ୍ରେସ ସାମନ୍ତବାଦ ବିରୋଧୀ ଦେଶୀୟ ପ୍ରଜା ଆନ୍ଦୋଳନଗୁଡ଼ିକୁ ପ୍ରତ୍ୟକ୍ଷ ସମର୍ଥନ ଦେଇ ପାରୁ ନଥିଲା; ମାତ୍ର ଓଡ଼ିଶା ରାଜନୀତିର ସ୍ଥିତି ବିପରୀତ । ଆରମ୍ଭରୁ ରାଜା-ରାଜୁଡ଼ା ଏଠି ଆନ୍ଦୋଳନର ନେତା । ତାଙ୍କ ପ୍ରଭୁତ୍ୱକୁ ସାମନା ନ କରି, ନା ଜାତୀୟ ଆନ୍ଦୋଳନର ନେତୃତ୍ୱ ନେଇ ହେବ, ନା ଆନ୍ଦୋଳନକୁ ଜନାଭିମୁଖୀ, ବ୍ରିଟିଶ ବିରୋଧୀ କରିହେବ । ତେଣୁ ପ୍ରଥମରୁ ଯୁବ ସତ୍ୟବାଦୀ ଗୋଷ୍ଠୀ ସାମନ୍ତବାଦ ବିରୋଧୀ । ଗୋପବନ୍ଧୁ ଅତ୍ୟାଚାରୀ ରାଜା-ଜମିଦାରଙ୍କୁ ମାଂସଲୋଭୀ 'ବାଜ' ଓ ପ୍ରପୀଡ଼ିତ ପ୍ରଜାବର୍ଗଙ୍କୁ ନିରୀହ 'ପାରା' ସହ ତୁଳନା କରୁଥିଲେ । କଂଗ୍ରେସ କର୍ମୀଙ୍କ ସକ୍ରିୟ ଭାଗିଦାରୀ ଯୋଗୁଁ ୧୯୨୧ରେ କନିକାରେ 'ଅସହଯୋଗ' ପ୍ରଜା ଆନ୍ଦୋଳନର ଆକାର ନେଲା । କନିକା ଆନ୍ଦୋଳନର ସହଭାଗୀ ହେବା ଅପରାଧରେ ୧୯୨୨ରେ ଗୋପବନ୍ଧୁ ଜେଲ୍ ଗଲେ । ନୀଳଗିରି, ଢେଙ୍କାନାଳ, ତାଳଚେର ଆଦି ଦେଶୀୟ ଆନ୍ଦୋଳନରେ ମଧ୍ୟ କଂଗ୍ରେସ କର୍ମୀଙ୍କ ସକ୍ରିୟ ହାତ । ଅବଶ୍ୟ ପରେ ଦେଶୀୟ ଆନ୍ଦୋଳନର ଅନେକ କଂଗ୍ରେସ କର୍ମୀ ଅନ୍ୟ ଦଳ ଗଢ଼ିଲେ, ସାମ୍ୟବାଦୀ-ସମାଜବାଦୀ ହେଲେ ।

ଓଡ଼ିଶା ଆନ୍ଦୋଳନର ଅନ୍ୟ ଏକ ବିଶିଷ୍ଟ ଉପଲବ୍ଧି ହେଲା 'ସତ୍ୟବାଦୀ' । ଗାନ୍ଧୀଙ୍କ ସାବରମତୀ ଆଶ୍ରମ ପ୍ରତିଷ୍ଠାର ଦୀର୍ଘ ଆଠ ବର୍ଷ ପୂର୍ବରୁ ୧୯୦୯ରେ ସ୍ଥାପିତ 'ସତ୍ୟବାଦୀ' କେବଳ ଏକ ବିଦ୍ୟାଳୟ ନ ଥିଲା । ବ୍ୟକ୍ତି ସ୍ୱାର୍ଥର ଊର୍ଦ୍ଧ୍ୱରେ 'ସମୂହ' ନିମନ୍ତେ ଉତ୍ସର୍ଗୀକୃତ କତିପୟ ଉଚ୍ଚଶିକ୍ଷିତ ନବଯୁବକଙ୍କ ଏହା ଥିଲା ଏକ ଦୃଢ଼ ଉଦ୍ୟମ । ଜାତୀୟତା ଆନ୍ଦୋଳନର ପ୍ରମୁଖ କେନ୍ଦ୍ର, ସମାଜ ସଂସ୍କାରର ପୀଠ, ବନ୍ୟା-ବାତ୍ୟା ବେଳର ରିଲିଫ୍ କେନ୍ଦ୍ର ଏବଂ ସର୍ବୋପରି 'ସମାଜ' ଓ 'ସତ୍ୟବାଦୀ' ପତ୍ରିକାର ପ୍ରକାଶନ ସ୍ଥଳ ରୂପରେ ଓଡ଼ିଆ ସାମ୍ବାଦିକତାର ଏକ ଆଦ୍ୟଭୂମି । ମୋଟ ଉପରେ 'ସତ୍ୟବାଦୀ'ର ସ୍ଥାପନା ଆଧୁନିକ ଓଡ଼ିଆ ସାହିତ୍ୟ, ରାଜନୀତି ଓ ସମାଜ ଗଠନ ପ୍ରକ୍ରିୟାକୁ ଏକ ନୂଆ ମୋଡ଼ ଦେଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ଏସବୁକୁ ବାଦ ଦେଲେ, ସର୍ବଭାରତୀୟ ସ୍ତରରେ ମଧ୍ୟ 'ସତ୍ୟବାଦୀ'ର ସ୍ଥାପନା କିଛି କମ୍ ମହତ୍ୱପୂର୍ଣ୍ଣ ନୁହେଁ । ୧୯୧୭ରେ ଗାନ୍ଧୀ ସାବରମତୀ ଆଶ୍ରମ ଆରମ୍ଭ କଲେ । ଭାରତୀୟ ପରଂପରାର ଆଶ୍ରମ ପରିବର୍ତ୍ତିତ ପରିସ୍ଥିତିରେ ବ୍ରିଟିଶ ବିରୋଧୀ ଆନ୍ଦୋଳନର ପ୍ରେରଣା ସ୍ଥଳ ହେଲା, ନବ କଳେବର ପାଇଲା । ଏଣିକି ସତ୍ୟ-ଅହିଂସା ଆଧାରିତ 'ସତ୍ୟାଗ୍ରହ' ଭାରତୀୟ ଜାତୀୟତାର ମହାମନ୍ତ୍ର ହେଲା । ତା'ର ଉତ୍ସରୂପେ ସାବରମତୀକୁ ପ୍ରତିଷ୍ଠା ମିଳିଲା । ଏହି ପରିପ୍ରେକ୍ଷୀରେ 'ସତ୍ୟବାଦୀ'କୁ

ସାବରମତୀ ଓ ସତ୍ୟାଗ୍ରହର ପୂର୍ବସୂରୀ ରୂପେ ଦେଖାଯାଇପାରେ । ପ୍ରାନ୍ତୀୟ ସ୍ତରରେ ଏହା ପ୍ରଚାର କଲା ଯେ, ରାଜନୈତିକ ପନ୍ଥା ଓ ପରିଣାମ ମଧ୍ୟରେ ସମନ୍ୱୟ ଆବଶ୍ୟକ । ତେଣୁ ଆନ୍ଦୋଳନର ପନ୍ଥା ସତ୍ୟ-ଅହିଂସା ଆଧାରିତ ହେଲେ ଯାଇ ପରିଣାମ ମହତ ହେବ । ଭାରତ ଭୂମିରେ ସାବରମତୀ ଓ ସତ୍ୟାଗ୍ରହର ବ୍ୟାପକ ଜନପ୍ରିୟତାର ଯଦି କେବେ କାରଣ ଖୋଜାଯାଏ, 'ସତ୍ୟବାଦୀ' ପରି ଆଞ୍ଚଳିକ ସ୍ତରର ପୂର୍ବସୂରୀକୁ ବାଦ ଦେଇ ତାହା ସଂଭବ ହେବ ନାହିଁ ।

ଓଡ଼ିଶା ଆନ୍ଦୋଳନର ଆଉ ଏକ ବିଶେଷତ୍ୱ ହେଲା- ନେତୃବୃନ୍ଦଙ୍କ ସାହିତ୍ୟ-ସୃଜନ । ଟଲଷ୍ଟୟ, ପ୍ରେମଚାନ୍ଦ ଆଦି ମହାନ୍ ସାହିତ୍ୟିକ ହେବା ସାଙ୍ଗରେ ନୂଆ ରାଜନୀତିର ପକ୍ଷଧର, ମାତ୍ର ଆନ୍ଦୋଳନର ଆଗୁଆ ନେତା ନୁହନ୍ତି । ଠିକ୍ ସେପରି ଗାନ୍ଧି, ନେହେରୁ ଆଦି ଆଗୁଆ ନେତା, ସୃଜନଶୀଳ ମଧ, ମାତ୍ର ରାଜନୀତିର ବ୍ୟସ୍ତତା ତାଙ୍କୁ ଗୀତି-କବିତା ଲେଖିବାର ସୁଯୋଗ ଦେଇନାହିଁ । ରାଜନୀତି ଛାଡ଼ିବା ପରେ ଯାଇ ଅରବିନ୍ଦଙ୍କ 'ସାବିତ୍ରୀ' ମହାକାବ୍ୟର ସୃଷ୍ଟି; କିନ୍ତୁ ଏସବୁରୁ ଓଡ଼ିଶା ଆନ୍ଦୋଳନ ଏକ ବ୍ୟତିକ୍ରମ । ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ହରେକୃଷ୍ଣ ମହତାବ ଆଦି ତା'ର ଆଗୁଆ ନେତା; ସାହିତ୍ୟରେ ମଧ ସେମାନେ ଆଗଧାଡ଼ିରେ । ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ 'ସତ୍ୟବାଦୀ' ଓଡ଼ିଆ ସାହିତ୍ୟର ଏକ ନୂଆ ଯୁଗକୁ ବୁଝାଏ । ଗୋପବନ୍ଧୁ ଦାସଙ୍କ 'ଧର୍ମପଦ' କେବଳ ବଢ଼େଇ-କମାର ପରି ଖଟିଖିଆ ଶ୍ରେଣୀର ଜଣେ ପ୍ରତିନିଧି ନୁହେଁ, ସାଙ୍ଗରେ 'ସମୂହ' ସକାଶେ ଆତ୍ମୋତ୍ସର୍ଗ କରିଥିବା ଜଣେ ନବଯୁବକ, ଆଗାମୀ ପିଢ଼ିର ବାର୍ତ୍ତାବହ । ତାଙ୍କ 'ନଚିକେତା ଉପାଖ୍ୟାନ'ର ନଚିକେତା ନିର୍ଭୟ, ନିଡ଼ର, କାରଣ ସେ ସତ୍ୟାନ୍ୱେଷୀ, ସତ୍ୟବାଦୀ, ସତ୍ୟସାଧକ । ଓଡ଼ିଆ ଲେଖାକୁ ସରଳ କରିବା ପାଇଁ ଶବ୍ଦରେ ଅନୁସ୍ୱାରର ବ୍ୟାପକ ପ୍ରୟୋଗ ନୀଳକଣ୍ଠଙ୍କ ଦୃଢ଼ ଯୁକ୍ତି ଯୋଗୁଁ ଆଜି ସମ୍ଭବ ହୋଇଛି । ଯେତେ ପରିଚିତ ସେ ଜଣେ ରାଜନୈତିକ ନେତା ଭାବରେ ତା'ଠାରୁ ଅଧିକ ପରିଚିତ ଜଣେ ମୌଳିକ ଭାଷାବିଜ୍ଞାନୀ ଭାବରେ । 'ସତ୍ୟବାଦୀ' ସାହିତ୍ୟର ବିଶେଷତ୍ୱ ସରଳ ଭାଷା, ସ୍ୱଚ୍ଛ ଭାବ । ଏହାର ପ୍ରତିଫଳନ ଓଡ଼ିଆ ଆନ୍ଦୋଳନରେ ମଧ ସୁସ୍ପଷ୍ଟ । ତେଣୁକରି ଓଡ଼ିଶା ଜାତୀୟତା ଆନ୍ଦୋଳନର କାର୍ଯ୍ୟକ୍ରମଗୁଡ଼ିକରେ ନୂଆ ନୂଆ ପ୍ରୟୋଗ, ସ୍ୱ-ନିଷ୍ପତ୍ତିରେ ତାହା ସାମନ୍ତବାଦର ବିରୋଧ ।

ପ୍ରତ୍ୟେକ ଐତିହାସିକ ଘଟଣାର ବିଶ୍ୱରୂପ ଥାଏ, କିଛି ନା କିଛି ଆଂଚଳିକ ବୈଶିଷ୍ଟ୍ୟ ରହିଥାଏ । ଗୋଟାଏ ଦୃଷ୍ଟିରୁ ତାହା ଏକ ବଡ଼ ଘଟଣାର ଅଂଶ, ଅନ୍ୟ ଏକ ଦୃଷ୍ଟିରୁ ସ୍ୱତନ୍ତ୍ର, ସ୍ୱାଧୀନ । ଇତିହାସ ଦୃଷ୍ଟିରେ ନା ଏହା ଆତ୍ମୋଚନର ପ୍ରସଂଗ ନା ପରିତାପର ପ୍ରଶ୍ନ; ମାତ୍ର ଆମ ସ୍ୱାଧୀନତାର ଅନେକ ଦଶଂଧି ପରେ ଦେଖିବା କଥା, ସେହି ବୈଶିଷ୍ଟ୍ୟଗୁଡ଼ିକ ଓଡ଼ିଶା ରାଜନୀତିରେ ଆଜି କେତେ କ୍ଷତ ବା ଅକ୍ଷତ ।



# ଆଧୁନିକ ଇତିହାସର ପୃଷ୍ଠଭୂମିରେ ସଂବଲପୁର : ଏକ ଆଲୋଚନା

ପ୍ରତ୍ୟେକ ସମାଜ ବା ବ୍ୟକ୍ତିର ସାମାଜିକ ବୈଶିଷ୍ଟ୍ୟ ଅଛି, ଐତିହାସିକ ମହତ୍ତ୍ୱ ରହିଛି । ଏକ ବୃହତ୍ତର ସମାଜ ଗଠନ ପ୍ରକ୍ରିୟାରେ ତାର ଭୂମିକାକୁ କଦାଚିତ ଗୌଣ ମନେ କରାଯାଇ ନପାରେ । ପ୍ରତ୍ୟେକ ପରିଘଟଣା ଯେହେତୁ ଏକାଧିକ କାରଣ ଯୋଗୁଁ ସଂଘଟିତ ହୁଏ, ଏକ ନିର୍ଦ୍ଦିଷ୍ଟ କାରଣକୁ 'ମୁଖ୍ୟ' ଏବଂ ଅନ୍ୟକୁ 'ଗୌଣ' ଆଖ୍ୟା ଦିଆଯାଇ ନ ପାରେ । ଏକ ସମଷ୍ଟିର ସାମଗ୍ରିକ ଇତିହାସରୁ 'ବର୍ତ୍ତମାନ'ର ଜନ୍ମ । ତେଣୁ ସମଷ୍ଟିର ପ୍ରତ୍ୟେକ ଉପାଦାନ, ସେ ବ୍ୟକ୍ତି ସ୍ତରରେ ହୁଅନ୍ତୁ ବା ଆଂଚଳିକ ସମାଜ ସ୍ତରରେ ହେଉ, 'ବର୍ତ୍ତମାନ'ର ଗଠନରେ ଯଥୋଚିତ ଭୂମିକା ନିର୍ବାହ କରନ୍ତି । ଅନ୍ୟ ଅର୍ଥରେ, ଅଂଚଳଗୁଡ଼ିକର ସାମଗ୍ରିକ ଇତିହାସର ସମଷ୍ଟିକୁ ହିଁ ବିଶ୍ୱ ଇତିହାସ ନାମରେ ପରିଭାଷିତ କରାଯାଇପାରେ । ଏହି ପରିପ୍ରେକ୍ଷୀରେ ସଂବଲପୁରର ଐତିହାସିକ ବୈଶିଷ୍ଟ୍ୟ ନେଇ ଆଲୋଚନା କଦାପି ନିରର୍ଥକ ହୋଇ ନ ପାରେ ।

ଆଧୁନିକ ଇତିହାସର କାଳଖଣ୍ଡରେ ସଂବଲପୁର କେବଳ ନିଜ ଅସ୍ମିତା ରଖିନି; ବରଂ ବୃହତ୍ତର ଓଡ଼ିଶା ଏବଂ ଭାରତ ସମାଜକୁ ମଧ୍ୟ ପରିଚିତି ଦେବାରେ ସହଯୋଗ କରିଛି । ରାଷ୍ଟ୍ରଗଠନ ପ୍ରକ୍ରିୟାରେ ତା' ଯୋଗଦାନରୁ ସିଦ୍ଧ ହୁଏ ଯେ, ତାହା ଅନ୍ୟମାନଙ୍କଠାରୁ କୌଣସି ଗୁଣରେ କମ୍ ନୁହେଁ । ସର୍ବଭାରତୀୟ ସ୍ତରରେ ଓଡ଼ିଶାକୁ ଏକ ସମ୍ମାନନୀୟ ସ୍ଥିତି ମିଳିବାରେ ସଂବଲପୁରର ଭୂମିକାକୁ କଦାପି ଉପେକ୍ଷା କରାଯାଇ ନ ପାରେ ।

ପ୍ରଥମତଃ, ସୁରେନ୍ଦ୍ର ସାଏଙ୍କ ବ୍ରିଟିଶ ବିରୋଧୀ ସଂଗ୍ରାମକୁ ଲକ୍ଷ୍ୟ କରାଯାଇପାରେ । ୧୮୨୭ ମସିହାରୁ ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ୧୮୮୪ ମସିହା ଯାକେ କେବେ ଜେଲ୍‌ରେ ରହି ତ, ଆଉ କେବେ ଗୋପନରେ ରହି ସୁରେନ୍ଦ୍ର ସାଏ ବ୍ରିଟିଶ ଶାସନର ବିରୁଦ୍ଧାଚରଣ କରିଛନ୍ତି ।[୧] ତାଙ୍କର ସଂଗ୍ରାମକୁ ଏକ ବ୍ୟକ୍ତିର ବିରୋଧ

ରୂପେ ନ ଦେଖି ଏକ ରାଜନୈତିକ ପ୍ରକ୍ରିୟା ରୂପେ ବିଶ୍ଳେଷଣ କରିବାର ଆଜି ଯଥେଷ୍ଟ ଅବକାଶ ରହିଛି । ବ୍ରିଟିଶ ଉପନିବେଶବାଦ ଭାରତର ସମସ୍ତ ଅଂଚଳକୁ କରଗତ କରିବା ପାଇଁ ସ୍ଥାନୀୟ ପରଂପରାଗୁଡ଼ିକୁ ତୀବ୍ର ରୂପେ ଉପେକ୍ଷା କଲା । ଫଳରେ ଯେଉଁ ଜନଅସନ୍ତୋଷ କେନ୍ଦ୍ରୀଭୂତ ହେଲା, ସୁରେନ୍ଦ୍ର ସାଏ ତା'ର ପ୍ରତିନିଧିତ୍ୱ ମାତ୍ର କରୁଥିଲେ । ବ୍ୟକ୍ତିଗତ ସ୍ତରରେ ସଂବଲପୁର ରାଜଗାଦି ପାଇଁ ଲଢୁଥିବା ସୁରେନ୍ଦ୍ର ସାଏଙ୍କ ଆହ୍ୱାନରେ ଘେଁସ, କୋଲାବିରା, ଲଖନପୁର, ପାହାଡ଼ଶ୍ରୀଗିଡ଼ା ଆଦିର ଜମିଦାର ଓ ସେମାନଙ୍କ ପରିବାର ବର୍ଗ ପ୍ରାଣପାତ ସୁଦ୍ଧା କରିବାକୁ ପଛଘୁଞ୍ଚା ଦେଇ ନାହାନ୍ତି । ଘେଁସ ଜମିଦାର ହଟେ ସିଂକୁ ସୁରେନ୍ଦ୍ର ସାଏଙ୍କର ଏକ ବିଶ୍ୱସ୍ତ ସେନାପତି ରୂପେ କେବଳ ଦେଖାଯାଇ ନ ପାରେ । ବରଂ ଓଡ଼ିଶାରୁ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ସଂଗ୍ରାମ କରି ଦୀପାନ୍ତର ଦଣ୍ଡ ଭୋଗିଥିବା ତଥା 'କଳାପାଣି'ରେ ପ୍ରାଣତ୍ୟାଗ କରିଥିବା ପ୍ରଥମ ଓ ବୋଧହୁଏ ଶେଷ ଓଡ଼ିଆ ସେ ।'

ସମଗ୍ର ପଶ୍ଚିମ ଓଡ଼ିଶାରେ ସୁରେନ୍ଦ୍ର ସାଏ ହେଲେ ଜଣେ କିମ୍ବଦନ୍ତୀ ପୁରୁଷ । କେଉଁ ଗାଁରେ ସେ ରାତ୍ରି ଯାପନ କରିବାର କିମ୍ବଦନ୍ତୀ ପ୍ରଚଳିତ, ତ ଆଉ କେଉଁ ଗାଁରୁ ଘୋଡ଼ା ନେଇ ରଣାଙ୍ଗନକୁ ଯାଇଥିଲେ ବୋଲି ଗାଁ ଗର୍ବିତ ।[୩] ମନେହୁଏ, ପ୍ରତ୍ୟେକ ଗାଁ ଓ ସମାଜ ନିଜକୁ ତାଙ୍କ ସଂଗେ ଯୋଡ଼ିବା ପାଇଁ ପ୍ରଚେଷ୍ଟାରତ । ଠିକ୍ ଏକ ମାତ୍ରାରେ ଖଳନାୟକ ହୁଏ ଦୟାନିଧି ମେହେର ଯିଏ ସୁରେନ୍ଦ୍ର ସାଏଙ୍କ ସହ ବିଶ୍ୱାସଘାତ କରି ତାଙ୍କୁ ବ୍ରିଟିଶ ହାତରେ ଧରେଇ ଦେଇଥିଲା । ଆଜି ଲୌକିକ ସ୍ତରରେ ଦୟାନିଧି ମେହେର 'ଜୟଚନ୍ଦ୍ର', 'ମିରଜାଫର' ପରି ଏକ ସାହିତ୍ୟିକ ଉପମା । ଏସବୁକୁ ବାଦ ଦେଲେ ଅନେକ ଲୋକଗୀତ ଓ ଲୋକକଥା ମଧ୍ୟ ସୁରେନ୍ଦ୍ର ସାଏ ଏବଂ ତାଙ୍କ ସହଯୋଗୀଙ୍କୁ ନେଇ । ଏହା ସଂଗ୍ରାମର ଜନପ୍ରିୟତାକୁ ପ୍ରମାଣିତ କରେ ।[୪] ଏହି ସଂଦର୍ଭରେ ସୁରେନ୍ଦ୍ର ସାଏଙ୍କ ସଂଗ୍ରାମକୁ ଗଣସଂଗ୍ରାମ ମଧ୍ୟ କୁହାଯାଇପାରେ । ୧୮୫୭ର ମହାସଂଗ୍ରାମ ଯେତେବେଳେ ବ୍ରିଟିଶ ସାମ୍ରାଜ୍ୟର ଭିତ୍ତିକୁ ଦୋହଲାଇ ଦେଲା, ସମ୍ବଲପୁର ବି ତାର ଦାୟିତ୍ୱ ନିର୍ବାହ କରିଛି, ଚୁପ୍ ରହିନି । ମହାସଂଗ୍ରାମର ଅନ୍ୟ ବିଦ୍ରୋହୀମାନଙ୍କ ସହ ସୁରେନ୍ଦ୍ର ସାଏଙ୍କର ନା ସାଂଗଠନିକ ସଂପର୍କ ଥିଲା ନା ସେ କୌଣସି ସହାୟତା ପାଇଥିଲେ ବାହାରୁ । ତା' ସତ୍ତ୍ୱେ ତାଙ୍କ ଯୋଗୁଁ ଓଡ଼ିଶାକୁ ସେହି ମହାନ୍ ସଂଗ୍ରାମର ସହଭାଗୀ ହେବାର ଅବସର ମିଳିଛି, ଏହା କିଛି କମ୍ ସ୍ୱାଭିମାନର କଥା ନୁହେଁ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରାଜନୀତିର ରଂଗରୂପ ବଦଳିଲା । ଇଂରେଜ ବିରୋଧୀ ସଂଗ୍ରାମର ପଛାରେ ପରିବର୍ତ୍ତନ ଦେଖାଗଲା ଓ ଦେଶରେ

ଆଧୁନିକ ରାଷ୍ଟ୍ରୀୟ ରାଜନୀତିର ଅୟମାରମ୍ଭ ହେଲା । ରାଜା ଜମିଦାରଙ୍କ ବଦଳରେ ଶିକ୍ଷିତ ବୁଦ୍ଧିଜୀବୀ ଗୋଷ୍ଠୀ ଏଣିକି ରାଜନୀତିର ମୁଖ୍ୟ କର୍ତ୍ତା ହେଲେ । ସଶସ୍ତ୍ର ସଂଗ୍ରାମ ପରିବର୍ତ୍ତେ ଏଣିକି ସେମାନେ ନିରସ୍ତ୍ର ବା ଅହିଂସ ଆନ୍ଦୋଳନକୁ ଗୁରୁତ୍ୱ ଦେଲେ । ସେହି ପନ୍ଥା ମାଧ୍ୟମରେ ଉପନିବେଶବାଦୀ ଶାସନର ବିରୋଧ କଲେ, ସାଙ୍ଗରେ ଏକ ଆଧୁନିକ ରାଷ୍ଟ୍ର ନିର୍ମାଣ ସକାଶେ ଭିତ୍ତି ପଡ଼ିଲା ଏବଂ ଏକ ସୁସ୍ଥ ସମାଜ ଗଢ଼ିବା ଉଦ୍ଦେଶ୍ୟରେ କୁସଂସ୍କାରଗୁଡ଼ିକୁ ଦୂର କରିବାକୁ ସଂସ୍କାରମୂଳକ କାର୍ଯ୍ୟକ୍ରମମାନ ହାତକୁ ନିଆଗଲା । ଇତିହାସରେ ମୋଡ଼ରେଟ୍ ବା ନରମପନ୍ଥୀ ରୂପେ ପରିଚିତ ଏହି ନେତୃବୃନ୍ଦ ସଭାସମିତି କଲେ, ପ୍ରଶାସନର ସମାଲୋଚନା କଲେ, ପ୍ରଶାସନିକ ସଂସ୍କାର ପାଇଁ ପତ୍ରପତ୍ରିକାରେ ଲେଖା ଲେଖିଲେ । ଜନଚେତନା ସୃଷ୍ଟିକରିବାର ଏହି ନୂଆ ପରମ୍ପରାକୁ ଜାତୀୟତା ଆନ୍ଦୋଳନ ରୂପେ ପରିଭାଷିତ କରାଯାଇପାରେ । ନୂଆ କରି ଏବେ 'ସଂଗ୍ରାମ' ଅର୍ଥ ଲୋକ ବୁଝିଲେ ସଭାସମିତି କରିବା, ଆବେଦନ- ପ୍ରତିବେଦନ ପଠାଇବା, ପତ୍ର-ପିତ୍ରକା ପ୍ରକାଶନ କରିବା ।[୬] ଯା ପରେ ଯଦିଓ କାହିଁ କେଉଁଠି ବ୍ରିଟିଶ ବିରୋଧରେ ସଶସ୍ତ୍ର ସଂଗ୍ରାମ ସଂଗଠିତ ହୋଇଛି, ରାଜନୀତିର ତାହା ମୁଖ୍ୟ ସ୍ୱର ହୋଇ ରହିନାହିଁ । ଧୀରେ ଧୀରେ ଦେଶର ସବୁ ଅଂଚଳ ସଂଗ୍ରାମର ଏହି ନୂଆ ପରଂପରାକୁ ଆଦରି ନେଇଛନ୍ତି ।

ଆଧୁନିକ ଜାତୀୟ ରାଜନୀତିର ଏହି ପ୍ରାରମ୍ଭିକ କାଳଖଣ୍ଡରେ ସମ୍ବଲପୁରରେ ସଂଗଠିତ ହୋଇଥିବା ଭାଷା ଆନ୍ଦୋଳନକୁ ପର୍ଯ୍ୟାଲୋଚନା କରିବାର ଆବଶ୍ୟକତା ରହିଛି । ୧୮୬୨ ମସିହାରେ ସମ୍ବଲପୁରକୁ କେନ୍ଦ୍ର ପ୍ରଦେଶରେ ସମ୍ମିଶ୍ରଣ କରାଗଲା । ଏହାର ପରବର୍ତ୍ତୀ ପଦକ୍ଷେପ ରୂପେ ୧୮୯୬ ମସିହାରେ ସମ୍ବଲପୁରରୁ ଓଡ଼ିଆ ଉଚ୍ଛେଦ ପାଇଁ ସରକାରୀ ଆଦେଶ ଜାରି ହେଲା ।[୭] ଫଳତଃ ରାଜସ୍ୱ ରେକର୍ଡ଼ ହିନ୍ଦୀରେ ଲେଖାଗଲା, ସ୍କୁଲରେ ତୃତୀୟ ଶ୍ରେଣୀରୁ ହିନ୍ଦୀ ଏକ ବାଧ୍ୟତାମୂଳକ ବିଷୟ ହେଲା । ସମ୍ବଲପୁରରେ ସ୍ଥାନୀୟ ଶିକ୍ଷିତ ବୁଦ୍ଧିଜୀବୀ ଅନୁଭବ କଲେ ଯେ, ତାଙ୍କ ଭାଷାଭିତ୍ତିକ ଅସ୍ମିତା ସଂକଟାପନ୍ନ । ଚନ୍ଦ୍ରଶେଖର ବେହେରା ନାଗପୁରରୁ କିରାଣି ଚାକିରି ଛାଡ଼ିଲେ, ବୈକୁଣ୍ଠନାଥ ପୂଜାରୀ ରାଜସ୍ୱ ବିଭାଗରେ ଚାକିରି କରି ସୁଦ୍ଧା ଗାଁ ଗାଁ ବୁଲି ଜନଗଣନା ବେଳେ ନିଜର ମାତୃଭାଷା ଓଡ଼ିଆ ବୋଲି ଜଣାଇବାକୁ ଲୋକଙ୍କୁ ସଚେତନ କଲେ ।

ସରକାରୀ ଆଦେଶର ପ୍ରତ୍ୟାହାର ଏବଂ ସମ୍ବଲପୁରକୁ ବଂଗ ପ୍ରେସିଡେନ୍ସିର ଓଡ଼ିଶା ଡିଭିଜନ ସହ ମିଶ୍ରଣ ଦାବି କରି ସମ୍ବଲପୁରରେ ଯେଉଁ ଭାଷା ଆନ୍ଦୋଳନ ସଂଗଠିତ ହେଲା, ତାକୁ ଭାରତୀୟ ଜାତୀୟ କଂଗ୍ରେସର ମୋଡ଼ରେଟ୍ ବା ନରମପନ୍ଥୀ

ରାଜନୀତିର ସଠିକ୍ ପ୍ରତିଫଳନ ରୂପେ ଦେଖାଯାଇପାରେ । ନିଜ ଦାବି ପୂରଣ ଲାଗି ସ୍ଥାନୀୟ ନେତୃତ୍ୱ ଆଉ ସୁରେନ୍ଦ୍ର ସାଏଙ୍କ ପରି ସଶସ୍ତ୍ର ସଂଗ୍ରାମ କରିନାହାନ୍ତି; ବରଂ ବାରମ୍ବାର ସଭା ଆୟୋଜନ କରି ତା' ମାଧ୍ୟମରେ ନିଜ ଯୁକ୍ତି ବାଢ଼ିଛନ୍ତି, ଉଭୟ ପ୍ରଶାସନ ତଥା ଲୋକଙ୍କ ଅବଗତି ନିମନ୍ତେ ଓଡ଼ିଆ ଓ ଇଂରାଜୀର ପ୍ରଚାର ପତ୍ର ବାଣ୍ଟିଛନ୍ତି, ସହର ବାହାରେ ଗାଁ ଗଣ୍ଡାରେ ମଧ୍ୟ ସଭା ଆୟୋଜନ ପାଇଁ ନିଷ୍ପତ୍ତି ନେଇଛନ୍ତି । ସରକାରଙ୍କ ପାଖକୁ ପ୍ରତିବେଦନ ପଠାଇଛନ୍ତି । ସିମଲାରେ ବଡ଼ଲାଟ୍‌ଙ୍କୁ ଭେଟିବା ପାଇଁ ସମ୍ବଲପୁରରୁ ବୁଦ୍ଧିଜୀବୀଙ୍କ 'ଡେଲିଗେସନ୍' ଯାଇଛି । ତା'ଛଡ଼ା ଆନ୍ଦୋଳନର ଖର୍ଚ୍ଚ ପୂରଣ ସକାଶେ ଲୋକଙ୍କଠାରୁ ପାଣ୍ଠି ମଧ୍ୟ ସଂଗୃହୀତ ହୋଇଛି ।[୮] ଜନଚେତନା ସୃଷ୍ଟି ପାଇଁ ସେତେବେଳେ ପ୍ରକାଶିତ ନିବଂଧ ତଥା ଅନ୍ୟାନ୍ୟ ଲେଖାକୁ ମଧ୍ୟ ଏହି ପରିପ୍ରେକ୍ଷୀରେ ଦେଖାଯିବା କଥା । ସଭିଙ୍କର ଉଦ୍ଦେଶ୍ୟ ରାଜନୀତିକୁ ରାଜଦରବାରରୁ ଆଣି ଲୋକସ୍ତରରେ ପହଂଚାଇବା । ରାଜନୈତିକ ସମସ୍ୟା ପାଇଁ ସାଧାରଣ ବର୍ଗର ସମ୍ମୁଖୀନ ହେବା ରାଷ୍ଟ୍ରୀୟ ରାଜନୀତିର ଏକ ବଡ଼ ବୈଶିଷ୍ଟ୍ୟ ହେଲା । ଗଂଗାଧର ମେହେରଙ୍କର 'ଭାରତୀ ରୋଦନ' ଓ 'ଉତ୍କଳଭାରତୀଙ୍କ ନିବେଦନ'କୁ କେବଳ ସମ୍ବଲପୁର ଭାଷା ଆନ୍ଦୋଳନ ଭିତ୍ତିକ ସାହିତ୍ୟ ରୂପେ ନ ଦେଖି, ଆନ୍ଦୋଳନକୁ ସମାଜର ସମସ୍ତ ବର୍ଗ– ରାଜା-ରାଜୁଡ଼ାଙ୍କ ପରି ଅଭିଜାତ ବର୍ଗ– ତଥା ସାଧାରଣ ବର୍ଗ, ପାଖରେ ଉପସ୍ଥାପନ କରିବାର ପ୍ରୟାସ ରୂପେ ଦେଖାଯାଇ ପାରେ । ନରମପନ୍ଥୀ ଜାତୀୟ ନେତୃବୃନ୍ଦଙ୍କ ବିଶ୍ୱାସ ଥିଲା, ବ୍ରିଟିଶ ସରକାରଙ୍କ ଉଦ୍ଦେଶ୍ୟ ମହତ । ଶାସକ କେବେ ଭକ୍ଷକ ହୋଇ ନ ପାରେ । ତେଣୁ ସେମାନେ ଫଳ ପ୍ରାପ୍ତି ପାଇଁ ଆକୁଳ ନିବେଦନକୁ ପନ୍ଥା ବୋଲି ଧରି ନେଇଥିଲେ ଏବଂ 'ସୁଫଳ' ମିଳିଲେ ସରକାରୀ କର୍ତ୍ତୃପକ୍ଷଙ୍କ ପ୍ରତି ମାତ୍ରାଧିକ ଭାବେ କୃତଜ୍ଞ ରହୁଥିଲେ । ୧୯୦୧ ମସିହାରେ ଯେତେବେଳେ ସରକାର ନିଷ୍ପତ୍ତି ନେଲେ ଯେ, ଖୁବ୍ ଶୀଘ୍ର ସମ୍ବଲପୁରକୁ ଓଡ଼ିଶା ଡିଭିଜନ ସହ ମିଶ୍ରଣ କରାଯିବ, ସଂବଲପୁରର ବୁଦ୍ଧିଜୀବୀ ଗୋଷ୍ଠୀ ତଦାନିନ୍ତନ ଚିଫ୍ କମିଶନର ଆଣ୍ଡ୍ରୁ ଫ୍ରେଜରଙ୍କ ପ୍ରତି କୃତଜ୍ଞତା ବ୍ୟକ୍ତ କରିବାକୁ ଯାଇ ସହରରେ 'ଫ୍ରେଜର କ୍ଲବ୍'ର ସ୍ଥାପନା କଲେ ।[୧୦]

ସେତେବେଳ ଯାଏଁ ସମ୍ବଲପୁର କାହିଁକି ଓଡ଼ିଶାରେ ମଧ୍ୟ ଜାତୀୟ କଂଗ୍ରେସର ଶାଖା ନ ଥିଲା । ସମ୍ବଲପୁର ବୁଦ୍ଧିଜୀବୀଙ୍କ ସର୍ବଭାରତୀୟ ସ୍ତରର ନେତୃବୃନ୍ଦଙ୍କ ସହ କୌଣସି ସାଂଗଠନିକ ସଂପର୍କ ନଥିଲା । ସମ୍ବଲପୁରରୁ ସେଯାଏ କେହି ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେବାର ମଧ୍ୟ ନଜିର ନାହିଁ । ତା'

ସତ୍ତ୍ୱେ ଏକଲବ୍ୟ ପରି ଦୂରରେ ରହି ସୁଦ୍ଧା ନିଜ ପରିପାର୍ଶ୍ୱର ଭାଷା ଆନ୍ଦୋଳନ ମାଧ୍ୟମରେ ଜାତୀୟ ରାଜନୀତିର ପନ୍ଥାକୁ ବିନିଯୋଗ କରିଛନ୍ତି, ତାହା ନିଶ୍ଚିତ ରୂପେ ବଡ଼ କଥା । ସ୍ଥାନୀୟ ସମସ୍ୟା ଓ ଜାତୀୟ ସମସ୍ୟା ମଧ୍ୟରେ ଯେ ଏକ ଆନ୍ତରିକ ସମନ୍ୱୟ ସ୍ଥାପିତ ହୋଇପାରିବ– ଏ ବିଶ୍ୱାସ ସେମାନଙ୍କର ଥିଲା । ଦ୍ୱିତୀୟତଃ ସେହି ସମନ୍ୱୟ ସ୍ଥାପନ ହିଁ ଥିଲା ବୁଦ୍ଧିଜୀବୀ ଦୃଷ୍ଟିରେ ଜାତୀୟତା । ଏହି ରାଜନୈତିକ ଦୃଷ୍ଟିକୋଣର ପ୍ରାସଂଗିକତା ଏବେ ବି ଊଣା ହୋଇନି ।

ସମ୍ବଲପୁର ଭାଷା ଆନ୍ଦୋଳନର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ତା'ର ସଫଳତା । ଆନ୍ଦୋଳନ ଯୋଗୁଁ ୧୯୦୫ରେ ସମ୍ବଲପୁର ଆସି ଓଡ଼ିଶା ଡିଭିଜନ ସହ ମିଶିଲା । ୧୯୩୬ ମସିହାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ତାହା ଭିତ୍ତି ନିର୍ମାଣ କଲା; ମାତ୍ର ତା'ଠାରୁ ବଡ଼ କଥା, ଏହି ରାଜନୈତିକ ସଫଳତା ଜାତୀୟ ସ୍ତରରେ ମଧ୍ୟ ନରମପନ୍ଥୀ ରାଜନୀତିକୁ ମହତ୍ତ୍ୱ ପ୍ରଦାନ କରେ । ସାଧାରଣତଃ କଂଗ୍ରେସର ନରମପନ୍ଥାକୁ ବିଫଳତାର ରାଜନୀତି ବୋଲି ଅଭିହିତ କରାଯାଏ, କାରଣ ତାର ଆବେଦନ-ପ୍ରତିବେଦନ ପ୍ରତି ସରକାର ଭ୍ରୂକ୍ଷେପ କରୁନଥିଲେ । ଅନ୍ୟପକ୍ଷରେ ତାହା ହିଁ ଥିଲା ଭବିଷ୍ୟତର 'ଚରମପନ୍ଥୀ' ଓ ଗାନ୍ଧୀବାଦୀ ଗଣ ଆନ୍ଦୋଳନଭିତ୍ତିକ ଜାତୀୟ ରାଜନୀତିର ମୂଳଭୂମି । ଏଭଳି ପରିପ୍ରେକ୍ଷୀରେ ସର୍ବଭାରତୀୟ ସ୍ତରର ନେତାଙ୍କ ବିନା ଜ୍ଞାତସାରରେ ନରମପନ୍ଥାକୁ ଉପଯୋଗ କରି ସମ୍ବଲପୁର ପରି ଏକ ନିରୋଳା ଅଞ୍ଚଳରେ ଯେ ରାଷ୍ଟ୍ରୀୟତାର ରାଜନୀତିକୁ ସଫଳତା ମିଳିଛି– ସେ ଖୁବ୍ ବଡ଼କଥା । ନିଶ୍ଚୟ ଏହା ନରମପନ୍ଥାର ସାମୂହିକ ମୂଲ୍ୟାଙ୍କନବେଳେ ମହତ୍ତ୍ୱ ପ୍ରତିପାଦିତ କରିବ– ଇତିହାସର ଛାତ୍ର ଏଥିରେ ଅସମ୍ମତ ହେବେନାହିଁ ।

ସମ୍ବଲପୁର ଭାଷା ଆନ୍ଦୋଳନ ଥିଲା ପୂର୍ଣ୍ଣତଃ ଏକ ଅନ୍ତଃଶକ୍ତିର ସଂଗ୍ରାମ । ଓଡ଼ିଆ ଭାଷାର ଉଚ୍ଛେଦଜନିତ ଚିନ୍ତା ସ୍ଥାନୀୟ ବୁଦ୍ଧିଜୀବୀଙ୍କୁ ଉଦ୍‌ବେଳିତ କଲା । ବିକଳ୍ପ ରୂପେ ସେମାନେ ସମସ୍ତ ଶକ୍ତି ଦେଇ ସମସାମୟିକ ଭାରତରେ ନୂଆ ଭାବେ ଉପଲବ୍ଧ ରାଜନୈତିକ ପନ୍ଥାକୁ ଆପଣେଇ ଆନ୍ଦୋଳନ କଲେ । ସେମାନଙ୍କ ନିଜ ଅନ୍ତଃଶକ୍ତି ବିନା ସେ ଆନ୍ଦୋଳନ ଆଗକୁ ବଢ଼ି ନ ଥାନ୍ତା- ଏକଥା ନିଶ୍ଚିତ । ଆନ୍ଦୋଳନ ପ୍ରକ୍ରିୟାରେ କଟକର 'ଉତ୍କଳ ଦୀପିକା' ଓ ବାଲେଶ୍ୱରର 'ସଂବାଦ ବାହିକା' ଆଦି ପତ୍ରପତ୍ରିକାର ଅକୁଣ୍ଠ ସମର୍ଥନ ମିଳିଲା, ଫକୀରମୋହନ ସେନାପତିଙ୍କ ପରି ଲେଖକ ତାଙ୍କ 'ଉତ୍କଳ ଭ୍ରମଣ' (୧୮୯୬) କାବ୍ୟରେ ସଂବଲପୁରରୁ ଓଡ଼ିଆ ଉଚ୍ଛେଦ ପାଇଁ ଆଦେଶ ଦେଇଥିବା ଉଡ଼ବର୍ଣ୍ଣ ସାହବଙ୍କୁ 'ଖଳନାୟକ' ରୂପେ ଚିତ୍ରିତ କଲେ ।

ମୋଟକଥା ହେଲା ଯେ ଆନ୍ଦୋଳନ ଯୋଗୁଁ ସଂବଲପୁର (ଯାହାକୁ 'ପଶ୍ଚିମ ଓଡ଼ିଶା'ର ଏକ ସମନାର୍ଥକ ଶବ୍ଦ ରୂପେ ପରିଭାଷିତ କରାଯାଇପାରେ) ଓ ଉପକୂଳ ବୁଦ୍ଧିଜୀବୀଙ୍କ ମଧ୍ୟରେ ସମନ୍ୱୟ ବଢ଼ିଲା, ଅନ୍ତଃମନରେ ଅନ୍ତତଃ ବୁଦ୍ଧିଜୀବୀ ସ୍ତରରେ ସମଗ୍ର ଓଡ଼ିଶାର ଏକତ୍ରୀକରଣ ହେଲା । ଫଳସ୍ୱରୂପ ୧୮୯୬ ମସିହାରେ ସମ୍ବଲପୁରର ଏକ ସଭାରେ ସର୍ବସମ୍ମତିକ୍ରମେ ନିଷ୍ପତ୍ତି ନିଆହେଲା, ମଧୁସୂଦନ ଦାସଙ୍କୁ ବଂଗ ପ୍ରେସିଡେନ୍ସିର ଲାଟସଭା ପାଇଁ ପ୍ରାର୍ଥୀ କରାଯିବ ।[୧୧] ଆଜି, ସେହି ଘଟଣାର ଶହେ ଆଠ ବର୍ଷ ପରେ ଦେଖିବା କଥା- ଉଭୟ ବୁଦ୍ଧିଜୀବୀ ଗୋଷ୍ଠୀ ମଧ୍ୟରେ ସେହି ଘନିଷ୍ଠତା ବଢ଼ିଛି, ନା ବାଧାପ୍ରାପ୍ତ ହୋଇଛି । ଯଦି ତାହା ବାଧାପ୍ରାପ୍ତ, ତାକୁ ଯୋଡ଼ାଯିବ କେମିତି- ସେ ବି ଆଲୋଚନାର ବିଷୟ । 'ବସୁଧୈବ କୁଟୁମ୍ବକଂ' ଓ 'ମହାଭାରତୀୟ ଜାତୀୟତା' ଯେତେବେଳେ ବୁଦ୍ଧିଜୀବୀର ଲକ୍ଷ୍ୟ, ଗାଁ, ପରିବାର, ଅଂଚଳ ଓ ପ୍ରଦେଶ ସ୍ତରର ଏକତା ତା' ପାଇଁ ବାଧକ ହେବ ନାହିଁ, ବରଂ ପ୍ରମୁଖ ଆଧାର ହେବ– ଏଥିରେ ଆଦୌ ସଂନ୍ଦେହ ନାହିଁ ।

୧୯୨୦ ମସିହାରେ, ଜାତୀୟ କଂଗ୍ରେସ ସ୍ଥାପନାର ୩୫ ବର୍ଷ ପରେ, ଓଡ଼ିଶାରେ କଂଗ୍ରେସର ଶାଖା ଗଠିତ ହେଲା ।[୧୨] ସେତେବେଳେ ଗାନ୍ଧୀ ଗଣ ଆନ୍ଦୋଳନର ଯୁଗ । ନାଗପୁରରେ (ଡିସେମ୍ବର ୧୯୨୦) କଂଗ୍ରେସ ନିଷ୍ପତ୍ତି ନେଲା, ଅସହଯୋଗ ଆନ୍ଦୋଳନ ହେବ । ସରକାର ସହ ଲୋକ ଅସହଯୋଗ କରିବେ । ଛାତ୍ର ସ୍କୁଲ ବର୍ଜନ କରିବେ, ଓକିଲ କଚେରି ବର୍ଜନ କରିବେ, ଚାକିରିଆ ଚାକିରି ଛାଡ଼ିବେ । ସହଯୋଗ ଅଭାବରେ ଇଂରେଜମାନେ ଭାରତବାସୀଙ୍କୁ ସ୍ୱରାଜ୍ୟ ଦେବାକୁ ବାଧ ହେବେ । ଓଡ଼ିଶା ପାଇଁ ନାଗପୁର କଂଗ୍ରେସର ମହତ୍ତ୍ୱ ହେଲା ଯେ, କଂଗ୍ରେସ ସେଠି ଭାଷାଭିତ୍ତିକ ପ୍ରଦେଶ ଗଠନ ଦାବିକୁ ସ୍ୱୀକୃତି ଦେଲା ଏବଂ ଭାଷା ଭିତ୍ତିରେ ଦଳର ପ୍ରାଦେଶିକ ଶାଖାମାନ ଗଠନ କରିବାକୁ ଅନୁମତି ଦେଲା । ଫଳରେ ଉତ୍କଳ ସମ୍ମିଳନୀ ତା'ର ଚକ୍ରଧରପୁର ଅଧିବେଶନରେ (ଡିସେମ୍ବର ୧୯୨୦) କଂଗ୍ରେସ ସହ ଏକୀକୃତ ହେଲା; ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହେଲା; ଅସହଯୋଗ ଆନ୍ଦୋଳନରେ ଝାସ ଦେବାକୁ ଗୋପବନ୍ଧୁ ଦାସ ଆଦି ଓଡ଼ିଶାର ପ୍ରମୁଖ ନେତୃବୃନ୍ଦ ନିଷ୍ପତ୍ତି ନେଲେ ।

ରାଜନୀତିର ଏତେ ସବୁ ପଟ୍ଟପରିବର୍ତ୍ତନ ହେଲା ମାତ୍ର ଗୋଟାଏ ସପ୍ତାହରେ, ୧୯୨୦ ମସିହା ଡିସେମ୍ବର ଶେଷ ସପ୍ତାହରେ । ଓଡ଼ିଶାର ନେତୃବୃନ୍ଦ ନାଗପୁରରୁ ଫେରି ଚକ୍ରଧରପୁରରେ ସମ୍ମିଳନୀ କଲେ, ଅସହଯୋଗ ପାଇଁ ନିଷ୍ପତ୍ତି ନେଲେ । ଏହି ଘଟଣାର ତିନି ଦିନ ପରେ ଅର୍ଥାତ୍ ୧୯୨୧ ମସିହା ଜାନୁଆରୀ ୩ ତାରିଖ

ଦିନ ସମ୍ବଲପୁର ଜିଲ୍ଲା ସ୍କୁଲ ଛାତ୍ର ସାମୂହିକ ଭାବେ ସ୍କୁଲ ବର୍ଜନ କଲେ । ରାସ୍ତାରେ ବିକ୍ଷୋଭ ପ୍ରଦର୍ଶନ କଲେ, ଶେଷରେ ସ୍ଥାନୀୟ ପ୍ରେଜର କ୍ଲବ୍‌ରେ ଯାଇ ନିଜେ ନିଜେ ସଭା ଆୟୋଜିତ କରି ଜାତୀୟ ସ୍କୁଲ ପ୍ରତିଷ୍ଠା କଲେ ।[୧୩] ତେଣିକି ପ୍ରତିଦିନ ଅସହଯୋଗ ସଭା ଆୟୋଜିତ ହେଲା, କାନ୍ଥବାଡ଼ରେ ବ୍ରିଟିଶ୍ ବିରୋଧୀ ସ୍ଲୋଗାନ୍ ଲେଖା ହେଲା, ଅନ୍ୟ ପିଲାଙ୍କୁ ତଥା ବୟୋଜ୍ୟେଷ୍ଠମାନଙ୍କୁ ଅସହଯୋଗ ଆନ୍ଦୋଳନରେ ଆପ୍ରାଣ ଯୋଗ ଦେବାକୁ ପ୍ରୋତ୍ସାହିତ କରାଗଲା । ସବୁଠାରୁ ବଡ଼ କଥା, ଆନ୍ଦୋଳନର ଆଗରେ, ପଛରେ, ସବୁଠି ଥିଲେ ସେହି ସ୍କୁଲ ପିଲାମାନେ । ଲକ୍ଷ୍ମୀ ନାରାୟଣ ମିଶ୍ର, କୃତାର୍ଥ ଆଚାର୍ଯ୍ୟ, ବେଣୀ ମାଧବ ସୁପକାର, ଅବଦୁଲ ମାଜିଦ, ଜଗନ୍ନାଥ ମିଶ୍ର ପ୍ରମୁଖ ।

ନାଗପୁର କଂଗ୍ରେସର ମାତ୍ର ତିନିଦିନ ପରେ ଘଟିତ ସମ୍ବଲପୁରର ଏହି ସମ୍ବାଦଟି ବୋଧହୁଏ ସମଗ୍ର ଅସହଯୋଗ ଆନ୍ଦୋଳନର ଅଦ୍ୱିତୀୟ ଘଟଣା ଥିଲା । ପୁଣିଥରେ ସମ୍ବଲପୁର ଚର୍ଚ୍ଚାର ମୁଖ୍ୟ ବିଷୟ ହେଲା । ବଂଗ ଓ ବିହାରର ପତ୍ରପତ୍ରିକା ନିଜ ନିଜ ଅଂଚଳରେ ଅସହଯୋଗ ଆନ୍ଦୋଳନକୁ ବ୍ୟାପକ କରିବା ଉଦ୍ଦେଶ୍ୟରେ ସଂବାଦଟିକୁ ପ୍ରମୁଖତା ଦେଲେ । ଫଳରେ କଲିକତା ଓ ପାଟନାରେ ଉଚ୍ଚଶିକ୍ଷା ଲାଭ କରୁଥିବା ଅନେକ ଓଡ଼ିଆ ଛାତ୍ର ସମ୍ବଲପୁର ସ୍କୁଲ ପିଲାଙ୍କ ଉତ୍ସାହ ଦେଖି ତତ୍‌କ୍ଷଣାତ୍ ପଢ଼ାଛାଡ଼ି ଓଡ଼ିଶାକୁ ଫେରିଲେ, ଆନ୍ଦୋଳନରେ ଝାସ ଦେଲେ । ପରବର୍ତ୍ତୀ ସମୟରେ ସେମାନଙ୍କ ମଧ୍ୟରୁ ଅନେକ ଛାତ୍ର କଟକ ଓ ସମ୍ବଲପୁର ଜାତୀୟ ବିଦ୍ୟାଳୟରେ ଶିକ୍ଷକର ଦାୟିତ୍ୱ ନିଭାଇଲେ ।

ଭାଗୀରଥି ମିଶ୍ର ସମ୍ବଲପୁରରୁ ଯାଇ ସେତେବେଳେ କଲିକତାରେ ଓକିଲାତି ପଢୁଥିଲେ । ମନରେ ଜାତୀୟତା ଭାବ ଥିଲା, ମାତ୍ର ପଢ଼ା ଛାଡ଼ି ଆନ୍ଦୋନରେ ଝାସ ଦେବାର ସାହସ ନ ଥିଲା । ଠିକ୍ ସେମିତି ନୀଳକଣ୍ଠ ଦାସ ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠାତା ରୂପେ ପ୍ରାୟ ୧୦ ବର୍ଷ (୧୯୦୯ ରୁ ୧୯୧୮) ଜାତୀୟତା ପାଇଁ କାର୍ଯ୍ୟ କରିବା ପରେ ବିଭିନ୍ନ କାରଣରୁ ବୀତସ୍ପୃହ ହୋଇ କଲିକତା ବିଶ୍ୱବିଦ୍ୟାଳୟରେ ଶେଷରେ ଓଡ଼ିଆ ଅଧ୍ୟାପକ ଚାକିରିରେ ଯୋଗ ଦେଇଥିଲେ । ଏବେ ସମ୍ବଲପୁର ସ୍କୁଲ ଛାତ୍ରଙ୍କ ସାହସ ଦେଖି ଉଭୟେ ଆଉ ସ୍ଥିର ରହି ପାରିଲେ ନାହିଁ; ସମ୍ବଲପୁର ଆସିଲେ ଏବଂ ଅସଯୋଗ ଆନ୍ଦୋଳନକୁ ପରିଚାଳନା କଲେ ।[୧୪] ଦୀର୍ଘ ନଅ ମାସର ସମ୍ବଲପୁର ରହଣିବେଳେ ନୀଳକଣ୍ଠ ଦାସ କଂଗ୍ରେସର ବାର୍ତ୍ତା ପ୍ରଚାର ପାଇଁ 'ସେବା' ନାମକ ସାପ୍ତାହିକ ପତ୍ରିକା ପ୍ରକାଶନ କଲେ, ସ୍ଥାନୀୟ ଜାତୀୟ ସ୍କୁଲରେ ଶିକ୍ଷକତା

କଲେ, ଅସହଯୋଗ ଆନ୍ଦୋଳନ ଓ ଜିଲ୍ଲା କଂଗ୍ରେସ ସମିତିକୁ ସଂଗଠିତ କଲେ। ସମ୍ବଲପୁରର କିଶୋର ଛାତ୍ରମାନେ ଯଦି ତାଙ୍କୁ ଜାତୀୟତାର ମହାସ୍ରୋତକୁ ଫେରାଇ ଆଣି ପାରିଲେ, ପ୍ରତିବଦଳରେ ସେ ମଧ୍ୟ ସେଠିକା ଆନ୍ଦୋଳନକୁ ସୁଗଠିତ ହେବାରେ ଯଥୋଚିତ ସହଯୋଗ କରିଛନ୍ତି, ହଇଜା ସମୟରେ ଜାତୀୟ ସ୍କୁଲର ଛାତ୍ରଙ୍କୁ ନେଇ ଗାଁ ଗାଁରେ ଔଷଧ ବାଣ୍ଟିଛନ୍ତି, ହଇଜା ପଛରେ ଥିବା ଅନ୍ଧବିଶ୍ୱାସ ଦୂର କରିବା ସକାଶେ ଜନ ଚେତନା ସୃଷ୍ଟି କରିଛନ୍ତି।[୧୫] ଯଦି ଏହି ଆପୋଷ ସହଯୋଗକୁ, ପରସ୍ପରରେ ପରିପୂରକତାକୁ, ଭାବ ବିନିମୟର ପ୍ରକ୍ରିୟାକୁ 'ଏକତା', 'ରାଷ୍ଟ୍ରୀୟତା' କିମ୍ବା 'ଜାତୀୟତାର ଉଦ୍ରେକ' ବୋଲି ପରିଭାଷିତ କରାଯାଏ, ସେଥିରେ କୌଣସି ଅତିଶୟୋକ୍ତି ହେବନାହିଁ।

ଅସହଯୋଗ ଆନ୍ଦୋଳନବେଳେ ସମ୍ବଲପୁର ଜିଲ୍ଲା ସ୍କୁଲ ବର୍ଜନ କରିଥିବା ଛାତ୍ରଙ୍କ ମଧ୍ୟରେ ଥିଲେ କୃତାର୍ଥ ଆଚାର୍ଯ୍ୟ। ସ୍ୱାବଲମ୍ବୀ ହେବା ପାଇଁ କିଛି ଦିନ ଟ୍ୟୁସନ କଲେ ବୋଲି ନାଁ ହେଲା 'କୃତାର୍ଥ ମାଷ୍ଟର'। ଗାନ୍ଧୀ ଓ ସ୍ୱଦେଶୀ ତାଙ୍କ ଅସ୍ଥିମଜ୍ଜାରେ ଭରି ରହିଥିଲା। ତତ୍ତ୍ୱଟିକୁ ସେ ନିଜ ପରିପାର୍ଶ୍ୱରେ ବିନିଯୋଗ କଲେ। ବ୍ରିଟିଶ ଶାସନର ଏକ କ୍ରୁର ପରିଣାମ ରୂପେ ଯେତେବେଳେ ବିଦେଶୀ ଲୁଗା ଆମଦାନୀ ହେଲା, ସେତେବେଳେ ପଶ୍ଚିମ ଓଡ଼ିଶାର ଲକ୍ଷ ଲକ୍ଷ ତନ୍ତୀ, ଦେଶର ଅନ୍ୟ ତନ୍ତୀକୁଳ ପରି, ରୋଜଗାର ହରାଇଲେ। ଅନନ୍ୟୋପାୟ ହୋଇ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଆରମ୍ଭ ହୋଇଥିବା ଚା' ବଗିଚାରେ ସେମାନେ କୁଲି କାମ କରିବାକୁ ଅସଂଖ୍ୟ ମାତ୍ରାରେ ଆସାମ ଚାଲି ଯାଉଥିଲେ। ଦିନେ ପଶ୍ଚିମ ଓଡ଼ିଶାର ତନ୍ତବୁଣା ଲୁଗା ସେମାନଙ୍କ ଆୟର ମୁଖ୍ୟ ସ୍ରୋତ ଥିଲା। ବିଦେଶୀ ଲୁଗା ଆସି ସେମାନଙ୍କୁ ନିଃସ୍ୱ କରିଦେଲା।[୧୬] ଇଂରେଜ ଶାସନର ଶୋଷଣକାରୀ ଦିଗକୁ ସ୍ଥାନୀୟ ସମାଜ ନିଜ ଚାରିପାଖେ ଦେଖି ପାରିଲା। ଏହି ଅନୁଭୂତିର ଆଧାରରେ କୃତାର୍ଥ ଆଚାର୍ଯ୍ୟ ସ୍ୱଦେଶୀର ମହତ୍ତ୍ୱ ବୁଝିଲେ ଏବଂ ତାର ପ୍ରଚାର ଓ ପ୍ରସାର ପାଇଁ ସମ୍ବଲପୁରୀ ଲୁଗାକୁ ସହକାରୀ ଭିତ୍ତିରେ ସଂଗଠିତ କଲେ। ଆରମ୍ଭ ହେଲା ସମ୍ବଲପୁରୀ ବସ୍ତ୍ରାଳୟ। ଆଜି ସମ୍ବଲପୁରୀ ଲୁଗା ଭାରତ ବାହାରେ ମଧ୍ୟ ଓଡ଼ିଶାକୁ ପରିଚିତି ଓ ପ୍ରସିଦ୍ଧି ଦେଇଛି। ଲକ୍ଷ ଲକ୍ଷ ତନ୍ତୀ ମୁହଁରେ ହସ ଦେଇଛି, ପୁଣି ଥରେ ତନ୍ତୀକୁଳକୁ ସ୍ୱାବଲମ୍ବୀ କରିଛି। ପରବର୍ତ୍ତୀ ସମୟରେ ଆଉ ତନ୍ତୀ କୁଳକୁ ଆସାମର ଚା' ବଗିଚାରେ କୁଲି କାମ କରିବାକୁ ପଡ଼ିନି, ତା' କାରିଗରୀ ଓ ସୃଜନଶୀଳତାକୁ ଚା' ବଗିଚାର 'ସାହିବ' ଓ 'ସର୍ଦ୍ଦାର'ର କୋରଡ଼ା ମାଡ଼ରେ ଅପମୃତ୍ୟୁ ଭୋଗିବାକୁ ପଡ଼ିନି। କୃତାର୍ଥ ଆଚାର୍ଯ୍ୟଙ୍କ

ପରି ଗାନ୍ଧିବାଦର ଆଦର୍ଶରେ ଅସହଯୋଗବେଳେ ସ୍କୁଲ ବର୍ଜନ କରିଥିବା ଛାତ୍ର ଜଣେ ସମ୍ବଲପୁର, ତାର ଲୋକସମୂହ ଓ ତନ୍ତଲୁଗାକୁ ବିଶ୍ୱସ୍ତରରେ ପରିଚିତି ଦେଇଛନ୍ତି– ଏହା କି କମ୍ କଥା ! କୃତାର୍ଥ ଆଚାର୍ଯ୍ୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଜେଲ୍ ଯାଇ ନାହାନ୍ତି, ଇଂରେଜ ପୋଲିସର ଲାଠିମାଡ଼ ତାଙ୍କ ପିଠିରେ ପଡ଼ିନି । ତା' ସତ୍ତ୍ୱେ ତାଙ୍କ ସ୍ୱାଧୀନତା ପାଇଁ ଅବଦାନକୁ କ'ଣ ଊଣା କହି ହେବ ?

ପରିଶେଷରେ କହିବା କଥା ଯେ ପ୍ରତ୍ୟେକ ଅଂଚଳର ତଥା ତା' ଲୋକ ସମାଜର ଐତିହାସିକ ପୃଷ୍ଠଭୂମି ରହିଛି, ସାମାଜିକ ଓ ସାଂସ୍କୃତିକ ମହତ୍ତ୍ୱ ରହିଛି । ସମସ୍ତେ ମିଶିଲେ ଏକ ବୃହତ୍ତର ସମାଜର ଇତିହାସ ହୁଅନ୍ତି, ସଭ୍ୟତା ଓ ସଂସ୍କୃତି ନିର୍ମାଣ ହୁଏ । ଏହି ମର୍ମରେ କୁହାଯାଇପାରେ ଯେ ଆଞ୍ଚଳିକ ଇତିହାସ କେବେ ରାଷ୍ଟ୍ର ବା ବିଶ୍ୱ ଇତିହାସର ପରିପନ୍ଥୀ ନୁହେଁ । ଦ୍ୱିତୀୟତଃ, ଏହା ଆହୁରି ମଧ୍ୟ ସିଦ୍ଧ କରେ ଯେ, ଏକ ବୃହତ୍ତର ସମାଜ ଗଠନରେ କୌଣସି 'ସାନ' ଅଞ୍ଚଳର ଯୋଗଦାନ ଅପେକ୍ଷା ତଥାକଥିତ 'ବଡ଼' କିମ୍ବା 'ଗୁରୁତ୍ୱପୂର୍ଣ୍ଣ' ସମାଜର (ଅଥବା ବ୍ୟକ୍ତିର) ଯୋଗଦାନ କମ୍ ବା ଅଧିକ ନୁହେଁ । ଅନ୍ୟ ଅର୍ଥରେ ଯେହେତୁ ପ୍ରତ୍ୟେକ ସମାଜର ନିର୍ଦ୍ଦିଷ୍ଟ ମହତ୍ତ୍ୱ ରହିଛି, ବୈଶିଷ୍ଟ୍ୟ ଅଛି, ନୀତି ନିର୍ଦ୍ଧାରଣବେଳେ ସମସ୍ତଙ୍କ ପ୍ରତି ସମଦୃଷ୍ଟି ଭାବ ରହିବା ଅତି ବାଂଛନୀୟ । ସମଦୃଷ୍ଟିର ଅଭାବ ବୈଷମ୍ୟ ସୃଷ୍ଟିକରେ । ବିଚ୍ଛିନ୍ନତାଭାବକୁ ବଳ ମିଳେ । ଆଧୁନିକତା ସହ ତାଳ ଦେଇ ଆମ ଉପଭୋକ୍ତା ସମାଜର ପ୍ରତ୍ୟେକ ସଭ୍ୟଙ୍କର ଆଜି ଅଭାବ ବଢ଼ିଛି । ସବୁ ଅଭାବକୁ କେବେ ମେଣ୍ଟା ଯାଇ ନ ପାରେ । ତା' ସତ୍ତ୍ୱେ ଅଭାବର ପରିପୂରଣ ପାଇଁ ଯେତିକି ଆବଶ୍ୟକ 'କେନ୍ଦ୍ରୀୟ ସହାୟତା' ଓ 'ବିଶ୍ୱବ୍ୟାଙ୍କ ଋଣ'ର ତା'ଠାରୁ ଖୁବ୍ ଅଧିକ ମାତ୍ରାରେ ଆବଶ୍ୟକ ସେହି ସମଦୃଷ୍ଟିଭାବର, ଗ୍ରହଣଶୀଳତା ଓ ସହୃଦୟତାର । ସେ ବ୍ୟକ୍ତି ହେଉ ବା ସମାଜ, ଜଣେ ଅନ୍ୟର ମହତ୍ତ୍ୱ ଓ ପରିପୂରକତାକୁ ସ୍ୱୀକାର ନ କରିବା ଯାଏ, ସେ ଭାବ ନୋହିବ । ତେଣୁ ସମ୍ବଲପୁରର ଐତିହାସିକ ପୃଷ୍ଠଭୂମିକୁ ନେଇ ଆଲୋଚନାର ଯେତିକି ଆବଶ୍ୟକତା ଅଛି, ତତୋଽଧିକ ମାତ୍ରାରେ ଆବଶ୍ୟକତା ରହିଛି ଅନ୍ୟସବୁ ଆଞ୍ଚଳିକ ସମାଜର ଇତିହାସ ଖୋଜିବାର, ବସ୍ତୁନିଷ୍ଠ ଆଲୋଚନା କରିବାର । କୌଣସି ସମାଜର ଅଯଥା ପ୍ରଶଂସା ବା ଅହେତୁକ ନିନ୍ଦା ସେଭଳି ଆଲୋଚନା ପାଇଁ ଘୋର ପ୍ରତିବନ୍ଧକ ସୃଷ୍ଟି କରେ- ଏଥିରେ ଦ୍ୱିରୁକ୍ତି ନାହିଁ ।

ପାଦଟୀକା :

1. N.K. Sahu, Veer Surendra Sai, Cuttack, 1985; S.C. De, Guide to Orissan Records, Vol.IV, ଭୁବନେଶ୍ୱର 1964.

2. R. Iqbal, Unsung Heroes of Freedom Struggle in Andamans, Port Blair, 1998, p.37-38.

3. ହେମଚନ୍ଦ୍ର ଆଚାର୍ଯ୍ୟ, ସୁରେନ୍ଦ୍ର ସାଏ ଓ ସାଇ ଦୁଏଲ୍, ସଂବାଦ, 11 ଜାନୁଆରୀ 2004.

4. ଗୋଟାଏ ଲୋକଗୀତ ହେଲା:

ଉଲି ଉଲି ଉଲି ଛବିଲ ସାଏ କେ ମାରିଲେ ଗୁଲି

କୁଦୋପାଲିର ମଝାଖୁଲି, ବଉଲରେ ।

5. "From Private information he (G.K. Cockbern) gathers that the people of Sambalpur have strong sympathy for the cause of Surendra Sai and Udwant Sai", G.K. Cockburn's letter to secretary to the Government of Bengal, No.242, Dt. 30 October 1857, in S.C. De, ed., Guide to Orissan Records, Vol. IV, p.2.

6. Bipan Chandra, Nationalism and Colonialism in Modern India, New Delhi, 1979, p.123.

7. C.R. Mishra, Freedom Movement in Sampalpur, New Delhi, 1986, p.166.

8. ଉତ୍କଳ ଦୀପିକା, 2 February 1895.

9. ଗଙ୍ଗାଧର ମେହେରଙ୍କ କବିତା ଦୁଇଟି ''ସମ୍ବଲପୁର ହିତୈଷିଣୀ'ରେ 30 October 1894 ଏବଂ 8 ଜୁନ୍ 1896 ରେ ପ୍ରକାଶିତ ।

10. ଉତ୍କଳ ଦୀପିକା, 12 ଜୁଲାଇ 1902.

11. ଉତ୍କଳ ଦୀପିକା, 22 ଫେବୃୟାରୀ 1921.

12. ଉତ୍କଳ ସେବକ, (ସମ୍ବଲପୁର), 6 ଜାନୁଆରୀ 1921.

13. ଉତ୍କଳ ସେବକ, 6 ଜାନୁଆରୀ 1921.

14. ନୀଳକଣ୍ଠ ଦାସ, ଆତ୍ମଜୀବନୀ, ନୂତନ ସଂସ୍କରଣ, କଟକ 1986, p.117.

15. ନୀଳକଣ୍ଠ ଦାସ, ଆତ୍ମଜୀବନୀ, p.119.

16. ସାଧନା (ସମ୍ବଲପୁର), 5 ଫେବୃଆରୀ 1923.



# ସମ୍ବଲପୁରୀ ଭାଷା ଆନ୍ଦୋଳନ : ଏକ ଦୃଷ୍ଟିପାତ

ସମ୍ବଲପୁର ଏକ ସହରର ନାମ । ଓଡ଼ିଶାର ବୃହତ୍ତମ ସହର ବି ନୁହେଁ ସେ । ମାତ୍ର ସାଧାରଣ ଦୃଷ୍ଟିରେ ସମ୍ବଲପୁରର ଏକ ବ୍ୟାପକ ତଥା ସାମଗ୍ରିକ ଅର୍ଥ ରହିଛି । ସମଗ୍ର ପଶ୍ଚିମ ଓଡ଼ିଶାର ଅନ୍ୟୂନ ଦଶଟି ଜିଲ୍ଲାର ଆତ୍ମପରିଚୟରେ ସମ୍ବଲପୁର ସଂଜ୍ଞା ହୋଇରହେ । ସେତେବେଳେ ସମ୍ବଲପୁର ଏକ ସହର ମାତ୍ର ହୋଇ ରହେ ନା, ଏକ ଅଞ୍ଚଳ ବିଶେଷ ପାଇଁ ସମାନାର୍ଥକ ଶବ୍ଦ ହୁଏ । ଅବଶ୍ୟ ଏହି କିଛି ବର୍ଷ ହେଲା ପଶ୍ଚିମ ଓଡ଼ିଶାକୁ 'ସମ୍ବଲପୁର' ବଦଳରେ 'କୋଶଳ' ନାମରେ ଅଭିହିତ କରାଯାଉଛି । କିମ୍ବଦନ୍ତୀ ଅନୁସାରେ କୋଶଳ ଏକ ପୁରାତନ ରାଜ୍ୟର ନାଁ, ଯାହାର ରାଜନୈତିକ ତଥା ଭୂଗୌଳିକ ପରିଧି ଆଧୁନିକ ପଶ୍ଚିମ ଓଡ଼ିଶାର ପରିସୀମା ସହ ପ୍ରାୟତଃ ସମାନ । ସେ ଯାହା ହେଉ, ନୂଆ ନାମ 'କୋଶଳ' କ୍ରମଶଃ ସର୍ବମାନ୍ୟ ମଧ୍ୟ ହେବାକୁ ଲାଗିଛି ।

ସମ୍ବଲପୁରୀ ଏକ ବିଶେଷଣ ମାତ୍ର । ସମ୍ବଲପୁର ବା କୋଶଳ ଅଞ୍ଚଳର ସଂସ୍କୃତି, ଭାଷା, ହସ୍ତଶିଳ୍ପ, ସଂଗୀତ ତଥା ସାମାଜିକ ପରମ୍ପରାକୁ ସାଧାରଣତଃ 'ସମ୍ବଲପୁରୀ' ବିଶେଷଣ ଦ୍ୱାରା ପରିଭାଷିତ କରାଯାଏ । 'କୋଶଳ' ଶବ୍ଦର ବ୍ୟବହାର ସତ୍ତ୍ୱେ, ପଶ୍ଚିମ ଓଡ଼ିଶାର ହସ୍ତତନ୍ତ ପ୍ରସ୍ତୁତ ଶାଢ଼ି ଏବଂ ଲୋକଗୀତ କୋଶଲୀ ଶାଢ଼ି ବା କୋଶଲୀ ଗୀତ ନ ହୋଇ ସମ୍ବଲପୁରୀ ଗୀତ, ସମ୍ବଲପୁରୀ ଶାଢ଼ି ନାମରେ ହିଁ ପରିଚିତି ପାଆନ୍ତି । ପଶ୍ଚିମ ଓଡ଼ିଶାର କଥିତ ଭାଷାକୁ ସାଧାରଣତଃ 'ସମ୍ବଲପୁରୀ' କୁହାଯାଏ । ଏବେ ତାକୁ କୋଶଲୀ ମଧ୍ୟ କୁହାଗଲାଣି । ତା' ସତ୍ତ୍ୱେ ସାଧାରଣରେ ଆଦୃତ ନାମ ଭାବରେ ତଥା ନିବନ୍ଧର ପରିକଳ୍ପନା ଦୃଷ୍ଟିରୁ ସମ୍ବଲପୁର ଅଞ୍ଚଳର ଲୋକ ଭାଷାକୁ 'ସମ୍ବଲପୁରୀ' ସଂଜ୍ଞାରେ ଆଲୋଚନାରେ ଅଭିହିତ କରିଛୁଁ ।

ଗତ କିଛି ବର୍ଷ ହେଲା ଭାଷା, ସାହିତ୍ୟ, କଳା, କାରିଗରୀ ଆଦି ବିଭିନ୍ନ କ୍ଷେତ୍ରରେ ସମ୍ବଲପୁରୀ ସ୍ୱାତନ୍ତ୍ର୍ୟ ଦାବି କରୁଥିବାର ଲକ୍ଷ୍ୟ କରାଯାଉଛି । ଏହି ଦାବିକୁ ଏକ ଅନ୍ଦୋଳନ ରୂପେ ମଧ୍ୟ ଦେଖାଯାଇ ପାରେ ଯାହାର ଅନ୍ୟତମ ଉଦ୍ଦେଶ୍ୟ

ହେଲା ଓଡ଼ିଆ ପ୍ରଭୁତ୍ୱର ବିରୋଧ କରିବା । ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର କୋଶଳ ପ୍ରଦେଶ ଗଠନ ତଥା ସମ୍ବଲପୁରୀ ଭାଷା ନିମନ୍ତେ ସରକାରୀ ମାନ୍ୟତାର ଦାବି ତଥା ସମ୍ବଲପୁରୀରେ ଚଳଚ୍ଚିତ୍ର ନିର୍ମାଣ, ସାହିତ୍ୟ ରଚନା ଏବଂ ଯୋଜନାବଦ୍ଧ ଭାବେ ପଶ୍ଚିମ ଓଡ଼ିଶାର ଐତିହାସିକ ବ୍ୟକ୍ତିତ୍ୱମାନଙ୍କର ପ୍ରତିଭାପୂଜାକୁ ଆନ୍ଦୋଳନର ଛାୟାରେ ଦେଖାଯାଇପାରେ । ମୋଟ କଥା ହେଲା, ସମ୍ବଲପୁରୀ ସଂସ୍କୃତିର ସ୍ୱାତନ୍ତ୍ର୍ୟ ରକ୍ଷା ଏବଂ ଓଡ଼ିଆ ପ୍ରଭୁତ୍ୱର ବିରୋଧ ହେଲା ସମ୍ବଲପୁରୀ ଆନ୍ଦୋଳନର ଦୁଇଟି ବିଶେଷ ଚରିତ୍ର ।

ସମ୍ବଲପୁରୀ ଆନ୍ଦୋଳନର ଆରମ୍ଭ କେବେ- ତା'ର ସଠିକ୍ ତାରିଖ ନିର୍ଦ୍ଧାରଣ ହୁଏତ ଏକ କାଠିକର ପାଠ । ତା' ସତ୍ତ୍ୱେ ମନେହୁଏ ୧୯୨୦ ଦଶକରେ ସ୍ୱାଧୀନତା ଆନ୍ଦୋଳନ ସମୟରେ ଆନ୍ଦୋଳନ କିଛିଟା ମୁଣ୍ଡଟେକେ । ୧୯୨୨ ମସିହାରେ ଚୌରିଚୌରା ଘଟଣା ପରେ ଯେତେବେଳେ ଅସହଯୋଗ ଆନ୍ଦୋଳନରେ ଭଟ୍ଟା ପଡ଼ିଲା, ଆଞ୍ଚଳିକତା ଆଧାରରେ ସମ୍ବଲପୁରର କଂଗ୍ରେସ ନେତାମାନେ ଉତ୍କଳ ପ୍ରାଦେଶିକ କଂଗ୍ରେସର ବିରୋଧ କଲେ ଏବଂ କିଛି ସମୟ ପାଇଁ ଜିଲ୍ଲା କଂଗ୍ରେସକୁ ସେଣ୍ଟ୍ରାଲ୍ ପ୍ରଭିନ୍ସର କଂଗ୍ରେସ ଶାଖା ସହ ସାମିଲ କରିନେଲେ । ସେମାନଙ୍କର ଅଭିଯୋଗ ଥିଲା ଯେ, ଉତ୍କଳ ପ୍ରଦେଶ କଂଗ୍ରେସ ଶାଖା ସମ୍ବଲପୁର ଜିଲ୍ଲା କଂଗ୍ରେସକୁ ନିରନ୍ତର ହେୟ ମନେ କରୁଛି । ଅଭିଯୋଗକୁ ସେମାନେ ମହାତ୍ମା ଗାନ୍ଧିଙ୍କଠାରେ ମଧ୍ୟ ଉପସ୍ଥାପିତ କରିଥିଲେ ।[୧] ସେ ଯାହାହେଉ, ୧୯୨୭ ମସିହା ପରଠାରୁ ପୁଣି ଯେତେବେଳେ ସ୍ୱାଧୀନତା ଆନ୍ଦୋଳନରେ ଜୁଆର ଆସିଲା, ସମ୍ବଲପୁରର ବିରୋଧ ଶେଷ ହେଲା ଏବଂ ସ୍ଥାନୀୟ ନେତୃବୃନ୍ଦ ପୁଣି ଥରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ଶାଖାର ଅଂଗ ହେଲେ । ସେହି ସମୟରେ ଗୋଦାବରୀଶ ମିଶ୍ର ଏକ ନିବଂଧରେ ଉଲ୍ଲେଖ କରିଛନ୍ତି ଯେ, ପଶ୍ଚିମ ଓଡ଼ିଶା ବା ସମ୍ବଲପୁର ଲୋକଙ୍କ ପ୍ରତି ଉପକୂଳ ଅଞ୍ଚଳରେ, ବିଶେଷ କରି ପୁରୀ ଜଗନ୍ନାଥ ମନ୍ଦିରରେ ଅହେତୁକ ବିଦ୍ରୂପ କରାଯାଏ, ଯାହାର ପ୍ରମୁଖ କାରଣ ହେଲା ଉଭୟ ଓଡ଼ିଶା ମଧ୍ୟରେ ଯୋଗାଯୋଗର ଅଭାବ । ଗୋଦାବରୀଶ ଏ ପ୍ରକାର ବିଦ୍ରୂପ ଭାବର କେବଳ ଯୁକ୍ତିହୀନତା ଦର୍ଶାଇ ନାହାନ୍ତି, ବରଂ ସମ୍ବଲପୁର ଲୋକଙ୍କ ବନ୍ଧୁପ୍ରୀତି ତଥା ସରଳତାର ଘୋର ପ୍ରଶଂସା କରିଛନ୍ତି ।[୨] ମୋଟ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ, ବିଂଶ ଶତାବ୍ଦୀର ଆରମ୍ଭବେଳେ ମଧ୍ୟ ସମ୍ବଲପୁରୀ ଲୋକ ଓ ସଂସ୍କୃତି ପ୍ରତି ଉପକୂଳ ଅଞ୍ଚଳରେ କିଛିଟା ବିଦ୍ରୂପ ତଥା ହେୟ ଭାବ ରହିଥିଲା ଏବଂ ପ୍ରତ୍ୟୁତ୍ତରରେ ସମ୍ବଲପୁରର ନେତୃସ୍ଥାନୀୟ ଲୋକ ତାର ବିରୋଧ କରି ସ୍ୱାତନ୍ତ୍ର୍ୟ ଦାବି କରୁଥିଲେ ।

ସମ୍ବଲପୁରୀ ଏକ ବ୍ୟାପକ ଆନ୍ଦୋଳନ । ଭାଷା, ସଂସ୍କୃତି, ସାହିତ୍ୟ, କଳା, କାରିଗରୀ ଆଦି ଆନ୍ଦୋଳନର ଅନେକ ଦିଗ । ସବୁ ଦିଗକୁ ନେଇ ବିଷଦ ଆଲୋଚନା ନିଶ୍ଚିତ ରୂପେ ସମୟ ସାପେକ୍ଷ । ତେଣୁ ଶଂସିତ ନିବନ୍ଧରେ କେବଳ ଭାଷା ଓ ସାହିତ୍ୟ ଯାଏଁ ଆଲୋଚନାକୁ ସୀମିତ କରାଯାଇଛି । ଆନ୍ଦୋଳନର ସାମଗ୍ରିକ ରୂପ ଦେଖିବା ନିମନ୍ତେ ଏହା ଯଥେଷ୍ଟ ନୁହେଁ; ତଥାପି ସେ ଦିଗରେ ଏହାକୁ ଏକ ଲଘୁ ପଦକ୍ଷେପ ରୂପେ ନିଆଯାଇପାରେ ।

ସମ୍ବଲପୁରୀ ଭାଷା ଆନ୍ଦୋଳନକୁ ନେଇ ଓଡ଼ିଆ ବୁଦ୍ଧିଜୀବୀ ମହଲରେ ସାଧାରଣତଃ ଦୁଇ ପ୍ରକାର ଅଭିମତ । ଗୋଟାଏ ସମ୍ପୂର୍ଣ୍ଣ ତିରସ୍କାର ଏବଂ ଅସୂୟା ଭାବ, ଅନ୍ୟଟି ପୂର୍ଣ୍ଣ ସମର୍ଥନ ଓ ପ୍ରକାରାନ୍ତରେ କରୁଣାଭାବ । ତିରସ୍କାର ଭାବ ସମ୍ବଲପୁରୀ ଭାଷା ଆନ୍ଦୋଳନକୁ ସ୍ୱୀକାର କରେ ନାହିଁ । ସମ୍ବଲପୁରୀ ତା' ପାଇଁ ଓଡ଼ିଆର ଏକ ଉପଭାଷା ମାତ୍ର, ସ୍ୱତନ୍ତ୍ର ଭାଷା ଓ ସାହିତ୍ୟ ହେବାର ଅନ୍ତଃଶକ୍ତି ତାର ନାହିଁ । ବିଶେଷକରି ଗତ ଶତାବ୍ଦୀର ଅଶୀ ଦଶକରେ ସମ୍ବଲପୁରୀ ଭାଷା ଆନ୍ଦୋଳନ ଯେତେବେଳେ ମୁଣ୍ଡ ଟେକେ, ତା'ର ପ୍ରତିକ୍ରିୟା ସ୍ୱରୂପ ଏହି ଭାବ ଉପକୂଳ ଅଞ୍ଚଳର ପତ୍ରପତ୍ରିକାରେ ଦେଖିବାକୁ ମିଳେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ ସତ୍ୟନାରାୟଣ ରାଜଗୁରୁଙ୍କ 'ଓଡ଼ିଆ ଉପଭାଷା' (୧୯୮୨) ଏବଂ ଗୋପବନ୍ଧୁ ରଥଙ୍କର 'ପଶ୍ଚିମ ଓଡ଼ିଶାର କଥିତ ଭାଷା' (୧୯୮୮) ଆଦି ପୁସ୍ତକଗୁଡ଼ିକୁ ଏହି ସଂଦର୍ଭରେ ଦେଖା ଯାଇପାରେ । ପୁସ୍ତକ ଗୁଡ଼ିକର ଶୀର୍ଷକରୁ ପ୍ରତୀୟମାନ ହୁଏ ଯେ, ସମ୍ବଲପୁରୀକୁ ସେମାନେ ଓଡ଼ିଆର 'ଉପଭାଷା' ସ୍ତରରେ ରଖନ୍ତି ଏବଂ ପରୋକ୍ଷରେ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ଦେବା ବିରୁଦ୍ଧରେ ।

ଅନ୍ୟ ପକ୍ଷରେ ପୂର୍ଣ୍ଣ ସମର୍ଥନ ଏବଂ କରୁଣାଭାବ ସାଧାରଣତଃ ସମ୍ବଲପୁରୀର ସହୃଦୟଙ୍କଠାରେ ଦେଖିବାକୁ ମିଳିଥାଏ । ଏହା ସମ୍ବଲପୁରୀକୁ ଏକ ସ୍ୱୟଂସଂପୂର୍ଣ୍ଣ ଭାଷା ଓ ସାହିତ୍ୟ ବୋଲି ବିଚାର କରେ ଏବଂ ସହୃଦୟତାର ନିଦର୍ଶନ ସ୍ୱରୂପ ଉକ୍ତ ଭାଷା ଆନ୍ଦୋଳନର ବିସଂଗତିଗୁଡ଼ିକୁ ମଧ୍ୟ ଉପେକ୍ଷା କରେ । ଫଳରେ ନିଜର ସମସ୍ତ ସହୃଦୟତା ସତ୍ତ୍ୱେ, ଏହା ଆନ୍ଦୋଳନର ମଂଗଳ କରେ ବୋଲି କହିହେବ ନାହିଁ । ସମ୍ବଲପୁରୀ ଏକ ବଳିଷ୍ଠ ଭାଷା ଆନ୍ଦୋଳନ ହେଉ, ତା'ର ସାହିତ୍ୟିକ ସଂଭାର ବୃଦ୍ଧି ପାଉ ତଥା ସୃଜନଶୀଳତା କ୍ଷେତ୍ରରେ ତାହା ନୂଆ କୀର୍ତ୍ତିମାନ ସ୍ଥାପନ କରୁ । ଏହି ଉଦ୍ଦେଶ୍ୟ ନେଇ ଯଦି କେହି ସମ୍ବଲପୁରୀର ସହୃଦୟ, ତେବେ ଆନ୍ଦୋଳନର ବିସଂଗତି ଗୁଡ଼ିକୁ ଦୃଷ୍ଟି ଦେବା ଏକାନ୍ତ ବିଧେୟ । ଅନ୍ୟ ଶବ୍ଦରେ,

କରୁଣା ଭାବ ଆନ୍ଦୋଳନର ବିସଂଗତିକୁ ଉପେକ୍ଷା କରିବା କାରଣରୁ, ଆନ୍ଦୋଳନକୁ ଆତ୍ମମନ୍ଥନ ନିମନ୍ତେ ଯଥେଷ୍ଟ ଅବସର ଦିଏ ନାହିଁ ।

ମୋଟ କଥା ହେଲା, ସମ୍ବଲପୁରୀ ଭାଷା ଆନ୍ଦୋଳନର ପ୍ରକୃତ ମୂଲ୍ୟାଙ୍କନ ହେବା ଉଚିତ, ଯାହା ନା ଅସୂୟା ଭାବ ଦ୍ୱାରା ସଂଭବ, ନା ସଂଭବ କରୁଣାଭାବ ଦ୍ୱାରା । ଆନ୍ଦୋଳନକୁ ଇତିହାସ ଦୃଷ୍ଟିରେ ପରଖି ତା'ର ବସ୍ତୁନିଷ୍ଠ ଆଲୋଚନା ହେବା ବାଞ୍ଛନୀୟ । ପ୍ରସ୍ତୁତ ନିବନ୍ଧଟି ସେହି ଦିଗରେ ଏକ ସମ୍ୟକ୍ ପ୍ରୟାସ ମାତ୍ର ।

ମନେହୁଏ ସମ୍ବଲପୁରୀ ଭାଷାକୁ ନେଇ ପ୍ରଥମେ ସ୍ୱପ୍ନେଶ୍ୱର ଦାସ ସ୍ୱ-ସଂପାଦିତ 'ସାଧନା' (ସମ୍ବଲପୁର) ପତ୍ରିକାରେ ୧୯୨୦ ଦଶକରେ ଆଲୋଚନା ଆରମ୍ଭ କଲେ । ତାଙ୍କ ମତରେ ପଶ୍ଚିମ ଓଡ଼ିଶାରେ ଯେବେ ଜନ୍ ବସତି ଆରମ୍ଭ ହେଲା, ପ୍ରଥମେ ଆଦିବାସୀ ଏବଂ ତା' ଉତ୍ତାରୁ 'ତଳ' ଜାତିର ଲୋକ ଆସି ରହିଲେ । ଉଭୟଙ୍କ ମଧ୍ୟରେ ଯେଉଁ ସଂପର୍କର ଭାଷା ଗଢ଼ି ଉଠିଲା ପରବର୍ତ୍ତୀ ସମୟରେ ତାହାହିଁ ସମ୍ବଲପୁରୀ ଭାଷା, ପଶ୍ଚିମ ଓଡ଼ିଶାର ଲୋକଭାଷା । ଗମନାଗମନର ସମସ୍ୟା ଯୋଗୁଁ ସମଗ୍ର ଅଂଚଳ ଅନ୍ୟ ଅଂଚଳକୁ ଭିନ୍ନ ହେଲା ଏବଂ ଏକ ନିରୋଳା ସାଂସ୍କୃତିକ ତଥା ଭାଷାଭିତ୍ତିକ ଖଣ୍ଡ ରୂପେ ବିକଶିତ ହେଲା, ଅନ୍ୟ ଭାଷା ଓ ସଂସ୍କୃତିଠାରୁ ନିଜର ବୈଶିଷ୍ଟ୍ୟ ବଜାୟ ରଖିଲା । କାଳକ୍ରମରେ ଭାଷାରୁ ଜାତ ହେଲା ଲୋକ ସାହିତ୍ୟ ଓ ତେଣିକି ଲେଖାସାହିତ୍ୟ । ସେ ଯାହାହେଉ, ବିଂଶ ଶତାବ୍ଦୀର ଅଶୀ ଦଶକ ଯାଏଁ ଏହାର ଲେଖାସାହିତ୍ୟ ମୁଖ୍ୟତଃ ଗୀତି-କବିତା ଯାଏଁ ସୀମିତ ଥିଲା କହିଲେ ଚଳିବ । ଗୀତି କବିତାର ଜନପ୍ରିୟତା ସମ୍ବଲପୁରୀକୁ ଓଡ଼ିଶା ବାହାରେ ମଧ୍ୟ ପରିଚିତି ଦେଇଥିଲା । ସେତେବେଳକୁ ଜନପ୍ରିୟ କବିଙ୍କ ମଧ୍ୟରେ ଥିଲେ ଲାଲ ରତ୍ନାକର ସିଂ, ରାମପ୍ରସାଦ ପୁରୋହିତ, ମିତ୍ରଭାନୁ ଗୌନ୍ତିଆ, ମଂଗଳୁ ଚରଣ ବିଶ୍ୱାଳ ତଥା ମୁରାରୀ ପ୍ରସାଦ ମିଶ୍ର ଆଦି । ଅନ୍ୟ ଚର୍ଚ୍ଚିତ ଲେଖକଙ୍କ ମଧ୍ୟରେ ସତ୍ୟନାରାୟଣ ବହିଦାର (ସମ୍ବଲପୁରୀ ବ୍ୟାକରଣ), ସପ୍ନେଶ୍ୱର ଦାସ (ସଂପାଦକ-ସାଧନା), ଖଗେଶ୍ୱର ସେଠ (ପଏର୍ଚ୍ଛାସତି), କପିଳ ମହାପାତ୍ର (ବିଚିତ୍ର ରାମାୟଣ) ଓ ଅଟଳ ବିହାରୀ ପଣ୍ଡାଙ୍କୁ (ନାଟକ-ଫଟା କପାଳ) ଗଣାଯାଇ ପାରେ ।[୩] ଏହି ସମୟରେ ପତ୍ର-ପତ୍ରିକାର ଅଭାବ ଯୋଗୁଁ ଭାଷା-ସାହିତ୍ୟର ପ୍ରସାର କାର୍ଯ୍ୟ ମୁଖ୍ୟତଃ ସମ୍ବଲପୁର ଆକାଶବାଣୀ କେନ୍ଦ୍ର ଦ୍ୱାରା ସମ୍ଭବ ହୋଇ ପାରିଥିଲା । ସେଥିରେ ଗୀତ-ନାଟକର ପରିବେଷଣ ତଥା ସ୍ଥାନୀୟ ଭାଷା-ସଂସ୍କୃତି ବିଷୟକ ଚର୍ଚ୍ଚା ଆନ୍ଦୋଳନକୁ ବଂଚି ରହିବା ପାଇଁ ଯଦ୍ କିଂଚିଦ୍ ସାହାଯ୍ୟ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଂଶ ଶତାବ୍ଦୀର ଅଶୀ ଓ ନବେ ଦଶକକୁ ସମ୍ବଲପୁରୀର ଏକ ବିଶିଷ୍ଟ କାଳଖଣ୍ଡ ରୂପେ ଦେଖାଯୋଇପାରେ । ପ୍ରଥମ ଚଳଚ୍ଚିତ୍ର 'ଭୁଖା' (ନିର୍ଦ୍ଦେଶକ-ସବ୍ୟସାଚି ମହାପାତ୍ର), ପ୍ରଥମ ଉପନ୍ୟାସ ବିଲାସିନି (ଧନପତି ମହାପାତ୍ର, ୧୯୯୦), କୋଶଲୀ ଭାଷାର ସଂକ୍ଷିପ୍ତ ପରିଚୟ (ପ୍ରୟାଗ ଦତ୍ତ ଜୋଷୀ-୧୯୯୧), ଟିଟିଲାଗଡ଼ରେ ଦୋଳ ଗୋବିନ୍ଦ ବିଶିଂଙ୍କ ଉଦ୍ୟମରେ କୋଶଳ ସାହିତ୍ୟ ଏକାଡେମୀର ସ୍ଥାପନା, ପ୍ରଫୁଲ୍ଲ ତ୍ରିପାଠୀଙ୍କ ସମ୍ବଲପୁରୀ-ଓଡ଼ିଆ ଭାଷାକୋଷ, ନୀଳମାଧବ ପାଣିଗ୍ରାହୀଙ୍କ 'ମହାଭାରତ କଥା' ଏବଂ ପତ୍ରିକା- 'ନିସାନ', ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ସାତଖଣ୍ଡରେ ଲିଖିତ 'ରାମ ରାହା' ଓ କାବ୍ୟ 'ସତର ସତି ବୃନ୍ଦାବତୀ', ପ୍ରହ୍ଲାଦ ଦାସଙ୍କ ସଂପାଦନାରେ ସମ୍ବଲପୁରରୁ ଅନିୟମିତ ଭାବେ ପ୍ରକାଶିତ ପତ୍ରିକା 'ଆର୍ଟ୍ ଓ ଆର୍ଟିଷ୍ଟ', ଉତ୍ପନ୍ନ ଭୋଇଙ୍କ ସଂପାଦନାରେ ବରଗଡ଼ରୁ ପ୍ରକାଶିତ 'କଥା ଆଉ କଥାନି' ତଥା ହଳଧର ନାଗଙ୍କ ଗ୍ରନ୍ଥାବଳୀ ଏହି ସମୟର ସୃଷ୍ଟି । ଅନ୍ୟ ଅର୍ଥରେ କହିଲେ, ସଂଖ୍ୟା ବେଶୀ ନ ହେଲେ ସୁଦ୍ଧା, ବିଗତ କୋଡ଼ିଏ ବର୍ଷ ମଧ୍ୟରେ ସମ୍ବଲପୁରୀ ନାଟକ, କାବ୍ୟ, ଗଳ୍ପ, କବିତା, ଆଲୋଚନା, ଭାଷାକୋଷ ତଥା ବ୍ୟାକରଣ ରଚିତ ହୋଇଛି, ଚଳଚିତ୍ର ନିର୍ମାଣ ହୋଇଛି । ସଭାସମିତିରେ ବକ୍ତା ସମ୍ବଲପୁରୀରେ କହିବାକୁ ପସନ୍ଦ କରୁଛନ୍ତି । ଗଣମାଧ୍ୟମଗୁଡ଼ିକରେ ଗୀତ ସାଙ୍ଗକୁ ଅନ୍ୟ କେତେକ କାର୍ଯ୍ୟକ୍ରମ ମଧ୍ୟ ସମ୍ବଲପୁରୀରେ ପ୍ରସାରିତ ହେଉଛି । ସମ୍ବଲପୁରୀ ଗୀତ ଓ କ୍ୟାସେଟର ବ୍ୟାପକ ଜନପ୍ରିୟତା ସମଗ୍ର ଓଡ଼ିଶା ପାଇଁ ମଧ୍ୟ ଗର୍ବ ଆଣି ଦେଉଛି । ଏକ ଭାଷା ଆନ୍ଦୋଳନକୁ ବଳିଷ୍ଠ କରି ଗଢ଼ିବାରେ ଏ ସବୁ ଉଦ୍ୟମର ଅବଦାନ କିଛି କମ୍ ନୁହେଁ ।

ବିଗତ ଦୁଇ ଦଶଂଧି ମଧ୍ୟରେ ସମ୍ବଲପୁରୀର ଆଶୁ ସଂବୃଦ୍ଧି ପଛରେ କାରଣ ରୂପେ ଆଞ୍ଚଳିକ ସ୍ୱାଭିମାନ ଓ ସ୍ୱାୟତ୍ତତା ପ୍ରଶ୍ନକୁ ନେଇ ସର୍ବଭାରତୀୟ ସ୍ତରରେ ସଂଘଟିତ ହେଉଥିବା ବିଭିନ୍ନ ଆନ୍ଦୋଳନକୁ ଦେଖାଯାଇପାରେ । ଗୋଟାଏ ପକ୍ଷରେ ଜଗତୀକରଣର ତୀବ୍ର ଯାତନା, ଦେଶର ଶାସକ ବର୍ଗ ହାତରେ ଅସ୍ତ୍ର ରୂପେ 'ରାଷ୍ଟ୍ରବାଦ'ର 'ବ୍ୟବହାର' ଏବଂ ଅନ୍ୟ ପକ୍ଷରେ 'ଓଡ଼ିଶାର ମହାବାତ୍ୟା' 'ଗୁଜୁରାଟ ଭୂମିକମ୍ପ' ତଥା 'କାରିଗିଲ୍' ଆଦି ପ୍ରସଙ୍ଗକୁ ନେଇ ଲୋକାଭିମୁଖୀ ରାଷ୍ଟ୍ରୀୟ ଚେତନା ଓ ଆଞ୍ଚଳିକ ଭାଷା ସଂସ୍କୃତି ଓ ଅଧିକାରଭିତ୍ତିକ ସ୍ୱାଭିମାନର ଆନ୍ଦୋଳନଗୁଡ଼ିକୁ ଦୃଷ୍ଟି ଦେଲେ, ମନେ ହୁଏ ଶାସକୀୟ ରାଷ୍ଟ୍ରୀୟତା ଓ ଲୌକିକ ରାଷ୍ଟ୍ରୀୟତା ମଧ୍ୟରେ ଯଥେଷ୍ଟ ତାରତମ୍ୟ ରହିଛି । ଦ୍ୱିତୀୟରେ ଲୋକଙ୍କ ଦୃଷ୍ଟିରେ ରାଷ୍ଟ୍ରୀୟ ପ୍ରଶ୍ନ ଓ ଆଞ୍ଚଳିକ ପ୍ରଶ୍ନ ଏକା ପରିମାଣରେ ମହତ୍ତ୍ୱପୂର୍ଣ୍ଣ । ଫଳରେ, ଗୋଟାକର ଉପେକ୍ଷା ଅନ୍ୟଟିକୁ

ଦୋଦୁଲ୍ୟମାନ କରେ । 'କାରଗିଲ୍'ରେ ଭାରତୀୟ ଜବାନର ନିହତ ହେବା ଖବର ଶୁଣି ବ୍ୟକ୍ତି ଯେତେ ବ୍ୟଥିତ ହୁଏ, ବେଶି ନହେଲେ ବି ସେତେ ବ୍ୟଥିତ ହୁଏ ତା' ଆଂଚଳିକ ସ୍ୱାଭିମାନକୁ ଉପେକ୍ଷା କରାଗଲେ । ସବୁଠାରୁ ବଡ଼ କଥା, ଉଭୟ ରାଷ୍ଟ୍ରୀୟ ଓ ଆଂଚଳିକ ସ୍ୱାଭିମାନଭିତ୍ତିକ ପ୍ରଶ୍ନ ମଧ୍ୟରେ ସଂପୂର୍ଣ୍ଣ ପରିପୂରକତା ରହିଛି । କେହି କାହାରି ପରିପନ୍ଥୀ ନୁହନ୍ତି । ପରିପୂରକତାକୁ ଶାସକବର୍ଗ କେବଳ ପରଖି ପାରିବା କଥା ! ନିଜ ଅସ୍ମିତାକୁ ଜାହିର କରିବାମାନେ ଅନ୍ୟର ଅସ୍ମିତାକୁ ଅସ୍ୱୀକାର କରିବା କଦାପି ଆବଶ୍ୟକତା ହୋଇ ନପାରେ । ଏହି ସଂଦର୍ଭରେ ସମ୍ବଲପୁରୀ ଭାଷା ଆନ୍ଦୋଳନକୁ ମଧ୍ୟ ଦେଖାଯାଇ ପାରେ । ଏହା ନା ଭାରତୀୟତାର ବିରୋଧୀ, ନା ଓଡ଼ିଆ ପ୍ରାନ୍ତୀୟତାର ପରିପନ୍ଥୀ । ଆଞ୍ଚଳିକ ସ୍ୱାଭିମାନ ରକ୍ଷାର୍ଥେ ଏହା ଏକ ଉଦ୍ୟମ ମାତ୍ର ।

ସମ୍ବଲପୁରୀ ସାହିତ୍ୟର ପରିସୀମାକୁ ଯଦି ମପାଯାଏ, ତେବେ ଅନୁମିତ ହେବ ଯେ ଏହାର ମୁଖ୍ୟ ଧାରା ହେଲା ରୀତିଯୁଗୀୟ ପରମ୍ପରା; ମାତ୍ର କେତୋଟିକୁ ବାଦ୍‌ଦେଲେ, ପ୍ରାୟ ସମ୍ବଲପୁରୀ ଲେଖାର (ଏଥିରେ କେସେଟ ବି ଅନ୍ତର୍ଭୁକ୍ତ) ବିଷୟବସ୍ତୁ ପ୍ରଭୁ ଓ ଧର୍ମର ସ୍ତୁତିଚାରଣ କିମ୍ବା ନାରୀର ରୂପ-ଗୁଣ ବର୍ଣ୍ଣନା ଯାଏଁ ସୀମିତ, ପଦ୍ୟଗୁଡ଼ିକ ଛନ୍ଦବଦ୍ଧ, ଲୟବଦ୍ଧ । ଭଲ କଥା; କିନ୍ତୁ ଏହାଦ୍ୱାରା କ'ଣ 'ଧର୍ମ' ବାହାରେ ଥିବା ସମୂହ ବାଦ୍ ପଡ଼ିଲେ ନାହିଁ ? ଦ୍ୱିତୀୟତଃ, ଏଥିରୁ କ'ଣ ସାହିତ୍ୟର ପୁରୁଷକେନ୍ଦ୍ରିକତା ଜଣାପଡୁନି ? ସବୁଠାରୁ ବଡ଼ କଥା, କୌଣସି ସ୍ୱୟଂ ସମ୍ପୂର୍ଣ୍ଣ ଭାଷା ଓ ସାହିତ୍ୟ କେବଳ ଗୋଟାଏ ସାହିତ୍ୟିକ ଶୈଳୀ ଓ ବିଷୟକୁ ମୁଖ୍ୟ ଏବଂ ଅନ୍ୟ ଦିଗଗୁଡ଼ିକୁ ଗୌଣମନେ କରି ନ ପାରେ । ଏହି ଦୃଷ୍ଟିରୁ ସମ୍ବଲପୁରୀର ଶୈଳୀ ଓ ବିଷୟବସ୍ତୁକୁ ବିବିଧତାପୂର୍ଣ୍ଣ ହେବାକୁ ପଡ଼ିବ । ବିଷୟବସ୍ତୁର ପରିଧି ଯଦି ସୀମିତ, ସାହିତ୍ୟ ସମ୍ଭାର ମଧ୍ୟ ସୀମିତ ହେବାର ଡର । ତା' ଛଡ଼ା କେବଳ ସାହିତ୍ୟ ଯାଏଁ ସୀମିତ ରହି ଏହା କେବେ ଏକ 'ବିକଶିତ' ଭାଷା ହୋଇ ନପାରେ । ଇତିହାସ, ବିଜ୍ଞାନ, ଦର୍ଶନ, କଳା, ଗଣିତ ଆଦି ପ୍ରତ୍ୟେକ ବିଷୟରେ ସାମଗ୍ରୀ ସମ୍ବଲପୁରୀରେ ପ୍ରସ୍ତୁତ ହେବା କଥା । ଏହି ପରିପ୍ରେକ୍ଷୀରେ କେବଳ ସମ୍ବଲପୁରୀ କାହିଁକି ତଥାକଥିତ 'ବିକଶିତ' ଭାଷା ଓଡ଼ିଆ ଓ ହିନ୍ଦୀ ଆଦି ମଧ୍ୟ କେତେ ମାତ୍ରାରେ ସ୍ୱୟଂ ସଂପୂର୍ଣ୍ଣ ଓ ବିକଶିତ ତାହା ପରୀକ୍ଷଣୀୟ !

ପ୍ରାୟତଃ ପକ୍ଷଧରମାନେ ସମ୍ବଲପୁରୀ ଓ ଓଡ଼ିଆକୁ ପ୍ରତିଯୋଗୀ ମନେ କରନ୍ତି । ତାଙ୍କ ଯୁକ୍ତିରେ ଏହା ଓଡ଼ିଆର ଉପଭାଷା ନୁହେଁ, ଏକ ସ୍ୱତନ୍ତ୍ର ଭାଷା । ତାକୁ ସାଂବିଧାନିକ ସ୍ୱୀକୃତି ଦରକାର । ଏହାର ଶବ୍ଦାବଳୀ ମୂଳ ସଂସ୍କୃତରୁ ଆନୀତ,

ସମ୍ବଲପୁରୀ ଭାଷା ମଧ୍ୟ ଓଡ଼ିଆ ପରି ବଳିଷ୍ଠ ଓ ସୁଦୃଢ଼ । ଊନବିଂଶ ଶତାବ୍ଦୀରେ ବଙ୍ଗଳା ଭାଷା ବିରୁଦ୍ଧରେ ଓଡ଼ିଆ ଯେଉଁ ରୂପରେ ଖଡ୍‌ଗହସ୍ତ ହୋଇଥିଲା, ଆଜି ସମ୍ବଲପୁରୀ ମଧ୍ୟ ଓଡ଼ିଆ ବିରୁଦ୍ଧରେ ତଦ୍ରୂପରେ ଖଡ୍‌ଗହସ୍ତ; ମାତ୍ର ସାମ୍ବିଧାନିକ ମଂଜୁରୀ ଦାବି ପକ୍ଷଧରଙ୍କ ଏକମାତ୍ର ଉଦ୍ଦେଶ୍ୟ ହେବା କଥା ନୁହେଁ । ନିଜ ସୃଜନଶୀଳତାକୁ କେବଳ ନକାରାତ୍ମକ ଦିଗରେ ବ୍ୟବହାର ନ କରି ବରଂ ସାହିତ୍ୟିକ ଆଧାରକୁ ପରିପୁଷ୍ଟ କରିବାରେ ବିନିଯୋଗ କଲେ ଯଥେଷ୍ଟ ଭଲ । ନକାରାତ୍ମକତା କୌଣସି ସାହିତ୍ୟର ମୁଖ୍ୟ ପ୍ରସଙ୍ଗ ହେବା ଅନୁଚିତ । ଏହା ସାହିତ୍ୟର ସ୍ତର ହ୍ରାସ କରାଏ । ଦ୍ୱିତୀୟରେ ଭାଷା-ଭାଷା ମଧ୍ୟରେ ଶାସ୍ୱତ ସଂପର୍କ । ଗୋଟାଏ ଭାଷା ଅନ୍ୟର ପରିପନ୍ଥୀ ହୋଇଥିଲେ, ଯୁଗ ଯୁଗ ଧରି ଜଗତରେ ଏତେଗୁଡ଼ାଏ ଭାଷା ବଂଚି ପାରି ନ ଥାନ୍ତା । ପ୍ରତିଯୋଗିତା ହେଲା 'ଆଧୁନିକତା'ର ଦାନ, ପୁଂଜିବାଦୀ ଚରିତ୍ର । ତଣ୍ଟିକଟା ପ୍ରତିଯୋଗିତା ଆଧାରରେ ଯେତେବେଳେ 'ଆଧୁନିକ' ମଣିଷ 'ବିକାଶ'ର ବାଟ ଖୋଜୁଛି, ଭାଷା ସାହିତ୍ୟ ବା ତହିଁରୁ ବାଦ ଯିବେ କେମିତି ? ତେଣୁ ପ୍ରତିଯୋଗିତାର ମୋହରେ ନ ପଡ଼ି ସମ୍ବଲପୁରୀର ପକ୍ଷଧରଙ୍କୁ ଅନ୍ତଃମନରେ ସ୍ୱ-ସାହିତ୍ୟିକ ସୃଜନଶୀଳତାକୁ ପ୍ରମୁଖତା ଦେବାକୁ ପଡ଼ିବ, ଶବ୍ଦ ଓ ସାହିତ୍ୟ ଭଣ୍ଡାରକୁ ସଂବୃଦ୍ଧ କରିବାକୁ ହେବ, ପ୍ରକାଶନର ସ୍ତର ବୃଦ୍ଧି କରିବାକୁ ହେବ, ପାଠକୀୟ ପରିଧିକୁ ପରିବ୍ୟାପ୍ତ କରିବାକୁ ପଡ଼ିବ । ଆଜିର ବିଶ୍ୱ ସାହିତ୍ୟ ଜଗତରେ ସମ୍ବଲପୁରୀଠାରୁ ଓଡ଼ିଆ ସାହିତ୍ୟର ସ୍ଥାନ ଊର୍ଦ୍ଧ୍ୱରେ ନିଶ୍ଚୟ । ମାତ୍ର ସେହି ଊର୍ଦ୍ଧ୍ୱତ୍ୱ ଦକ୍ଷିଣ ଏସିଆର ଭାରତର ଊର୍ଦ୍ଧ୍ୱତ୍ୱ ପରି । ତେଣୁ ଓଡ଼ିଆର କେବଳ ବିରୋଧ ସମ୍ବଲପୁରୀ ପକ୍ଷରେ ଶକ୍ତିର ଅପଚୟ ମାତ୍ର ।

ଓଡ଼ିଆ ବିରୁଦ୍ଧରେ ସମ୍ବଲପୁରୀ ପକ୍ଷଧରମାନେ ଖଡ୍‌ଗହସ୍ତ କାହିଁକି ? ମନେହୁଏ, ଏଥିପାଇଁ ସମ୍ବଲପୁରୀ ପ୍ରତି କତିପୟ ଓଡ଼ିଆଭାଷୀଙ୍କ ଅସୂୟାଭାବ ହିଁ ମୁଖ୍ୟତଃ ଦାୟୀ । ସାରସ୍ୱତ ଭଣ୍ଡାରରେ ସୃଜନଶୀଳତାର ଗୁଣାତ୍ମକ ମାନ ବୃଦ୍ଧି କେବେ କୌଣସି ସାହିତ୍ୟ ପାଇଁ ଭୟର କାରଣ ହୋଇ ନ ପାରେ । ଠିକ୍ ସେମିତି ଅଧିକ କେତୋଟି ଭାଷା ସାହିତ୍ୟର ଉନ୍ମେଷ ଓ ଉତ୍ଥାନ କଳ୍ପନକାଳେ ପ୍ରକୃତ ସାହିତ୍ୟପ୍ରେମୀକୁ ଆତଙ୍କିତ କରି ନ ପାରେ । ମାତ୍ର ଓଡ଼ିଆର କେତେଜଣ ତଥାକଥିତ 'ଶୁଭଚିନ୍ତକ' ସମ୍ବଲପୁରୀର ଉତ୍ଥାନକୁ ସହ୍ୟ କରି ପାରନ୍ତିନାହିଁ । ଏହି ସଂଦର୍ଭରେ ପ୍ରୟାଗଦତ୍ତ ଜୋଷୀଙ୍କର ଅନୁଭୂତି ପ୍ରଣିଧାନ ଯୋଗ୍ୟ । ଭୁବନେଶ୍ୱରର ଏକ ସାହିତ୍ୟ ସଭାରେ ୧୯୮୬ ମସିହାରେ ସେ କୋଶଲୀକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ତର୍କ

ବାଢ଼ିବାରୁ ଓଡ଼ିଆ ସାହିତ୍ୟିକଙ୍କ କଟୂକ୍ତିରେ ସଭା ପରିବେଶ ଏତେ ମାତ୍ରାରେ ସମ୍ବେଦନଶୀଳ ହୋଇ ପଡ଼ିଲା ଯେ, ଅନନ୍ୟୋପାୟ ହୋଇ ଆୟୋଜକଙ୍କୁ ସଭା ଭଙ୍ଗ କରିବାକୁ ପଡ଼ିଲା । ଘଟଣାଟିର ବର୍ଣ୍ଣନା ଯୋଷୀଙ୍କ କୋଶଲୀ ଭାଷାର ସଂକ୍ଷିପ୍ତ ପରିଚୟର ଭୂମିକାରେ ସନ୍ନିବଦ୍ଧ ।[୪] ଜୁଲାଇ ୧୯୮୩ର 'ଝଂକାର'ର ସଂପାଦକୀୟରେ ଉଲ୍ଲେଖ ଅଛି- ସମ୍ବଲପୁରୀ ଭାଷାକୁ ଏକ ସ୍ୱତନ୍ତ୍ର ଭାଷା କରିବାର ଉଦ୍ୟମକୁ ଆମେମାନେ କୌଣସି ପ୍ରକାରେ ସାହାଯ୍ୟ କରିବାରେ ଅସମର୍ଥ ।[୫] ୧୯୮୨ ଜୁଲାଇ ସଂଖ୍ୟାର ଝଙ୍କାର ଲେଖିଥିଲା, 'ଯଦି ଉଦ୍ୟମ କରାହୁଏ ସମ୍ବଲପୁରୀ ଏକ ସ୍ୱତନ୍ତ୍ର ଭାଷା ରୂପେ ଗୃହୀତ ହେଉ, ତେବେ ଏହା ଅବାସ୍ତବ ଏବଂ ବିଚ୍ଛିନ୍ନତା ଭାବବ୍ୟଂଜକ ଏଥିରେ ସନ୍ଦେହ ନାହିଁ ।[୬] ଅସୂୟା ଭାବ କେବଳ ଗୋଟାଏ ପତ୍ରିକା କିମ୍ବା ସଂପାଦକୀୟ ଯାଏ ସୀମିତ ନୁହେଁ । ସାଧାରଣ କଥାବାର୍ତ୍ତାରେ ତଥା ସଭା-ସମିତିରେ ଏହାର ରୂପ ଅତୀବ ତୀବ୍ର ଓ ଉଗ୍ର ମଧ୍ୟ । ଲାଗେ, ସମ୍ବଲପୁରୀ ଭାଷା ବଳିଷ୍ଠ ହେଲେ ଏଭଳି ଓଡ଼ିଆ ପକ୍ଷଧରଙ୍କ କର୍ତ୍ତୃତ୍ୱ ହ୍ରାସ ପାଇବ । ଯଦି କିଛି ଲୋକ ଚାହାନ୍ତି ସେମାନେ ନିଜ ଘର କୁହା ଭାଷାରେ ସାହିତ୍ୟ ଲେଖିବେ ତେବେ ସେଥିରେ ଆଉ କିଛି ଲୋକଙ୍କର ଆପତ୍ତିର ତାର୍କିକତା କେତେ କମ—ତା ହୁଏତ ଇତିହାସ କହିବ ।

ସମ୍ବଲପୁରୀ ପ୍ରତି ହେୟ ଓ ଅସୂୟା ଭାବ ଯୋଗୁଁ ଓଡ଼ିଆ ଭାଷା-ସାହିତ୍ୟରେ ଯଥେଷ୍ଟ ମାତ୍ରାରେ ସମ୍ବଲପୁରୀ ଶବ୍ଦମାନ ଗୃହୀତ ହୋଇ ପାରିନାହିଁ । ଫଳତଃ, ଓଡ଼ିଆ ଶବ୍ଦ ଭଣ୍ଡାର କ୍ରମଶଃ ସଂକୁଚିତ ହୋଇଛି । ଯଦି 'ଚାବି' ଶବ୍ଦ ଓଡ଼ିଆରେ ଉଭୟ 'ଚାବିକାଠି' ଓ 'କାମୁଡ଼ିବା' ଅର୍ଥରେ ବ୍ୟବହୃତ ହୁଏ କିମ୍ବା 'ନନା' ଶବ୍ଦ ଉଭୟ 'ବାପା' ଓ 'ପିଇସୀ' ଅର୍ଥରେ ବ୍ୟବହାର କରାଯାଏ ଓଡ଼ିଆ ଭାଷା କି ତାଦ୍ୱାରା ଦୁର୍ବଳ ହୋଇ ପଡ଼ିବ ? ତେବେ ଉପେନ୍ଦ୍ର ଭଞ୍ଜ 'ନଳିନି' ଶବ୍ଦକୁ ଚାରୋଟି ଅର୍ଥରେ ବ୍ୟବହାର କରି ଓଡ଼ିଆର କ୍ଷତି କଲେ ବୋଲି ବୁଝାଯିବ ? ଓଡ଼ିଶାର ଭୌଗୋଳିକ ପରିଧି ମଧ୍ୟରେ ବାସ କରୁଥିବା ସମସ୍ତ ଜନଗଣଙ୍କ ଭାବ-ଅଭାବ, ବେଗ-ଆବେଗକୁ ଅଭିବ୍ୟକ୍ତ କରୁଥିବା ଭାଷା ଯଦି ଓଡ଼ିଆ, ତେବେ ତହିଁରେ ସମ୍ବଲପୁରୀ ଶବ୍ଦ ଓ ଭାବର ବା ପ୍ରବେଶ ନିଷେଧ ହେବ କାହିଁକି ? ସମ୍ବଲପୁରୀ, ଭତରି, ସାଦରି, ଦେଶିଆ ଆଦି ଭାଷା ବା ଉପଭାଷା ବା 'ବୋଲି'ର ନିଜସ୍ୱ ଶବ୍ଦ ଭଣ୍ଡାର ରହିଛି, ନିଜସ୍ୱ ଉପମା, ଅଳଙ୍କାର ରହିଛି । ସେସବୁର ଅବାଧ ପ୍ରବେଶ ଓଡ଼ିଆକୁ ସଂବୃଦ୍ଧ କରିବ, ଓଡ଼ିଆ ତେଣିକି କେବଳ ବହିର ଭାଷା ନ ହୋଇ ସମସ୍ତ ଓଡ଼ିଶାବାସୀଙ୍କର ଭାଷା ହେବ । ଠିକ୍ ଏକା ଯୁକ୍ତି ସମ୍ବଲପୁରୀ ପାଇଁ । ଦୁଇଟି ପଡ଼ୋଶୀ ଭାଷା ମଧ୍ୟରେ ଶବ୍ଦ ଓ ଭାବର ଆଦାନ ପ୍ରଦାନ ହେଲେ, ଉଭୟ ଭାଷା ଧନୀ ହୁଅନ୍ତି ।

ସମାଜରେ ଯେମିତି କତିପୟ ଅପାଙ୍‌କ୍ତେୟ କିନ୍ତୁ ବଳଶାଳୀ ବ୍ୟକ୍ତି ରାଜୁତି କରନ୍ତି, ଭାଷା ଓ ସାହିତ୍ୟରେ ମଧ୍ୟ ତଦ୍ରୂପ ଅବସ୍ଥା । ନା ଏଥିରୁ ଓଡ଼ିଆ ବ୍ୟତିକ୍ରମ ହୋଇ ପାରିଛି, ନା ସମ୍ବଲପୁରୀ ବ୍ୟତିକ୍ରମ ହୋଇ ପାରିବ ? ଏହି ଅପାଙ୍‌କ୍ତେୟ ସାହିତ୍ୟ ଶାସକମାନେ ନିଜକୁ କେନ୍ଦ୍ରରେ ରଖି ସାହିତ୍ୟର ମାନ ନିର୍ଦ୍ଧାରଣ କରନ୍ତି, ଶବ୍ଦ ଦିଅନ୍ତି । ଫଳରେ ସମ୍ବଲପୁରୀ କାହିଁକି, ଫକୀର ମୋହନ, ଗୋପାଳ ପ୍ରହରାଜଙ୍କ ଅନେକ ଶବ୍ଦ ଓ ଉପମା ଆଜି ଓଡ଼ିଆ ସାହିତ୍ୟର ବିଲୁପ୍ତ ପ୍ରାୟ ସ୍ଥିତିରେ । ପ୍ରକୃତ ସାହିତ୍ୟିକ କେବେ ଶାସକ ଗଢ଼ା ନିୟମରେ ବିଚଳିତ ନ ହୋଇ ସର୍ଜନା କରିବା କଥା । ବର୍ତ୍ତମାନ ସର୍ବସ୍ୱ ସାହିତ୍ୟିକ ହେଲା ବିଶାଳ ସାହିତ୍ୟାକାଶରେ ପାଣି ଫୋଟକା ତୁଲ୍ୟ, ଫର୍ଫରାୟମାନ ସଫରି ପ୍ରାୟ । ଗୋଟାଏ ଭାଷା ଓ ସାହିତ୍ୟର ସମଗ୍ର ରୂପକୁ ନିର୍ଦ୍ଧାରଣ କରିବାର ସାମର୍ଥ୍ୟ ତା'ର କି ଅଛି ?

ଭାଷାର ନାଁକୁ ନେଇ ବିବାଦ ସମ୍ବଲପୁରୀ ଭାଷା ଆନ୍ଦୋଳନର ଏକ ବଡ଼ ବିସଂଗତି । ଦୋଳଗୋବିନ୍ଦ ବିଶି, ପ୍ରୟାଗଦତ୍ତ ଜୋଷୀ ଆଦି ବଲାଂଗୀର, କଳାହାଣ୍ଡିର ଭାଷାବିଦ୍‌ଙ୍କ ମତରେ ସମଗ୍ର ପଶ୍ଚିମ ଓଡ଼ିଶାର ଭାଷାର ନାଁ କୋଶଲୀ ରହିପାରେ । 'କୋଶଳ' ନାଁରେ ପଶ୍ଚିମ ଓଡ଼ିଶା ପରିଚିତ ମଧ୍ୟ । ସମ୍ବଲପୁରୀ ଶବ୍ଦ ସମ୍ବଲପୁର ସହରରୁ ଆନୀତ, ଉପକୂଳ ଅଞ୍ଚଳର ଦିଆ ନାଁ । ଅନ୍ୟ ପକ୍ଷରେ ନୀଳମାଧବ ପାଣିଗ୍ରାହୀ, ହେମଚନ୍ଦ୍ର ଆଚାର୍ଯ୍ୟ ଆଦି ସମ୍ବଲପୁର, ବରଗଡ଼ ଅଞ୍ଚଳର ଭାଷାବିଦ୍ ଯୁକ୍ତି ବାଢ଼ନ୍ତି, 'ସଂବଳକ' ନାମରେ ଅତୀତରେ ଏକ ରାଜ୍ୟ ଥିଲା ଯାହାର ପରିସୀମା ପ୍ରାୟତଃ ଏବର ପଶ୍ଚିମ ଓଡ଼ିଶା ଯାଏ । ପୁଣି ସମ୍ବଲପୁରୀ ନାଁଟି ଜଣାଶୁଣା । ନାଁକୁ ନେଇ ଏହି ବିବାଦ ପଛରେ କାହିଁ ନା କାହିଁ ପ୍ରଭୁତ୍ୱର ପ୍ରଶ୍ନ ଜଡ଼ିତ । କୌଣସି ସହରର ନାଁ ଆଧାରରେ ଯଦି ଏକ ବିସ୍ତୃତ ଅଞ୍ଚଳର ଭାଷାର ନାମକରଣ ହୁଏ, ତହିଁରେ ସହରର ପ୍ରଭୁତ୍ୱ ଜାହିର ହେବା ସ୍ୱାଭାବିକ । ଏହା ଅନ୍ୟ ପଶ୍ଚିମ ଓଡ଼ିଶାବାସୀଙ୍କୁ ସ୍ୱୀକାର୍ଯ୍ୟ ବା ହେବ କେମିତି ? ଫଳରେ ନାଁକୁ ନେଇ ଏହି ବିବାଦର ସମାଧାନ ପାଇଁ ଉଭୟ ଗୋଷ୍ଠୀ ମଧ୍ୟରେ ଆଲୋଚନା ହୋଇଛି (୧୯୯୩-ସମ୍ବଲପୁର), ଦୁଇଟି ଯାକ ନାଁକୁ ମିଶାଇ 'ସମ୍ବଲପୁରୀ-କୋଶଲୀ' ନାଁକୁ ଗ୍ରହଣ କରାଯାଇଛି ।[୨] ଆମ ମତରେ ଉଭୟ ଯୁକ୍ତିର ଦଂଭ ଅଛି । ମାତ୍ର ତା'ଠୁ ବଡ଼ କଥା, ଉଭୟ ନାଁର ରହିବାରେ ଅସ୍ୱଭାବିକ କିଛି ନାହିଁ । ଦେଶର ଯଦି ଏକାଧିକ ନାଁ, ପୁରାଣର ଦେବତା-ଦେବୀଙ୍କର ଯଦି ଅନେକ ନାଁ, ସମ୍ବଲପୁରୀର ଦୁଇଟି ନାଁ ରହିବାରେ ବା କ୍ଷତି କ'ଣ ? ତା' ଛଡ଼ା ଭାଷାର ନାଁ ପରି ଏକ ଅସ୍ମିତାର ପ୍ରଶ୍ନକୁ ବ୍ୟକ୍ତିଗତ ସ୍ତରରେ ଦୁଇ ଚାରିଜଣ ବୁଦ୍ଧିଜୀବୀ ବସି ସମାଧାନ କରିବା ଯଥାର୍ଥ ମନେ ହୁଏନା

ସଂସ୍କୃତ ଭାଷାକୁ ସମ୍ବଲପୁରୀର ଏକମାତ୍ର ଆଧାର ମନେ କରିବା ଏ ଆନ୍ଦୋଳନର ଅନ୍ୟ ଏକ ବିସଂଗତି । ପାଖ ପରିବେଶର ଆଦିବାସୀ ଭାଷା ମଧ୍ୟ ସଂସ୍କୃତ ପରି ମୂଳ ସ୍ରୋତ ହୋଇପାରେ । ଏକଥା ସମ୍ବଲପୁରୀବିଦ୍‌ଙ୍କୁ ଗବେଷଣା କରିବାକୁ ହେବ । ଏମିତି ବି ଆଦିବାସୀ ଭାଷା ସଂସ୍କୃତ ଅପେକ୍ଷା କମ୍ ପ୍ରାଚୀନ ନୁହେଁ । ଆଜି ତାର ପ୍ରଭାବକୁ ଜାଣିଶୁଣି ଅସ୍ୱୀକାର କରିବା ଅର୍ଥ ସମ୍ବଲପୁରୀ ପରି ଏକ ଲୋକଭାଷାକୁ ବ୍ରାହ୍ମଣବାଦ ଆଡ଼କୁ ଠେଲି ଦେବା । ଅନ୍ୟ ଅର୍ଥରେ ପାଖ ପରିବେଶର ଆଦିବାସୀ ଭାଷାର ପ୍ରଭାବକୁ ଆଜି ଯଦି ସମ୍ବଲପୁରୀ ଅସ୍ୱୀକାର କରେ, ତେବେ ଓଡ଼ିଆ ପାଠ୍ୟରେ ନିଜେ ଅସ୍ୱୀକୃତ ହେବାଟା ଅଯୌକ୍ତିକ ବୋଲି କହିବ ବା କେମିତି ? ପଶ୍ଚିମ ଓଡ଼ିଶାର ଭୂଗୌଳିକ ପରିଧିରେ ଆଦିବାସୀମାନଙ୍କର ସଂଖ୍ୟା ଖୁବ୍ ଅଧିକ । ତା'ର ମହତ୍ତ୍ୱକୁ ହୃଦୟଙ୍ଗମ କରିବାକୁ ହେବ । ବଡ଼ କଥା ହେଲା, କାହାକୁ ଅନୁକରଣ କରି ବା ଏକମାତ୍ର ଆଦର୍ଶ ଭାବେ ଗ୍ରହଣ କରି, ସେ ଶସ୍ତା ବଂବୈୟା ଫିଲ୍ମ ହେଉ, କି ସଂସ୍କୃତ ଭାଷା ହେଉ, ସଂମ୍ବଲପୁରୀ ସାଂସ୍କୃତିକ ଆନ୍ଦୋଳନ ବେଶି ଦିନ ଉଧେଇ ପାରିବ ନାହିଁ । ତା'ର ନିଜସ୍ୱ ସାମର୍ଥ୍ୟରେ ନିଜର ବୈଶିଷ୍ଟ୍ୟଗୁଡ଼ିକୁ ଆଧାର କରି ତାକୁ ବିଶ୍ୱ ସାହିତ୍ୟ ଜଗତରେ ଛିଡ଼ା ହେବାକୁ ପଡ଼ିବ । ଛତିଶଗଡ଼, ମଣିପୁରୀ ଭାଷାରେ ଲିଖିତ ଏବଂ ପରିବେଶିତ ନାଟକ ଆଜି ବିଶ୍ୱ ରଂଗମଂଚ ଦୁନିଆଁରେ ଭାରତକୁ ପରିଚିତି ଦେବାର ସାହସ ରଖୁଛି, ଅବଧି ଲୋକଭାଷାରେ ଲିଖିତ 'ତୁଳସୀ ରାମାୟଣ' ଓ 'କବୀର ଦୋହା' ସମସ୍ତ ଭାଷାର ପରିସୀମାକୁ ଲଂଘି ଜନଗଣଙ୍କ ପାଇଁ ବିବେକର ବାଣୀ ସିଦ୍ଧ ହେଉଛନ୍ତି । ଏହି ପରିପ୍ରେକ୍ଷୀରେ ସମ୍ବଲପୁରୀ ମଧ୍ୟ ନୂଆଁ କୀର୍ତ୍ତିମାନ ସ୍ଥାପନ ପାଇଁ ଯଦି ସ୍ୱପ୍ନ ଦେଖେ, ତାକୁ ଅ-ଯଥାର୍ଥ ବା କହିବା କେମିତି ? ହେଲେ ତା' ପାଇଁ କାହାରି ଅନୁକରଣ କେବେ ଶିଡ଼ି ହୋଇ ନ ପାରେ ।

ଉଗ୍ର ଆଧୁନିକତାର ପରିଣାମ ସ୍ୱରୂପ ଆଜି ମଣିଷ ଉପରେ ଯେମିତି ମଣିଷର ପ୍ରଭୁତ୍ୱ, ସେମିତି ଅନେକ ଭାଷା ଓ ସଂସ୍କୃତି ଉପରେ କତିପୟ ଭାଷା ଓ ସଂସ୍କୃତିର ଦାଦାଗିରି । ଗୋଟାଏ ଶାସକର ଭାଷା, ଅଧିକାରର ଭାଷା, 'ଅନ୍ୟମାନେ' ଶାସିତର ଭାଷା, ଅଧିକୃତର ଭାଷା । 'ଅନ୍ୟମାନଙ୍କ' ମଧ୍ୟରେ ଶିଶୁ ସମ୍ବଲପୁରୀ ତ ଅଛି, ଓଡ଼ିଆ ଭାଷା ବି ଛାଡ଼ ପାରିନି । ଇତିହାସର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସମ୍ବଲପୁରୀର ମୁଣ୍ଡ ଟେକିବା ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି । ଓଡ଼ିଆର ଆନ୍ତରିକତା ସର୍ବଦା ତା' ପାଇଁ ସଂବଳ ସିଦ୍ଧ ହେବ । ଅନ୍ୟ ପକ୍ଷରେ ତାକୁ ସ୍ଥାୟୀ ଓ ହୃଷ୍ଟପୁଷ୍ଟ ହେବାକୁ ହେଲେ, ଆନ୍ଦୋଳନରେ ଥିବା ବିସଂଗତିଗୁଡ଼ିକ ପ୍ରତି ସଚେତ ରହିବା ହେଲା

ବୁଦ୍ଧିମାନର କାର୍ଯ୍ୟ । ଅନ୍ୟଥା, ଆନ୍ଦୋଳନ କ୍ଷଣସ୍ଥାୟୀ ହେବାର ଆଶଙ୍କା ଯେତେ, ବିକୃତ ହେବାର ଡର ଅଧିକ ।

ପାଦଟୀକା

୧. Collected works of Mahatma Gandhi, Vol.XXVIII, p.251; ସେବା (ସମ୍ବଲପୁର), 10 ଜୁନ୍ 1922; Fortnightly Reports of Bihar and Orissa Government, 25 of 1924, July, Home Department, Political Section.

୨. ଗୋଦାବରୀଶ ଗ୍ରନ୍ଥାବଳୀ, ଚତୁର୍ଥ ଖଣ୍ଡ, କଟକ, 1972, p.336.

୩. ଉଲ୍ଲିଖିତ କବି ଲେଖକମାନଙ୍କର ଅନେକ କୃତି ମଧ୍ୟରୁ ଉଦାହରଣ ପାଇଁ ଗୋଟାଏ ଲେଖା କୃତିର ନାମୋଲ୍ଲେଖ କରାଯାଇଛି ।

୪. ପ୍ରୟାଗଦତ୍ତ ଯୋଷୀ, କୋଶଲୀ ଭାଷାର ସଂକ୍ଷିପ୍ତ ପରିଚୟ, ଟିଟିଲାଗଡ଼, 1991.

୫. ଝଙ୍କାର, ଜୁଲାଇ, 1983.

୬. ଝଙ୍କାର, ଜୁଲାଇ, 1983

୭. ସମ୍ବଲପୁର ନାରୀ ସେବାସଦନରେ ଏଭଳି ଏକ ଆଲୋଚନାକୁ ଦର୍ଶକ ଭାବରେ ଦେଖିବାର ସୁଯୋଗ ଲେଖକଙ୍କୁ ମିଳିଛି ।

▢▢

## ଇତିହାସକୁ ଯଦେ

ଭିଏତନାମ ମୁକ୍ତି ଯୁଦ୍ଧର ପ୍ରାସଙ୍ଗିକତା ସମସାମୟିକ ବିଶ୍ୱରେ ଊଣା ହେବ କ'ଣ ବୃଦ୍ଧି ପାଇଛି ବୋଲି କହିବାକୁ ହେବ । ଚୀନ, ଫ୍ରାନ୍ସ, ଜାପାନ ଓ ଶେଷରେ ଆମେରିକା, ବିଶ୍ୱର ଏହି ଚାରିଗୋଟି ବଡ଼ ରାଷ୍ଟ୍ର ବିରୁଦ୍ଧରେ ସ୍ୱାଧୀନତା ପାଇଁ ଭିଏତନାମକୁ ସଂଗ୍ରାମ କରିବାକୁ ପଡ଼ିଛି । ପ୍ରତିଥର ପରିଣତି ଯାହା ହେଉ ପଛକେ ଭିଏତନାମବାସୀ ହିଁ ବିଦେଶୀ ଶାସନକୁ ପ୍ରତିହତ କରିବାରେ ସଫଳ ହୋଇଛନ୍ତି । ଆଜି ଛୋଟ ଛୋଟ କଥାରେ ଯେତେବେଳେ ବ୍ୟକ୍ତି ଓ ସମାଜ ଭାବରେ ଆମେ ସାମ୍ରାଜ୍ୟବାଦ ଆଗରେ ନତମସ୍ତକ ହେଉଁ, ସ୍ୱାଭିମାନ ଓ ମୁକ୍ତିବୋଧ ଆମର ବଳି ପଡ଼େ, ଭିଏତନାମ ମୁକ୍ତି ଯୁଦ୍ଧକୁ ମନେ ପକାଇବା କିଛି ଅପ୍ରାସଙ୍ଗିକ ହେବ ନାହିଁ । ଅନ୍ୟ ପକ୍ଷରେ ଆମେରିକାର ସାମରିକ ଶାସନ ବିରୁଦ୍ଧରେ ଇରାକବାସୀଙ୍କ ପ୍ରତିରୋଧକୁ ଯେଉଁମାନେ ଗୌଣ ମନେ କରନ୍ତି, ଭିଏତନାମର ମୁକ୍ତି ଯୁଦ୍ଧ ତାଙ୍କୁ ଐତିହାସିକ ଶିକ୍ଷା ଦେବ ବୋଲି ମନେହୁଏ ।

ପ୍ରଥମ ଖ୍ରୀଷ୍ଟପୂର୍ବରୁ ଆରମ୍ଭ କରି ଦଶମ ଶତାବ୍ଦୀ ଯାଏ ଇଣ୍ଡୋଚୀନ ନାମରେ ଖ୍ୟାତ ଭିଏତନାମ ଥିଲା ଚୀନ୍ ଅଧିକାରଭୁକ୍ତ । ଦୀର୍ଘ ସମୟ ଧରି ଇଣ୍ଡୋଚୀନରେ ଚୀନ ପ୍ରଶାସନ ରହିବା ପଛରେ ବଡ଼ କାରଣ ଥିଲା ସ୍ଥାନୀୟ ସାମାଜିକ ଓ ସାଂସ୍କୃତିକ ଜୀବନରେ ପ୍ରଶାସନର ନିରପେକ୍ଷତା । ତା' ସତ୍ତ୍ୱେ ଭିଏତନାମବାସୀ ନିରନ୍ତର ଚୀନ ଶାସନ ବିରୋଧରେ ବିଦ୍ରୋହ କରି ଶେଷରେ ୯୩୯ ଖ୍ରୀଷ୍ଟାବ୍ଦରେ ସ୍ୱାଧୀନତା ହାସଲ କଲେ ।

ଊନବିଂଶ ଶତାବ୍ଦୀରେ ଫ୍ରାନ୍ସ ଯେତେବେଳେ ଇଣ୍ଡୋଚୀନକୁ ଅଧିକାର କଲା, ସବୁଠାରୁ ବଡ଼ ସମସ୍ୟା ହେଲା ସ୍ଥାନୀୟ ସମାଜ ଓ ସଂସ୍କୃତିରେ ଉପନିବେଶବାଦୀ ହସ୍ତକ୍ଷେପ । ଏହି ହସ୍ତକ୍ଷେପ ବିରୋଧରେ ଚାରିଆଡ଼େ ବିଦ୍ରୋହ ହେଲା । ତନ୍ମଧ୍ୟରୁ ୧୮୬୨ ମସିହାରେ ସଂଘଟିତ ହୋଇଥିବା ବିଦ୍ରୋହକୁ ଦମନ କରିବା ପାଇଁ ଫ୍ରାନ୍ସକୁ ଦୃଢ଼ ଶକ୍ତି ପ୍ରୟୋଗ କରିବାକୁ ପଡ଼ିଥିଲା । ଭାରତ ପରି ଭିଏତ୍‌ନାମରେ ମଧ୍ୟ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଆଧୁନିକ ରାଷ୍ଟ୍ରୀୟ ମୁକ୍ତି ଆନ୍ଦୋଳନ ମୁଣ୍ଡ

ଟେକିଲା । ତା'ର ଦୁଇ ଜଣ ବଡ଼ ନେତା ଥିଲେ ଫାନ୍ ବୋଇ ଚାଉ ଏବଂ ଫାନ ଚାଉ ତ୍ରିନ୍ । ୧୯୨୭ ମସିହାରେ 'ଭିଏତନାମ ଜାତୀୟ ଦଳ' ଏବଂ ୧୯୭୦ ମସିହାରେ 'ଇଣ୍ଡୋଚୀନ କମ୍ୟୁନିଷ୍ଟ ପାର୍ଟି'ର ଗଠନ ପରେ ଆନ୍ଦୋଳନ ଅଧିକ ବ୍ୟାପକ ହେଲା ।

ଭିଏତନାମ ଜାତୀୟତା ଆନ୍ଦୋଳନରେ ଦୁଇଟି ମୁଖ୍ୟ ଧାରା ଥିଲେ ସାମ୍ୟବାଦୀ ଓ ରାଷ୍ଟ୍ରବାଦୀ ଗୋଷ୍ଠୀ; ମାତ୍ର ସାମ୍ୟବାଦୀ ନେତା ହୋ ଚି ମିନ୍ହଙ୍କ ନିଃସ୍ୱାର୍ଥପର ଜନସେବା ଭାବ ଏବଂ ତ୍ୟାଗପୂତ ଜୀବନ ଅତି କମ୍ ସମୟ ମଧ୍ୟରେ ତାଙ୍କ ପାଇଁ ସମଗ୍ର ଆନ୍ଦୋଳନର ଶୀର୍ଷ ନେତାର ସମ୍ମାନ ଆଣି ଦେଲା । ଫଳରେ ସାମ୍ୟବାଦୀଙ୍କ ନେତୃତ୍ୱରେ ଭିଏତନାମ ମୁକ୍ତି ଆନ୍ଦୋଳନ ପରିଚାଳିତ ହେଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ (୧୯୪୧ ମସିହାରେ) ଫ୍ରାନ୍ସ ନାଜି ଜର୍ମାନୀର ଅଧିକାରଭୁକ୍ତ ହେଲା । ଏପଟେ ଭିଏତନାମ ଗଲା ନାଜି ଜର୍ମାନୀର ସହଯୋଗୀ ଜାପାନ ହାତକୁ । ଏଣିକି ଭିଏତନାମର ଜନତାକୁ ଜାପାନର ସାମରିକ ଫାସିବାଦ ବିରୋଧରେ ଦୀର୍ଘ ପାଞ୍ଚବର୍ଷ ଧରି ସଂଗ୍ରାମ କରିବାକୁ ପଡ଼ିଲା । ବିଶ୍ୱଯୁଦ୍ଧରେ ନାଜି ଜର୍ମାନୀ ପରାଜିତ ହେଲା, ସାଙ୍ଗରେ ଜାପାନ ମଧ୍ୟ । ଫ୍ରାନ୍ସ ତା'ର ହୃତ ଗୌରବ ଫେରି ପାଇଲା । ଯୁଦ୍ଧ ପରେ ଇଂଲଣ୍ଡ ଓ ଆମେରିକା ସହ ତାକୁ ବିଶ୍ୱ ରାଜନୀତିରେ ସମସ୍ତର ମିଳିଲା । ଏପଟେ ହୋ ଚି ମିନ୍ହଙ୍କ ନେତୃତ୍ୱରେ ଭିଏତନାମରେ ୧୯୪୫ ମସିହାରେ ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠିତ ହେଲା । ମାତ୍ର ପରିତାପର ବିଷୟ ଏହି ଯେ ଗଣତନ୍ତ୍ରର ରକ୍ଷା ନିମନ୍ତେ ଯେଉଁ ମିତ୍ରଶକ୍ତି ଫାସିବାଦ ବିରୋଧରେ ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ସମର୍ଥନ ଯାଚନା କରୁଥିଲେ, ସେମାନେ କେହି ଭିଏତନାମର ଗଣତାନ୍ତ୍ରିକ ସରକାରକୁ ସ୍ୱୀକୃତି ଦେଲେନାହିଁ । ବରଂ ସୈନ୍ୟ ପ୍ରେରଣ କରି ଭିଏତନାମ ଅଧିକାର କରିନେବାକୁ ନିଷ୍ପତ୍ତି ନେଲେ, କାରଣ ତଦ୍ଦ୍ୱାରା ସେଠାରେ ପୁଣି ଥରେ ଫରାସୀ ଉପନିବେଶବାଦ ପ୍ରତିଷ୍ଠିତ ହୋଇପାରିବ ।

ଏହାପରେ ୧୯୪୭ ମସିହାରେ ଆମେରିକାର ପ୍ରତ୍ୟକ୍ଷ ସହଯୋଗ ଓ ଇଂଲଣ୍ଡର ସ୍ୱୀକୃତି ପାଇ ଫ୍ରାନ୍ସ ଆକ୍ରମଣ କଲା ଭିଏତନାମ ଉପରେ । ଆରମ୍ଭ ହେଲା ଭିଏତନାମ ଯୁଦ୍ଧ । ଏହି ଯୁଦ୍ଧର ଏକ ମହତ୍ତ୍ୱପୂର୍ଣ୍ଣ ଘଟନା ଥିଲା ୧୯୫୪ ମସିହାର 'ଡିଏନ୍ ବିନ୍ ଫୁ ସମର୍' । ପାରମ୍ପରିକ ଗରିଲା ପଦ୍ଧତିରେ ଯୁଦ୍ଧ କରି ଭିଏତନାମର ମୁକ୍ତିଯୋଦ୍ଧା ଏହି ସମରରେ ଅନ୍ୟୂନ ବାର ହଜାର ଫରାସୀ ସୈନ୍ୟଙ୍କୁ ନିହତ କଲେ । ଏହି ପରାଜୟ ପରେ ଫ୍ରାନ୍ସ ହତୋତ୍ସାହିତ ହୋଇ ଭିଏତନାମ ତ୍ୟାଗ କରିବାକୁ ବାଧ୍ୟ ହେଲା । ଏଣିକି ଭିଏତନାମ ପଡ଼ିଲା ଆମେରିକା ଭାଗରେ ।

୧୯୯୧ ମସିହାରେ ସୋଭିଏତ ରୁଷର ବିଘଟନ ପରେ ଆଜି ସାମ୍ରାଜ୍ୟବାଦୀ ବିସ୍ତାର ପାଇଁ ଆମେରିକା 'ଆତଙ୍କବାଦର ନିପାତ'କୁ ବାହାନା କରିଛି । ତା' ପୂର୍ବରୁ 'ସାମ୍ୟବାଦର ମୂଳୋତ୍ପାଟନ' ତା' ପାଇଁ ମୁଖ୍ୟ ବାହାନା ହୋଇଥିଲା । ତେଣୁ ସାମ୍ୟବାଦର ନିପାତ ନାଁରେ ଆମେରିକା ସେତେବେଳେ ଭିଏତନାମରେ ସବୁ ପ୍ରକାର ସାମରିକ ତଥା ଅନୈତିକ ହସ୍ତକ୍ଷେପ କଲା ଏବଂ ହସ୍ତକ୍ଷେପକୁ ଯଥାର୍ଥ ବୋଲି ତର୍କ ଦେଲା । ପରିଣାମ ସ୍ୱରୂପ, ୧୯୫୪ ମସିହାରେ ଭିଏତନାମ ଦୁଇଭାଗ ହେଲା, ଆମେରିକାର ନିର୍ଦ୍ଦେଶରେ ଦକ୍ଷିଣ ଭିଏତନାମରେ ଶାସନ ଚାଲିଲା । ତାହା ଆମେରିକାର ସୈନ୍ୟ ଛାଉଣୀରେ ପରିଣତ ହେଲା, ଦୁଇ ଭିଏତନାମ ମଧ୍ୟରେ ନାହିଁ ନ ଥିବା ଶତ୍ରୁତା ସୃଷ୍ଟି କରାଗଲା ।

ଭିଏତନାମ ଯୁଦ୍ଧରେ ଆମେରିକା ପ୍ରତ୍ୟକ୍ଷ ରୂପରେ ଅଂଶ ଗ୍ରହଣ କରିବା ପରେ ୧୯୬୭ ମସିହା ବେଳକୁ ସେଠି ପାଞ୍ଚ ଲକ୍ଷ ଆମେରିକୀୟ ସୈନ୍ୟ ରହିଥିଲେ । ଏହି ସମୟ ଭିତରେ ଭିଏତନାମରେ ଯେତେ ସଂଖ୍ୟାରେ ବୋମାମାଡ଼ ହେଲା, ସେତେ ସଂଖ୍ୟାରେ ବୋମା ଦ୍ୱିତୀୟ ମହାଯୁଦ୍ଧ ବେଳେ ସମଗ୍ର ୟୁରୋପରେ ମଧ୍ୟ ପଡ଼ି ନ ଥିଲା ବୋଲି କୁହାଯାଏ । ତା' ସତ୍ତ୍ୱେ, ଗରିଲା ଯୁଦ୍ଧରେ ଆମେରିକାର ୫୮ ହଜାର ସୈନ୍ୟ ନିହତ ହେଲେ ଏବଂ ତିନି ଲକ୍ଷରୁ ଉର୍ଦ୍ଧ୍ୱ ସୈନ୍ୟ ଗୁରୁତର ଭାବେ ଆହତ ହେଲେ । ଆମେରିକାର ହିସାବ ଅନୁଯାୟୀ, ହୋ ଚି ମିନ୍‌ଙ୍କ ଜାତୀୟ ମୁକ୍ତି ସାମ୍ମୁଖ୍ୟର ପ୍ରାୟ ୭୮ ହଜାର ସଭ୍ୟ ଯୁଦ୍ଧରେ ନିହତ ହେଲେ । ୧୯୭୧ ମସିହା ଯାଏଁ ଭିଏତନାମ ଯୁଦ୍ଧରେ ଆମେରିକାର ଖର୍ଚ୍ଚ ହେଲା ପନ୍ଦର ହଜାର ଲକ୍ଷ ଡଲାର । ଅର୍ଥାତ୍ ହୋ ଚି ମିନ୍‌ଙ୍କ ସାମ୍ମୁଖ୍ୟର ଜଣେ ସଭ୍ୟକୁ ମାରିବା ପାଇଁ ଆମେରିକା ଖର୍ଚ୍ଚ କଲା ଜଣ ପିଛା ତିନିଲକ୍ଷ ଡଲାର । ଆର୍ଥିକ ଲାଭକ୍ଷତିର ତରାଜୁ ଧରି ପ୍ରତ୍ୟେକ ଚାଲ ଚାଲୁଥିବା ସାମ୍ରାଜ୍ୟବାଦ କେତେଦିନ ବା ଏ ଯୁଦ୍ଧକୁ ବଜାୟ ରଖିପାରନ୍ତା ? ଶେଷରେ ବିଶ୍ୱ ଲୋକମତର ଚାପରେ ତଥା ଭିଏତନାମବାସୀଙ୍କ ସ୍ୱାଭିମାନ ଓ ମୁକ୍ତିବୋଧ ଆଗରେ ଆମେରିକା ପରାଜୟ ସ୍ୱୀକାର କଲା, ୧୯୭୩ ମସିହାରେ ଭିଏତନାମରୁ ସୈନ୍ୟ ପ୍ରତ୍ୟାହାର କଲା, ଉଭୟ ଭିଏତ୍‌ନାମ ମିଶି ଏକ ହେଲେ ।

ଆଜି ଭିଏତ୍‌ନାମରେ ଆମେରିକାର ପରାଜୟର ତିରିଶ ବର୍ଷ ପରେ ଅନ୍ୟ ଏକ ଏସୀୟ ରାଷ୍ଟ୍ର ଇରାକରେ ଇତିହାସର ପୁନରାବୃତ୍ତି ଘଟୁଛି । ଇରାକର ପ୍ରତିରୋଧ ଦିନୁ ଦିନ ବ୍ୟାପକ ହେଉଛି । ଇତିହାସରୁ ଶିକ୍ଷା ନେଇ ତଥା ଇରାକୀୟଙ୍କ ସ୍ୱାଭିମାନ ଓ ମୁକ୍ତିବୋଧକୁ ସମ୍ମାନ ଦେଇ ଆମେରିକା ସେଠାରୁ ଯେତେ ଶୀଘ୍ର ସୈନ୍ୟ ଅପସାରଣ କରିବ, ସେତେ ଭଲ । ଅନ୍ୟଥା ଭିଏତନାମର ଦୁର୍ଗତି ତା' ପାଇଁ ସେଠି ବି ଥୁଆ— ଏଥିରେ ସନ୍ଦେହ ନାହିଁ ।

□□

# ପାଲେଷ୍ଟାଇନ୍ : ଏକ ଇତିହାସ ଦୃଷ୍ଟି

ଇହୁଦିମାନଙ୍କର ବିଶ୍ୱାସ ଯେ, ପ୍ରାୟ ପଚିଶ ଶହ ବର୍ଷ ପୂର୍ବେ ଏକ ରାଜନୈତିକ ଦ୍ୱନ୍ଦର ଫଳସ୍ୱରୂପ ସେମାନଙ୍କୁ ନିଜ ରାଷ୍ଟ୍ର ପାଲେଷ୍ଟାଇନ୍‌ରୁ ବିତାଡ଼ିତ ହୋଇ ବିଶ୍ୱର ବିଭିନ୍ନ ଅଞ୍ଚଳରେ ଆଶ୍ରୟ ନେବାକୁ ପଡ଼ିଥିଲା । ଏଥିପାଇଁ ଖ୍ରୀଷ୍ଟିଆନ ଏବଂ ଇସ୍‌ଲାମ ଧର୍ମକୁ ଦାୟୀ କରାଯାଇ ନ ପାରେ, କାରଣ ଉଭୟ ଧର୍ମ ଉପରୋକ୍ତ ଦ୍ୱନ୍ଦ ସଂଘଟିତ ହେବାର ବହୁ ବର୍ଷ ପରେ ପ୍ରଚାରିତ ହେଲେ । ସେ ଯାହାହେଉ, ନିଜସ୍ୱ ରାଷ୍ଟ୍ର ନ ଥିବାରୁ ଇହୁଦିମାନେ ଅନ୍ୟ ରାଜ୍ୟରେ ଭେଦଭାବର ଶିକାର ହେଲେ । ପରିଣାମ ସ୍ୱରୂପ ୧୮୯୭ ମସିହାରେ ଜନ୍ମ ନେଲା ଜିଓନିଷ୍ଟ ଆନ୍ଦୋଳନ, ଯାହାର ଉଦ୍ଦେଶ୍ୟ ଥିଲା ପାଲେଷ୍ଟାଇନ୍ ଭୂମିରେ ଇହୁଦି ରାଷ୍ଟ୍ର 'ଇସ୍ରାଏଲ୍' ଗଠନ କରିବା । ଇଂଲଣ୍ଡ ଓ ଆମେରିକା ପ୍ରକାରାନ୍ତରେ ଇସ୍ରାଏଲ ଗଠନ ନିମିତ୍ତ ନୀରବ ସମର୍ଥନ ଦେଲେ ।

ସେତେବେଳେ ପାଲେଷ୍ଟାଇନ୍ ତଥା ଆଖ ପାଖ ଆରବ ଅଞ୍ଚଳ ଥିଲା ଇଂରେଜ ଶାସନାଧୀନ । ଇଂରେଜ ଉପନିବେଶବାଦ ବିରୋଧରେ ଆରବ ରାଷ୍ଟ୍ରବାଦୀ ଆନ୍ଦୋଳନ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେତେବେଳେ ତୀବ୍ର ରୂପ ନେଲା, ତାକୁ ପ୍ରତିହତ କରିବା ପାଇଁ ଇଂଲଣ୍ଡ ବଳପ୍ରୟୋଗ ତ କଲା, ସାଙ୍ଗରେ ଇହୁଦିମାନଙ୍କୁ ମଧ୍ୟ ପ୍ରୋତ୍ସାହିତ କଲା ଇଉରୋପରୁ ଆସି ପାଲେଷ୍ଟାଇନ୍‌ରେ ବସବାସ କରିବାକୁ । ଫଳରେ ପାଲେଷ୍ଟାଇନ୍‌ରେ ଲକ୍ଷ ଲକ୍ଷ ଇହୁଦି ଆସି ରହିଲେ । ଏହା ପାଲେଷ୍ଟାଇନର ସମାଜ ଓ ଅର୍ଥନୀତିକୁ ଦୁଇ ଭାଗରେ ପରିଣତ କରିଦେଲା । କ୍ରମଶଃ ନିଜ ଦେଶରେ ପାଲେଷ୍ଟାନୀୟମାନେ ସଂଖ୍ୟାଲଘୁ ହେଲେ । ୧୯୧୯ରେ ଯେତେବେଳେ ସେଠି ମାତ୍ର ୫୮ ହଜାର ଇହୁଦି ଥିଲେ, ୧୯୩୪ ମସିହା ବେଳକୁ ତାଙ୍କ ସଂଖ୍ୟା ଯାଇ ପହଞ୍ଚିଲା ପ୍ରାୟ ଦଶ ଲକ୍ଷରେ । ଏଣିକି ପାଲେଷ୍ଟାନୀୟ ମୁକ୍ତି ଆନ୍ଦୋଳନ କେବଳ ଇଂରେଜ ଉପନିବେଶବାଦର ବିରୋଧ କଲା ନାହିଁ, ସାଙ୍ଗରେ ଇହୁଦିମାନଙ୍କ ପ୍ରବେଶ ବନ୍ଦ କରିବାକୁ ମଧ୍ୟ ଦାବି କଲା । ଆନ୍ଦୋଳନ ଏତେ ତୀବ୍ର ରୂପ ଧାରଣ କଲା ଯେ ୧୯୨୯ ମସିହାରେ ହଜାର ହଜାର ପାଲେଷ୍ଟାନୀୟ ବିଦ୍ରୋହୀଙ୍କୁ ଇଂରେଜ ସରକାର

ହତ୍ୟା କଲେ । ଏହା ସତ୍ତ୍ୱେ ଜନଆନ୍ଦୋଳନ ଯେତେବେଳେ ଶାନ୍ତ ହେଲା ନାହିଁ, ୧୯୩୯ ମସିହାରେ ଇଂଲଣ୍ଡ ଘୋଷଣା କଲା ଯେ, ଦଶବର୍ଷ ପରେ ଅର୍ଥାତ୍ ୧୯୪୯ ମସିହା ବେଳକୁ ସେ ପାଲେଷ୍ଟାଇନ୍‌କୁ ସ୍ୱାଧୀନତା ଦେବ ।

୧୯୪୫ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଶ୍ୱ ଶାନ୍ତି ପାଇଁ ପ୍ରତିଷ୍ଠା ହେଲା ମିଳିତ ଜାତିସଂଘ । ପାଲେଷ୍ଟାଇନରେ ସ୍ଥାୟୀ ଶାନ୍ତି ପାଇଁ ଜାତିସଂଘ ନିଷ୍ପତ୍ତି ନେଲା ଯେ, ତାହା ଦୁଇଟି ରାଷ୍ଟ୍ରରେ ପରିଣତ ହେବ । ପାଲେଷ୍ଟାଇନ୍ ରହିବ ଆରବମାନଙ୍କ ଅଧୀନରେ, ଇସ୍ରାଏଲ୍ ହେବ ଇହୁଦି କର୍ତ୍ତୃତ୍ୱାଧୀନ । ତେଣିକି ପାଲେଷ୍ଟାଇନ୍‌ରେ ଇହୁଦିମାନଙ୍କୁ ଜମି ଅଧିକାର କରିବାର ସ୍ୱାଧୀନତା ମିଳିବ ନାହିଁ । ଏହି ନିଷ୍ପତ୍ତି ଯଦି କାର୍ଯ୍ୟକାରୀ ହୋଇଥା'ନ୍ତା, ପାଲେଷ୍ଟାନୀୟଙ୍କ ହାତରୁ ଅର୍ଦ୍ଧେକ ଭୂମି ଯାଇଥା'ନ୍ତା, ତା' ସତ୍ତ୍ୱେ ସେମାନଙ୍କ ସମସ୍ୟାର ଅନ୍ତତଃ ସ୍ଥାୟୀ ସମାଧାନ ହୋଇଥା'ନ୍ତା । ଅନ୍ୟ ପକ୍ଷରେ ଇହୁଦିମାନଙ୍କ ପାଇଁ ମଧ୍ୟ ଇସ୍ରାଏଲ ଗଠିତ ହୋଇଥା'ନ୍ତା; ମାତ୍ର ଜିଓନିଷ୍ଟ ଆନ୍ଦୋଳନକୁ ପ୍ରୋତ୍ସାହିତ କରୁଥିବା ଇଂଲଣ୍ଡ ଓ ଆମେରିକା ଚାହିଁଲେ ପୂରା ପାଲେଷ୍ଟାଇନ୍ ଭୂମି ଇହୁଦିମାନଙ୍କ ହାତକୁ ଯାଉ, ଆରବ ପାଲେଷ୍ଟାନୀୟମାନେ ନିଜ ମାତୃଭୂମିରେ ଶରଣାର୍ଥୀ ହୁଅନ୍ତୁ । ତେଣୁ ଜାତିସଂଘର ନିଷ୍ପତ୍ତି କାର୍ଯ୍ୟକାରୀ ହେବା ପୂର୍ବରୁ ଇଂରେଜମାନେ ୧୯୪୮ ମସିହାରେ ପାଲେଷ୍ଟାଇନ୍ ଛାଡ଼ି ଚାଲିଗଲେ । ଏହାର ଠିକ୍ ପରେ ପରେ ଇସ୍ରାଏଲ ରାଷ୍ଟ୍ର ଗଠିତ ହେଲା ଏବଂ ତା' ପରଦିନ ସମଗ୍ର ବିଶ୍ୱ ସମୁଦାୟ ଏବଂ ବିଶେଷ କରି ଆରବମାନଙ୍କର ତୀବ୍ର ବିରୋଧ ସତ୍ତ୍ୱେ, ଆମେରିକା ତାକୁ ସାର୍ବଭୌମ ରାଷ୍ଟ୍ରର ମାନ୍ୟତା ଦେଲା, ସାମରିକ ସାହାଯ୍ୟ ଯୋଗାଇଲା । ଯୁକ୍ତରାଷ୍ଟ୍ର ଆମେରିକାର ଏହି ଅନୈତିକ ସମର୍ଥନ ପଛରେ ଏକ ବଡ଼ କାରଣ ହେଲା- ନିଜ ଦେଶର ଇହୁଦି-ଆମେରିକୀୟଙ୍କର ତୁଷ୍ଟିକରଣ କରିବା । ଯେଉଁ ରୀତିରେ ଭାରତକୁ ବିଭାଜିତ କରି ଇଂରେଜ ସରକାର ପାକିସ୍ତାନ ଓ ଭାରତ ଭିତରେ ଜନ୍ମ ଜନ୍ମାନ୍ତର ପାଇଁ କଳି ବୁଣି ଦେଇଗଲେ, ଠିକ୍ ଏକାଧାରରେ ପାଲେଷ୍ଟାଇନ ବିଭାଜିତ ହେଲା । ରାଜ୍ୟ ଗଠନ ପରେ ପରେ ଆମେରିକାର ସାମରିକ ସହାୟତାରେ  ଜାତିସଂଘର ନିଷ୍ପତ୍ତି ଅନୁଯାୟୀ ପାଲେଷ୍ଟାଇନକୁ ମିଳୁଥିବା ଅଞ୍ଚଳକୁ ମଧ୍ୟ ଇସ୍ରାଏଲ୍ ଅଧିକାର କରିନେଲା । ଅନ୍ୟ ଅର୍ଥରେ କହିଲେ, ପାଲେଷ୍ଟାଇନ୍‌କୁ ଇସ୍ରାଏଲ ଅଧୀନରେ ଛାଡ଼ି ଇଂରେଜ ସରକାର ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ପାଲେଷ୍ଟାନୀୟ ଆରବମାନେ ଏତେଦିନ ଯାଏ ଇଂଲଣ୍ଡ କର୍ତ୍ତୃତ୍ୱରେ ରହିଥିଲେ, ଏଣିକି ଇସ୍ରାଏଲ ଅଧୀନରେ ରହିବାକୁ ବାଧ୍ୟ ହେଲେ ।

ଇସ୍ରାଏଲ୍‌ର ଗଠନ ପରେ ସବୁଠାରୁ ଅଧିକ ସମସ୍ୟାର ସମ୍ମୁଖୀନ ହେଲେ ପଡ଼ୋଶୀ ଆରବ ରାଷ୍ଟ୍ରମାନେ ଅର୍ଥାତ୍ ଜୋର୍ଡାନ୍, ସିରିଆ ଓ ଇଜିପ୍ଟ ଆଦି ।

୧୯୪୮ରେ ପାଲେଷ୍ଟାଇନ୍ ଭୂମି ଇସ୍ରାଏଲ ହାତକୁ ଗଲାପରେ ପ୍ରାୟ ଦଶ ଲକ୍ଷ ଆରବ ଶରଣାର୍ଥୀ ଯାଇ ରହିଲେ ଜୋର୍ଡ଼ାନ୍‌ରେ । ଫଳରେ ଜୋର୍ଡ଼ାନ୍‌ର ଆର୍ଥିକ ସ୍ଥିତି ଦୋହଲିଗଲା । ଦ୍ୱିତୀୟତଃ, ଆମେରିକା ତଥା ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କଠାରୁ ସାମରିକ ସାହାଯ୍ୟ ପାଇ ଆରମ୍ଭରୁ ଇସ୍ରାଏଲ ହେଲା ଏକ ବଳବାନ ସାମରିକ ରାଷ୍ଟ୍ର । ମଧ୍ୟପ୍ରାଚ୍ୟରେ ତାକୁ ଆମେରିକୀୟ ଶକ୍ତିର ଏକ ପ୍ରମୁଖ କେନ୍ଦ୍ର ରୂପେ ଦେଖାଯାଇପାରେ । ତୃତୀୟରେ, ଆରବ ରାଷ୍ଟ୍ରବାଦ ଓ ସ୍ୱାଭିମାନ ଆଗରେ ଇସ୍ରାଏଲ ଏକ ଅପଶବ୍ଦ । ପାଲେଷ୍ଟାନୀୟମାନଙ୍କୁ ବିତାଡ଼ିତ କରି ଆରବ ଭୂମିରେ ସେ ପ୍ରଭୁତ୍ୱ ବିସ୍ତାର କରି ଚାଲିଛି, ଏହା କି କୌଣସି ରାଷ୍ଟ୍ରବାଦୀ ଆରବ ସହ୍ୟ କରିପାରେ ? ଯେହେତୁ ପ୍ରାୟ ଆରବବାସୀ ଗୋଟାଏ ଧର୍ମର, ତେଣୁ ଆରବ ରାଷ୍ଟ୍ରବାଦରେ ଧର୍ମୀୟ ଆଧାର ମଧ୍ୟ ରହିବା ବିଚିତ୍ର ନୁହେଁ । ଏହି କାରଣରୁ ଯେତେବେଳେ ସ୍ୱ-ଜାତି, ସ୍ୱ-ଧର୍ମର ପାଲେଷ୍ଟାନୀୟମାନେ ପିଢ଼ି ପିଢ଼ି ଧରି ଶରଣାର୍ଥୀ ଶିବିରରେ ଜୀବନ ଅତିବାହିତ କରନ୍ତି, ଶରଣାର୍ଥୀ ଶିବିରର ତମ୍ବୁରେ ଛୁଆ ଜନ୍ମ ହୁଏ, ବଡ଼ ହୁଏ, ମୃତ୍ୟୁବରଣ କରେ, ଅନ୍ୟ ଆରବବାସୀ ତା' ପାଇଁ ସମ୍ବେଦନଶୀଳ ହେବା କି ଅବାସ୍ତବ, ଅଯଥାର୍ଥ ?

ଆରବ-ଇସ୍ରାଏଲ ମଧ୍ୟରେ, ତେଣୁ ୧୯୪୯, ୧୯୬୭ରେ ଏବଂ ଶେଷରେ ୧୯୭୩ରେ ଯୁଦ୍ଧ ହୋଇଛି । ଏ'ତ ଗଲା ବଡ଼ ଯୁଦ୍ଧ କଥା, ସାନ ସାନ ଯୁଦ୍ଧ ତ ୧୯୪୮ରୁ ଆରମ୍ଭ କରି ଆଜି ୨୦୦୩ ଯାଏ କେବେ ସରିନାହିଁ । ୧୯୪୯ ଯୁଦ୍ଧରେ ଜୋର୍ଡ଼ାନ୍ ନେତୃତ୍ୱରେ ପାଲେଷ୍ଟାନୀୟମାନେ କିଛି ଅଞ୍ଚଳ ଅଧିକାର କରିବାକୁ ମଧ୍ୟ ସମର୍ଥ ହୋଇଥିଲେ । ଆଜି ସେ ଅଞ୍ଚଳ ୱେଷ୍ଟବ୍ୟାଙ୍କ ଓ ଗାଜାଷ୍ଟ୍ରିପ ନାମରେ ଖ୍ୟାତ । ପରେ ୧୯୬୭ ଯୁଦ୍ଧରେ ଇସ୍ରାଏଲ କେବଳ ଜୋର୍ଡ଼ାନଠାରୁ ୱେଷ୍ଟ୍‌ବ୍ୟାଙ୍କ୍ ଓ ଗାଜାଷ୍ଟ୍ରିପ୍ ନୁହେଁ, ସିରିଆର 'ଗୋଲାନ ହାଇଟ୍‌ସ' ଓ ଇଜିପ୍ଟର 'ସିନାଇ' ଅଞ୍ଚଳ ବି କବ୍‌ଜା କରିନେଲା । ଆମେରିକାର ସହାୟତାରେ ଆରବମାନଙ୍କୁ ଶୋଚନୀୟ ଭାବେ ପରାଜିତ କଲା । ୧୯୭୩ ଯୁଦ୍ଧରେ ସଂଘବଦ୍ଧ ରୂପେ ଆରବ ରାଷ୍ଟ୍ରମାନେ ଘୋଷଣା କଲେ ଯେ, ଯେଉଁ ଦେଶ ଇସ୍ରାଏଲ୍‌କୁ ସମର୍ଥନ ଦେବ, ତାକୁ ସେମାନେ ତୈଳ ରପ୍ତାନି ବନ୍ଦ କରିବେ । ଆରବ ରାଷ୍ଟ୍ରର ଏହି ସାମୂହିକ ନିଷ୍ପତ୍ତିରେ ବ୍ୟତିବ୍ୟସ୍ତ ହୋଇ ଇସ୍ରାଏଲ୍‌ର ପରମ ମିତ୍ର ଆମେରିକା ମଧ୍ୟ ଶେଷରେ ଇସ୍ରାଏଲ୍‌କୁ ଯୁଦ୍ଧ ବିରତି ଘୋଷଣା କରିବାକୁ ନିର୍ଦ୍ଦେଶ ଦେଲା । ଆରବ ଐକ୍ୟର ଅନ୍ୟ ଏକ ନିଦର୍ଶନ ହେଲା ଆରବ ଲିଗ୍‌ର ଗଠନ । ୧୯୬୪ ମସିହାରେ ଯେତେବେଳେ ୟାସେର ଆରାଫାତ୍‌ଙ୍କ ନେତୃତ୍ୱରେ ପାଲେଷ୍ଟାଇନ୍ ମୁକ୍ତି ସଂଗଠନର ଶୁଭାରମ୍ଭ ହେଲା, ଆରବ ଲିଗ୍ ତାକୁ ଖୋଲାଖୋଲି ସମର୍ଥନ ଦେଲା । ୧୯୯୦ ଦଶକରେ ଆରବ ରାଷ୍ଟ୍ରବାଦର

ଚାପରେ ଓ୍ୱେଷ୍ଟବ୍ୟାଙ୍କ ଓ ଗାଜା ଷ୍ଟ୍ରିପ୍‌ରେ ଇସ୍ରାଏଲ ପାଲେଷ୍ଟାନୀୟମାନଙ୍କୁ କିଛି ସ୍ୱାୟତ୍ତତା ମଧ୍ୟ ଦେବାକୁ ବାଧ୍ୟ ହେଲା । ସେହି ସ୍ୱାୟତ୍ତତା ମିଳିଥିବା ଅଞ୍ଚଳରେ ୟାସେର୍ ଆରାଫତ୍ ଓ ପାଲେଷ୍ଟାଇନ୍ ସରକାର ଆଜି କାର୍ଯ୍ୟ କରନ୍ତି । ପାଲେଷ୍ଟାଇନ୍‌କୁ ଏକ ସ୍ୱତନ୍ତ୍ରରାଷ୍ଟ୍ର ରୂପରେ ଭାରତ ସମେତ ସମସ୍ତ ଆରବରାଷ୍ଟ୍ର ବହୁ ପୂର୍ବରୁ ସ୍ୱୀକୃତି ଦେଇ ସାରିଛନ୍ତି । ଅନ୍ୟ ପକ୍ଷରେ, ସ୍ୱାୟତ୍ତତା ସତ୍ତ୍ୱେ ଇସ୍ରାଏଲ୍ ଯେତେବେଳେ ଇଚ୍ଛା ଆରାଫତ୍‌ଙ୍କ ଘରେ ବୋମାମାଡ଼ କରେ, ତାଙ୍କୁ ହତ୍ୟା କରିବାର ନିଷ୍ପତ୍ତି ନିଏ, ସବୁଠାରୁ ବଡ଼ କଥା, ବିଶୃଙ୍ଖଳା ଓ ଅଶାନ୍ତି, ଆତଙ୍କବାଦ ଓ ହିଂସାର ଶେଷ ଶତ୍ରୁ ବୋଲି ନିଜକୁ ଘୋଷଣା କରିଥିବା ଆମେରିକା ସରକାର ଇସ୍ରାଏଲର ଏ ଅତ୍ୟାଚାର ବିରୋଧରେ ମୁହଁ ସୁଦ୍ଧା ଖୋଲନ୍ତି ନାହିଁ । ବରଂ ଜାତିସଂଘ ଆଦି ସବୁ ଆନ୍ତର୍ଜାତିକ ସମ୍ମିଳନୀରେ ତା'ର ପ୍ରତ୍ୟକ୍ଷ ସମର୍ଥନ କରେ ।

ପାଲେଷ୍ଟାଇନ୍‌ବାସୀଙ୍କ ପାଇଁ ଏ ଅମା ଅନ୍ଧାର ବେଳେ ଆଶାବାଦର କିରଣ ରୂପରେ କେବଳ ଆରବ ଏକତା, ଆରବ ରାଷ୍ଟ୍ରବାଦକୁ ଦେଖାଯାଇପାରେ । ବିଶ୍ୱ ସମର୍ଥନ ପାଇଁ ଆରବ ରାଷ୍ଟ୍ରବାଦକୁ ସାଂପ୍ରଦାୟିକ ଆଧାରରୁ କେବଳ ମୁକ୍ତ ହେବା କଥା । ସମଗ୍ର ବିଶ୍ୱର ନିପୀଡ଼ିତ ଜନସାଧାରଣ ଓ ଧର୍ମନିରପେକ୍ଷ ସମାଜର ସହଯୋଗ ଓ ସମର୍ଥନ ଯେତେବେଳେ ସେମାନଙ୍କର ଏକାନ୍ତ କାମ୍ୟ, କେବଳ ଧର୍ମ ନିରପେକ୍ଷତା ହିଁ ତା ପାଇଁ ଏକମାତ୍ର ଭରସା ହେବ– ଏହା ଅନସ୍ୱୀକାର୍ଯ୍ୟ । ଅନ୍ୟ ପକ୍ଷରେ, ଏକଥା ସତ ଯେ, ଇତିହାସରେ ଇହୁଦିମାନେ କମ୍ ଯନ୍ତ୍ରଣା ପାଇ ନାହାନ୍ତି । ହିଟଲରର ନାଜିଶକ୍ତି ହାତରେ ଲକ୍ଷ ଲକ୍ଷ ଇହୁଦୀ ହୋଲୋକାଷ୍ଟର ଶିକାର ହୋଇଛନ୍ତି, ଗ୍ୟାସ୍ ଚାମ୍ବରରେ ପ୍ରାଣ ଦେଇଛନ୍ତି । ମାତ୍ର ଏସବୁ ଅତ୍ୟାଚାରର କ୍ଷତିପୂରଣ ପାଇଁ କେବେ ବି ପାଲେଷ୍ଟାନୀୟଙ୍କୁ ଶିକାର କରାଯାଇ ନପାରେ । ସେମାନଙ୍କ ସର୍ବନିମ୍ନ ଅଧିକାରରୁ କଦାପି ବଞ୍ଚିତ କରାଯାଇ ନ ପାରେ । ପାଲେଷ୍ଟାନୀୟଙ୍କର ଭବିଷ୍ୟତ ରହିଛି । ସେମାନଙ୍କ ସାଂଗରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନରେ ହିଁ ଇହୁଦିମାନଙ୍କର ଭବିଷ୍ୟତ ସୁରକ୍ଷିତ ରହିବ । ଏକଥା ଇସ୍ରାଏଲ୍‌କୁ ଅନ୍ତଃମନରେ ହୃଦୟଙ୍ଗମ କରିବାକୁ ପଡ଼ିବ । ଅନ୍ୟଥା ଆରବ ରାଷ୍ଟ୍ରବାଦର ପ୍ରଖରତା ଯେ ନିଶ୍ଚୟ ଦିନେ ଇସ୍ରାଏଲର ଅହଂକାରକୁ ଦଳିତଦଳନ୍ତ କରିବ, ଏହା ନିଶ୍ଚିତ କଥା ।



# ପାକିସ୍ଥାନରୁ ଶିକ୍ଷା

ସରକାର ଯେଉଁ ରାଜନୈତିକ ଦଳର ହେଉ, ରାଷ୍ଟ୍ରମୁଖ୍ୟ ଯିଏ ହୁଅନ୍ତୁ ନା କାହିଁକି ଗତ ପଚାଶ ବର୍ଷର ଇତିହାସ ସିଦ୍ଧ କରିଛି ଯେ ପାକିସ୍ଥାନ ରାଜନୀତିର ମୁଖ୍ୟସ୍ୱର ହେଲା ଭାରତର ବିରୋଧ । ଟିକିଏ ତଳେଇ କରି ଦେଖିଲେ ପୁଣି ଅନୁଭବ ହେବ ଯେ ବିରୋଧ ଭାରତ ବିରୋଧରେ ଯେତେ ନୁହଁ, ସେତେ ଭାରତର ଭିନ୍ନ ଧର୍ମୀ ହିନ୍ଦୁ ବିରୋଧରେ । ପାକିସ୍ଥାନର ଏହି ମାନସିକତା ପଛରେ ବଡ଼ କାରଣ ହେଲା, ତା ଧର୍ମଭିତ୍ତିକ ରାଷ୍ଟ୍ରୀୟତା । ରାଷ୍ଟ୍ରୀୟତାର ଆଧାର ଯେହେତୁ ଧର୍ମ, ଭିନ୍ନ ଧର୍ମୀ ପଡ଼ୋଶୀଙ୍କୁ ଶତ୍ରୁ ଘୋଷଣା କରିବା ଅତି ଆବଶ୍ୟକ ହୋଇପଡ଼େ, ଅନ୍ୟଥା ପାକିସ୍ଥାନର ରାଷ୍ଟ୍ରୀୟତା ଉଧେଇ ପାରିବ ନାହିଁ । ଲୋକଙ୍କର ଧର୍ମ ଏକ ହେଲେ ଯେ ଆର୍ଥିକ ତଥା ସାମାଜିକ ଆବଶ୍ୟକତା ଏକ ହେବ— ଏହା କହି ହେବନାହିଁ । ଜଣେ ମୁସଲମାନ ବଢ଼େଇ, କମାର ଓ ଜଣେ ହିନ୍ଦୁ ବଢ଼େଇ, କମାର ମଧ୍ୟରେ ସିନା ସମାନତା ରହିବ, ମୁସଲମାନ ଜମିଦାର ଓ ମୁସଲମାନ ଛୋଟ ଚାଷୀ ଭିତରେ କ'ଣ ସାମାଜିକ ସମାନତା ଆଶା କରାଯାଇପାରେ ? ଯେହେତୁ ସେଭଳି ସମାନତା ନାହିଁ, ବରଂ ଅନ୍ତର୍ଦ୍ୱନ୍ଦ ରହିଛି, ତାକୁ ଘୋଡ଼େଇବା ସକାଶେ ମିଛିମିଛିକା ଶତ୍ରୁ ତିଆରିବାକୁ ପଡ଼େ । ଏହି ଆଧାରରେ, ପଡ଼ୋଶୀ ଇରାନ ମଧ୍ୟ ପାକିସ୍ଥାନର ଶତ୍ରୁ  କାରଣ ଅଧିବାସୀ ସେଠି ସିଆ ମୁସଲମାନ ଗୋଷ୍ଠୀର । ପାକିସ୍ଥାନରେ ସୁନ୍ନି ମୁସଲମାନଙ୍କ ବହୁଳତା । କଳ୍ପିତ ଇସଲାମ ରାଷ୍ଟ୍ର ଯେହେତୁ ପାକିସ୍ଥାନରେ ଗଢ଼ିବା ସମ୍ଭବ ହେଲାନି, ଆଦିବାସୀ ଅଧ୍ୟୁଷିତ ଆଫଗାନିସ୍ଥାନରେ ତାଲିବାନକୁ ପ୍ରୋତ୍ସାହିତ କଲା, ଦେଶର ସାଂପ୍ରଦାୟିକ ଗୋଷ୍ଠୀ ଖୁସି ହେଲେ । ପାକିସ୍ତାନର ଏ ଯେଉଁ ଧର୍ମଭିତ୍ତିକ ରାଷ୍ଟ୍ରୀୟତା, ତାହା କେବେ ରାଷ୍ଟ୍ର ନିର୍ମାଣରେ ପ୍ରକୃତ ସହଯୋଗ କରି ପାରିନି । ଫଳରେ ପ୍ରତି କ୍ଷେତ୍ରରେ ରାଷ୍ଟ୍ରର ବିଫଳତା ସୁସ୍ପଷ୍ଟ ହୋଇଛି ।

ଅନୁଧ୍ୟାନ କଲେ ଜଣାଯିବ ଯେ ରାଷ୍ଟ୍ରୀୟତା ପରି ଧର୍ମ ନିରପେକ୍ଷତା ମଧ୍ୟ ବର୍ତ୍ତମାନ ବିଶ୍ୱ ରାଜନୀତିର ଏକ ପ୍ରମୁଖ ସ୍ୱର । କାହାଁ କେତେଜଣଙ୍କୁ ବାଦ୍ ଦେଲେ

ବିଶ୍ୱ ଜନତା ଅନୁଭବ କରନ୍ତି ଯେ, ରାଷ୍ଟ୍ର ନିର୍ମାଣ ଓ ପ୍ରଗତି ନିମନ୍ତେ ଧର୍ମ ନିରପେକ୍ଷତା ଏକ ଆବଶ୍ୟକୀୟ ଚରିତ୍ର । ସାଂପ୍ରଦାୟିକତା ଯେହେତୁ ଏକ ପ୍ରତିକୂଳ ସ୍ରୋତ, ତା ବିରୋଧରେ ଜନମତ ସଂଗ୍ରହ ମଧ୍ୟ ସହଜ । ଏହି କାରଣରୁ, ପାକିସ୍ଥାନ ଯେତେବେଳେ ତାଲିବାନ ଉଗ୍ରବାଦୀକୁ କିମ୍ବା କାଶ୍ମୀର ଉଗ୍ରବାଦୀଙ୍କୁ ସହାୟତା ଦିଏ ବିଶ୍ୱ ଜନମତ ତାକୁ ସମର୍ଥନ କରି ପାରେ ନା, ସହଜରେ ପାକିସ୍ତାନର ପର୍ଦ୍ଦାଫାଶ ହୁଏ ।

ପାକିସ୍ତାନର ଏଭଳି ସଂକୀର୍ଣ୍ଣ ଦୃଷ୍ଟି ପାଇଁ ତାକୁ କମ୍ ଦଣ୍ଡ ମିଳୁନାହିଁ । ପ୍ରତିଥର ଭାରତ ହାତରେ ସେ ପରାହତ, ପଚିଶ ବର୍ଷ ଭିତରେ ଦେଶ ଦୁଇ ଭାଗ ହୋଇ ସାରିଲାଣି, ବିଶ୍ୱ ଜନମତ ତା ବିରୋଧରେ । ଶେଷରେ ଯେଉଁ ତାଲିବାନର ସେ ସୃଷ୍ଟିକର୍ତ୍ତା ବୋଲି ଖ୍ୟାତ ଥିଲା, ୨୦୦୧ ମସିହା ସେପ୍ଟମ୍ବର ୧୧ ତାରିଖର ଆମେରିକା ଘଟଣା ପରେ ସେହି ତାଲିବାନକୁ ତାକୁ ସଂହାର କରିବାକୁ ପଦକ୍ଷେପ ନେବାକୁ ପଡ଼ିଲା । କେବଳ ଏତିକି ନୁହେଁ, ଆଜି ପାକିସ୍ତାନର ଅର୍ଥନୀତି ପାଶ୍ଚାତ୍ୟର ଦୟା ଉପରେ ନିର୍ଭରଶୀଳ, ସାଂସ୍କୃତିକ ଅସ୍ମିତା ବିପଦଗ୍ରସ୍ତ, ସଭ୍ୟତା ଖଣ୍ଡାଧାରରେ । ସିନ୍ଧର ବଣିକ ବିଶ୍ୱବିଖ୍ୟାତ, ବିଶ୍ୱର ଯେକୌଣସି ସାନ-ବଡ଼ ସହରରେ ପାଂଚ-ଦଶ ଜଣ ସଫଳ ସିଂଧି ବ୍ୟାପାରୀ ମିଳିବା ଅ-ସହଜ ନୁହେଁ । ଅର୍ଦ୍ଧେକ ପଞ୍ଜାବର ଉର୍ବର ଜମି ଓ ପରିଶ୍ରମୀ ଚାଷୀ ପାକିସ୍ତାନରେ । ବିଶ୍ୱର ଏକ ଆଦି ପ୍ରାଚୀନ ସଭ୍ୟତା, ମହେଞ୍ଜୋଦାରୋ ଓ ହରପ୍ପା ସଂସ୍କୃତିର ଜଡ଼ ଆଧୁନିକ ପାକିସ୍ତାନରେ ରହିଛି । ଏତେ ସବୁ ସାମାଜିକ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଯଦି ପାକିସ୍ତାନ ଜରାଜର୍ଜରିତ, ତା ପାଇଁ କ'ଣ ରାଜ୍ୟ-ରାଷ୍ଟ୍ରର ବିଫଳତା ଦାୟୀ ନୁହେଁ ? ଦୁଃଖର କଥା ଯେ ରାଜ୍ୟ ରାଷ୍ଟ୍ରର ବିଫଳତା ନିମନ୍ତେ ପାକିସ୍ତାନର ନିର୍ଦ୍ଦୋଷ ଜନସାଧାରଣ କଷ୍ଟ ପାଆନ୍ତି, ତାଙ୍କ ଜାତି ଓ ଧର୍ମ ବଦନାମ ହୁଅନ୍ତି । ରାଷ୍ଟ୍ରକୁ ଅବାଟରେ ନେଉଥିବା ରାଜନେତା, ସାମରିକ ଅଧିକାରୀମାନେ ଦଣ୍ଡ ପାଆନ୍ତି ନାହିଁ ।

ଆଜି ପ୍ରଶ୍ନ ଉଠେ, ପାକିସ୍ତାନର ଦୁଃସ୍ଥିତିରୁ ଭାରତ କ'ଣ କିଛି ଶିଖୁଛି ? ତୁଳନା କଲେ ଜଣାଯିବ ଯେ ଭାରତର ଜାତୀୟତାରେ ଯେତେ ମାତ୍ରାରେ ଇଂରେଜ ବିରୋଧୀ ଭାବ ରହିଥିଲା, ତତୋଧିକ ମାତ୍ରାରେ ରହିଥିଲା ନାରୀ ଜାଗରଣ ନିମନ୍ତେ ବାର୍ତ୍ତା, ସାମନ୍ତବାଦ ବିରୋଧରେ ଜନମତ, ସମାଜ-ସଂସ୍କାର ସକାଶେ ବୌଦ୍ଧିକ ଚେତନା ତଥା ବିଶ୍ୱମୈତ୍ରୀ ଭାବ । ଅନ୍ୟ ଅର୍ଥରେ କହିଲେ, ଆମ ଜାତୀୟତା ପାକିସ୍ତାନ ଆନ୍ଦୋଳନ ଅପେକ୍ଷା ଥିଲା ଅଧିକ ଯୁକ୍ତିନିଷ୍ଠ, ବେଶି ବିଜ୍ଞାନସମ୍ମତ । ସେ ଧର୍ମ ହେଉ କି ସଂସ୍କୃତି– ଆମ ଜାତୀୟତା ସର୍ବଦା ଅନେକ୍ୟ ଭିତରେ ଐକ୍ୟ ଖୋଜିଛି ।

ମାତ୍ର ଲକ୍ଷ୍ୟ କରିବା କଥା ଯେ ଏହି କେତେ ବର୍ଷ ହେଲା ଭାରତୀୟ ଜାତୀୟତାର ଆଦର୍ଶ କ୍ରମଶଃ ନଷ୍ଟ ହେବାକୁ ଲାଗିଛି । ପାକିସ୍ତାନର ଅନୁଭୂତି ଓ ଦୁଃସ୍ଥିତିରୁ ଆମ ରାଷ୍ଟ୍ର ଅଧିକ ଶାଣିତ ହେବ କ'ଣ, ବରଂ ପାକିସ୍ତାନର ବିରୋଧ ଆଳରେ ଏହା ପାକିସ୍ତାନକୁ ଆଦର୍ଶ ମଣିଲାଣି । କ୍ରମଶଃ ଏହା ସାଂପ୍ରଦାୟିକତା ଆଡୁଆଳରେ ବଳ ଖୋଜୁଛି, ବିଶ୍ୱ ଜାତୀୟତା ସ୍ରୋତର ବିପରୀତ ଗତିରେ ଯିବା ଆରମ୍ଭ କଲାଣି । ଆଗାମୀ ଦିନରେ ଭାରତ ପାଇଁ ଏହା ସବୁଠାରୁ ବଡ଼ ସଂକଟ, ରାଷ୍ଟ୍ର ନିର୍ମାଣରେ ବଡ଼ ବାଧକ ।

୧୯୯୨ ମସିହାରେ ବାବରି ମସ୍‌ଜିଦ୍‌ର ଭାଙ୍ଗିବା ଘଟଣାକୁ ଏହି ସଂକଟର ଆରମ୍ଭ ବର୍ଷ ବୋଲି କୁହାଯାଇପାରେ । ଯେଉଁ ରାଜନୈତିକ ଶକ୍ତି ଶହ ଶହ ବର୍ଷର ପୁରୁଣା ସୌଧକୁ ଧ୍ୱଂସ କଲା, ଆମ ବର୍ତ୍ତମାନକୁ ମଧ୍ୟଯୁଗୀୟ ଅନ୍ଧକାର ମୁହଁକୁ ଠେଲିବାକୁ ଚେଷ୍ଟା କଲା, ଆଜି ସେହି ଶକ୍ତି ଆମ ସଂଘୀୟ ଜାତୀୟତାର ଚାପରେ ଧୂଳିସାତ୍ ହେବା ବଦଳରେ କେନ୍ଦ୍ରରେ କ୍ଷମତାର ମୁଖ୍ୟ କାରପଟଦାର ସାଜିଲାଣି । ପୁଣି ସଂଘୀୟ ଆଦର୍ଶରେ ଅନୁପ୍ରାଣିତ ଅନ୍ୟ ଶକ୍ତିମାନେ ଉକ୍ତ ଧ୍ୱଂସକାରୀ ଶକ୍ତିକୁ ଏକଘରିଆ କରିବେ କ'ଣ, କ୍ଷମତା ଆଶାରେ ତାକୁ ନେତୃତ୍ୱ ଦେଲେଣି । ଫଳରେ ଭଗ୍ନ ମସଜିଦ୍‌ର ପୁନଃନିର୍ମାଣ କୌଣସି ମୁଖ୍ୟ ରାଜନୈତିକ ଶକ୍ତିର 'ଏଜେଣ୍ଡା' ନୁହେଁ । ବରଂ ଧମକ ଦିଆଚାଲିଛି– ଧ୍ୱସ୍ତ ମସ୍‌ଜିଦ୍ ସ୍ଥାନରେ ମନ୍ଦିର ନିର୍ମାଣ ହେବ । ଆମ ଜାତୀୟତାର ଆଦର୍ଶ ଆଜି 'ବାବର', 'ଔରଙ୍ଗଜେବ', 'ନାଦିର୍ ଶାହା' ଅଟନ୍ତି । ଅଶୋକ ଓ ଆକବର ନୁହନ୍ତି । ଏହି କେତେ ମାସ ହେଲା ଆମ ପାଇଁ ରାଷ୍ଟ୍ର ନିର୍ମାଣର ବିଶେଷ ଅର୍ଥ ହେଲା, ପାକିସ୍ତାନ ସୀମାନ୍ତକୁ ସୈନ୍ୟ ପ୍ରେରଣ କରିବା । କେବଳ ଏତିକି ନୁହେଁ, ଜାତୀୟତା ନାଁରେ ଶିକ୍ଷା ସଂସ୍କୃତିକୁ ମଧ୍ୟ କେନ୍ଦ୍ରୀକରଣ ପ୍ରକ୍ରିୟା ଚାଲିଛି, ହିନ୍ଦୀ, ହିନ୍ଦୁ କରାଯାଉଛି । ଜାତୀୟତାର ଏହା ବିପରୀତ ଗତି ନୁହେଁ ତ ଆଉ କ'ଣ ?

ଭାରତୀୟ ଜାତୀୟତାର ଏ ଯେଉଁ କ୍ରମ ସଂକୀର୍ଣ୍ଣରୂପ ତା'ର ପ୍ରକୃତ କାରଣ କ'ଣ ପାକିସ୍ତାନ ପରି ଆମ ରାଜ୍ୟ-ରାଷ୍ଟ୍ରର ବିଫଳତା ନୁହେଁ । ଆର୍ଥିକ ସଙ୍କଟ ଯୋଗୁଁ ମାସ ଶେଷକୁ କର୍ମଚାରୀଙ୍କୁ ଦରମା ମିଳି ପାରୁନି । ସରକାର ନିର୍ଦ୍ଧାରିତ ଦରରେ ନିଜେ ଚାଷୀଠାରୁ ଧାନ କିଣି ପାରୁ ନାହାନ୍ତି । ସରକାରୀ କଳକାରଖାନାଗୁଡ଼ିକ ଫିଙ୍ଗା ଦାମରେ ବିକ୍ରି ହେଉଛନ୍ତି । ପ୍ରତି ବିକା-କିଣାରେ ରାଷ୍ଟ୍ରନେତାମାନେ ହାତଗୁଞ୍ଜା ନେବାର ଅଭିଯୋଗ ହେଉଛି । ଅଭିଯୋଗର ତଦନ୍ତ ହେଉଛି, ପରିଣାମ ମିଳୁନି,

ନୂଆ ଏବଂ ଆଗଠାରୁ ବଡ଼ ଦୁର୍ନୀତିଟିଏ ଲୋକଲୋଚନକୁ ଆସିବା ପରେ ପୁରୁଣା ଦୁର୍ନୀତି ଘୋଡ଼ି ହେଉଛି । ଯେଉଁଠି ଜନତା ଯେତେ ବିପଦଗ୍ରସ୍ତ, ଯେତେ ଅଧିକ ଦରିଦ୍ର, ରାଜନେତା ଓ ଅଧିକାରୀ ସେଠି ସେତେ ଅଧିକ ପ୍ରାଚୁର୍ଯ୍ୟରେ; ଆରାମ କରୁଛନ୍ତି । ମନେହୁଏ, ମହାବାତ୍ୟା, ଭୂମିକମ୍ପ ପରି ପ୍ରାକୃତିକ ବିପଦମାନେ ଶାସକବର୍ଗ ହାତରେ ପ୍ରାଚୁର୍ଯ୍ୟ ଦେବା ନିମିତ୍ତ ଗୋଟାଏ ଗୋଟାଏ ଆୟୁଧ । ରାଜ୍ୟ-ରାଷ୍ଟ୍ରର ଏ ଯେଉଁ ତୀବ୍ର ବିଫଳତା– ତାଠାରୁ ଜନସାଧାରଣଙ୍କ ଦୃଷ୍ଟି ହଟେଇବା ପାଇଁ, ରାଷ୍ଟ୍ର ନିର୍ମାଣର ବଡ଼ ବାଧକ ରୂପେ ପେଶ୍ କରିବା ପାଇଁ, ପାକିସ୍ତାନଠାରୁ ବଡ଼ ଘୋଡ଼ଣି ଆଉ କ'ଣ ହୋଇପାରେ ? ଦୁଃଖ ଲାଗେ ପାକିସ୍ତାନର ଦୁଃସ୍ଥିତି ଯେତେ ମାତ୍ରାରେ ବଢୁଛି କେତେ ବର୍ଷ ପରେ ହୁଏତ ତାର ସତ୍ତା ରହି ନପାରେ । ତେଣୁ ଆମ ରାଷ୍ଟ୍ରନେତାମାନେ ଏବେଠୁ ଚିନ୍ତା କରିବା କଥା- ସେତେବେଳେ କାହାକୁ ରାଷ୍ଟ୍ର ନିର୍ମାଣର ବାଧକ ରୂପେ ପେଶ୍ କରିବେ, ଆମ ବିଫଳତା ପାଇଁ ଘୋଡ଼ଣି ଭଳି ବ୍ୟବହାର କରିବେ, କାରଣ ସେମାନଙ୍କ ଦୃଷ୍ଟିରେ ଏକବିଂଶ ଶତାବ୍ଦୀରେ ଆମ ରାଜ୍ୟ-ରାଷ୍ଟ୍ରକୁ ଆଗକୁ ଚାଲିଯିବା ପାଇଁ ଯେତେ ଆବଶ୍ୟକ ନୁହେଁ 'ଅନ୍ତଃଶକ୍ତି'ର, ତା'ଠାରୁ ଅଧିକ ଆବଶ୍ୟକ 'ବହିଃଶତ୍ରୁ'ର, ଘୋଡ଼ଣୀର, 'ପାକିସ୍ତାନ'ର ।

□□

# ଜାତୀୟତା ବନାମ ଫାସିବାଦ

ଆଜି ଅନେକେ ଯୁକ୍ତି ବାଢ଼ନ୍ତି, ଯୁଦ୍ଧ ଅବଶ୍ୟମ୍ଭାବୀ । ଯୁଦ୍ଧ ନ ହେଲେ ସୈନ୍ୟବଳ ଆଳସ୍ୟର ଶିକାର ହେବ । କେତେକଙ୍କ ପାଇଁ ତ ଯୁଦ୍ଧ ଡେ-ନାଇଟ୍ କ୍ରିକେଟ୍ ପରି ଏକ ଆନନ୍ଦଦାୟୀ ଦୃଶ୍ୟ । ତାକୁ ଦେଖିବା ପାଇଁ କେବଳ ଘରେ ମହଙ୍ଗା ଟେଲିଭିଜନ ହେବା କଥା । ଏଭଳି ଲୋକ ଦ୍ୱିତୀୟ ବିଶ୍ୱଯୁଦ୍ଧର କ୍ଷୟକ୍ଷତି ସମ୍ବନ୍ଧରେ ଧାରଣା ରଖିବା ଉଚିତ ।

ଏଯାଏଁ ସଂଘଟିତ ହୋଇଥିବା ସବୁ ଯୁଦ୍ଧଠାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଥିଲା ଅଧିକ ଭୟାବହ । ଲୋକ ମଲେ ପାଞ୍ଚ କୋଟିରୁ ଅଧିକ । ତନ୍ମଧ୍ୟରୁ ସୈନ୍ୟ ଥିଲେ ଦୁଇକୋଟି କୋଡ଼ିଏ ଲକ୍ଷ, ବେସାମରିକ ଲୋକଙ୍କ ସଂଖ୍ୟା ଦୁଇ କୋଟି ଅଶୀ ଲକ୍ଷ । କେବଳ ପୋଲାଣ୍ଡ ପରି ଏକ କ୍ଷୁଦ୍ର ଦେଶର ଲୋକ ମଲେ ଷାଠିଏ ଲକ୍ଷ, ସୋଭିଏତ ରୁଷର ଦୁଇ କୋଟି, ଖୋଦ ଜର୍ମାନୀର ଷାଠିଏ ଲକ୍ଷ । କେବଳ ଏତିକି ନୁହେଁ ସ୍ୱଳ୍ପ ଖର୍ଚ୍ଚରେ ମାରିବା ପାଇଁ ଅଭିନବ ଉପାୟ ସବୁ ଉଦ୍ଭାବିତ ହେଲା- କନସନଟ୍ରେସନ୍ କ୍ୟାମ୍ପ, ଗ୍ୟାସ ଚେମ୍ବର । ଯୁଦ୍ଧରେ ମୋଟ ଅର୍ଥ ବ୍ୟୟ ହେଲା ଚଉଦରେ ଚଉଦଟି ଶୂନ- ଅର୍ଥାତ୍ ୧୪,୦୦୦,୦୦୦,୦୦୦,୦୦୦,୦୦ ଡଲାର ।

ଏତେ ସବୁ କ୍ଷୟକ୍ଷତି ପାଇଁ ଦାୟୀ କିଏ ? ଫାସିବାଦ । ପ୍ରଥମ ବିଶ୍ୱଯୁଦ୍ଧର ଦୋଷ ଖୋଜିବା ବେଳେ ହୁଏତ ଐତିହାସିକଙ୍କ ମଧ୍ୟରେ ବହୁମତ ରହିଛି, ମାତ୍ର ଦ୍ୱିତୀୟ ବିଶ୍ୱଯୁଦ୍ଧର ଦୋଷ ଦେଲାବେଳେ ସମସ୍ତେ ଏକମତ । ହିଟଲରଙ୍କ ନାତ୍ସିବାଦ୍, ମୁସୋଲିନିଙ୍କ ଫାସିବାଦ, ଜାପାନର ସାମରିକ ଫାସିବାଦ ବ୍ୟତୀତ ଅଲଗା କିଏ ପ୍ରମୁଖ ଦୋଷୀ ହେବ ? ଐତିହାସିକମାନେ ଇଂଲଣ୍ଡ, ଫ୍ରାନ୍ସ ଆଦି ପାଶ୍ଚାତ୍ୟ ଦେଶମାନଙ୍କର ଭୁଲ୍ ବାଛନ୍ତି- କାରଣ ଆରମ୍ଭରେ ସେମାନେ ଫାସିବାଦର ମୂଳୋତ୍ପାଟନ କଲେ ନାହିଁ । ବରଂ ତୁଷ୍ଟୀକରଣ କଲେ । ସୁଦେତାନଲ୍ୟାଣ୍ଡ, ଚେକୋସ୍ଲୋଭାକିଆକୁ ଯେତେବେଳେ ହିଟଲର ଦାବି କଲେ, ସେମାନେ ତାର ବିରୋଧ କଲେ ନାହିଁ । ତାତ୍କାଳୀକ ସଫଳତା ବିଶ୍ୱଗ୍ରାସୀ ଫାସିବାଦକୁ ପ୍ରୋତ୍ସାହିତ କଲା । ପରିଣାମ ଦ୍ୱିତୀୟ ବିଶ୍ୱଯୁଦ୍ଧ ।

ଆଜି ଯଦି ଦେଖାଯାଏ, ବିଶ୍ୱବିଧ୍ୱଂସୀ ଫାସିବାଦର ଆଧାର କ'ଣ ? ଉତ୍ତର ହେବ ଉଗ୍ରଜାତୀୟତାବାଦ । 'ଜର୍ମାନୀ ବିଶ୍ୱର ଶ୍ରେଷ୍ଠ ରାଷ୍ଟ୍ର', 'ଜର୍ମାନମାନେ ଶୁଦ୍ଧ ଆର୍ଯ୍ୟ', 'ଜର୍ମାନମାନେ ବିଶ୍ୱର ଶ୍ରେଷ୍ଠ ପ୍ରାଣୀ', ତାଙ୍କ ଇତିହାସ, ବିଜ୍ଞାନ, ସଂସ୍କୃତି, କଳା ସବୁକିଛି ବିଶ୍ୱରେ 'ଅଦ୍ୱିତୀୟ ।' ତେଣୁ ବିଶ୍ୱ ସମାଜକୁ କରଗତ କରିବା ଜର୍ମାନ ଜାତିର ନୈତିକ କର୍ତ୍ତବ୍ୟ । ଠିକ୍ ଏକାଧରଣର ବୃଥା ଆସ୍ଫାଳନ ମୁସୋଲିନିର । ପ୍ରାଚୀନ କାଳରେ ଇଟାଲୀର ରୋମ ଥିଲା ବିଶ୍ୱ ରାଜନୀତି ଓ ଧର୍ମର କେନ୍ଦ୍ରବିନ୍ଦୁ । ତେଣୁ ପୂର୍ବ ଐତିହ୍ୟ ବଜାୟ ରଖିବାକୁ ଇଟାଲି ବିଶ୍ୱର ନେତୃତ୍ୱ ନେବ । ଏପଟେ ଜାପାନର ସାମରିକ ଫାସିବାଦୀମାନେ ଯୁକ୍ତି କଲେ, ତାଙ୍କ ଦେଶ ଉଦିତ ସୂର୍ଯ୍ୟର ଦେଶ । ହଜାର ହଜାର ବର୍ଷ ପୁରୁଣା ତାଙ୍କ ଐତିହ୍ୟ । ଜାପାନର ମହାନ୍ ସମ୍ରାଟ ସମଗ୍ର ବିଶ୍ୱର ସମ୍ରାଟ ହେବେ । ସମଗ୍ର ବିଶ୍ୱକୁ କରଗତ କରି ବିଶ୍ୱବାସୀଙ୍କୁ ପାଶ୍ଚାତ୍ୟର ଅନ୍ୟାୟ ଓ ଅତ୍ୟାଚାରରୁ ମୁକ୍ତି ଦେବା ତାଙ୍କର ନୈତିକ ଦାୟିତ୍ୱ !

ଉଗ୍ର-ଜାତୀୟତା ପଛରେ ହିଟଲର୍‌ଙ୍କର ମହତ୍ୱାକାଂକ୍ଷା ଛଡ଼ା ଆଉ କିଛି ନଥିଲା । ଜର୍ମାନୀ ଜାତିକୁ ଡାକ କରି ସେ ନିରଙ୍କୁଶ କ୍ଷମତା ଲଭିବ, ବିଶ୍ୱକୁ ନିଜ ହାତ ମୁଠାରେ ରଖିବ । ଦେଶବାସୀଙ୍କୁ ରକ୍ତମୁହାଁ କରିବା ପାଇଁ ସେ ଶତ୍ରୁ ତିଆରିଲା-ଇହୁଦିମାନଙ୍କୁ । ଜର୍ମାନ ଉଗ୍ର-ଜାତୀୟତାର ଆୟୁଧ ହେଲେ ଜର୍ମାନବାସୀ ଇହୁଦୀମାନେ । 'ସେମାନେ ଜର୍ମାନବାସୀ, ମାତ୍ର ତାଙ୍କ ଧମନୀରେ ଶୁଦ୍ଧ ଆର୍ଯ୍ୟ ରକ୍ତ ପ୍ରବାହିତ ହୁଏନାହିଁ', 'ସେମାନଙ୍କ ଜର୍ମାନ-ପ୍ରୀତି ସନ୍ଦେହାୟକ', 'ପ୍ରଥମ ବିଶ୍ୱଯୁଦ୍ଧରେ ତାଙ୍କ ଯୋଗୁଁ ଜର୍ମାନୀ ପରାହତ ହେଲା ।' ତେଣୁ ଇହୁଦୀମାନଙ୍କୁ ନିପାତ ନ କଲେ ଜର୍ମାନୀର ଜୟଯାତ୍ରା ଅସମ୍ଭବ । ହିଟଲର୍ ପ୍ରଚାର କଲା ।

ଫାସିବାଦୀମାନଙ୍କର ଜର୍ମାନୀକେନ୍ଦ୍ରିକ ବିଶ୍ୱ ଦୃଷ୍ଟିକୋଣକୁ ଦେଶର ଗଣତନ୍ତ୍ରପ୍ରେମୀ, ଲିବରାଲ ତଥା ସାମ୍ୟବାଦୀ-ସମାଜବାଦୀମାନେ ବିରୋଧ କଲେ । ସେମାନଙ୍କ ଯୁକ୍ତି, ଦେଶର ପ୍ରଗତି ପାଇଁ ଜର୍ମାନୀର ଅଧିବାସୀଙ୍କ ମଧ୍ୟରେ ଶତ୍ରୁତା ନୁହେଁ, ସଂହତି ଦରକାର, ବିଶ୍ୱ ନେତୃତ୍ୱ ସକାଶେ ବୃଥା ଆସ୍ଫାଳନ ନୁହେଁ, ବିଶ୍ୱ ମୈତ୍ରୀ ଆବଶ୍ୟକ, ବିକାଶ ନିମନ୍ତେ ଯୁଦ୍ଧ ନୁହେଁ, ଶାନ୍ତି ଚାହୁଁ । ଫାସିବାଦର ବିରୋଧ କରିବା ଯୋଗୁଁ ଗଣତନ୍ତ୍ରପ୍ରେମୀଙ୍କୁ ଦେଶଦ୍ରୋହୀ ଘୋଷଣା କରାଗଲା । ବ୍ଲାକ ସାର୍ଟ, ବ୍ରାଉନ ସାର୍ଟ ଆଦି ନାଜିପାର୍ଟିର 'ସ୍ୱେଚ୍ଛାସେବୀ', 'ସ୍ୱୟଂସେବୀ' ଗୋଷ୍ଠୀ ଫାସିବାଦ ବିରୋଧୀଙ୍କୁ ପ୍ରାଣାନ୍ତକ ଆକ୍ରମଣ କଲେ, ରିଗ୍‌ଷ୍ଟାଗକୁ (ଜର୍ମାନୀ ପାର୍ଲାମେଣ୍ଟ) ନିଆଁ ଲଗାଇଦେଲେ । ଫାସିବାଦୀଙ୍କ ସରକାର, ଫାସିବାଦୀଙ୍କ ଗୁଣ୍ଡା । କିଏ କାହାକୁ ରୋକିବ ? ଠିକ୍ ଏକା ରକମର ସ୍ଥିତି ଜାପାନରେ । ସାମରିକ ଫାସିବାଦୀମାନେ

ସ୍ୱେଚ୍ଛାରେ ସରକାର ଗଢ଼ିଲେ, ଭାଙ୍ଗିଲେ । ଉଗ୍ରବାଦୀ ସଂଗଠନମାନଙ୍କୁ ହାତମୁଠାରେ ରଖି ଯୁଦ୍ଧ ବିରୋଧୀ ମନ୍ତ୍ରୀ, ପ୍ରଧାନମନ୍ତ୍ରୀମାନଙ୍କୁ ହତ୍ୟା କଲେ । ଜାପାନର ସାହିତ୍ୟ, ସଂସ୍କୃତି, ଇତିହାସକୁ ସେମାନେ ରକ୍ତମୁହାଁ କରି ଗଢ଼ି ଥୋଇଲେ । ଯିଏ ବିରୋଧ କଲା—ତାକୁ ଦେଶଦ୍ରୋହୀର ଆଖ୍ୟା ମିଳିଲା ।

ଆଜି ଯଦି ପ୍ରଶ୍ନ ହୁଏ, ଫାସିବାଦୀ ଉଗ୍ର ଜାତୀୟତାର ସବୁଠାରୁ ଅଧିକ କୁ-ପରିଣାମ ଭୋଗିଲା କିଏ ? ଅନାୟାସରେ ଉତ୍ତର ହେବ ଜର୍ମାନୀ, ଜାପାନ ଓ ଇଟାଲି ଏବଂ ଫାସିବାଦୀମାନେ । ଯେଉଁ ଜାପାନ ୧୯୦୪ ମସିହାରେ ବିଶ୍ୱର ବୃହତ୍ତମ ଦେଶ ରୁଷକୁ ପରାହତ କରିଥିଲା, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସେଠି ଆମେରିକାର ବିଜୟଯାତ୍ରା ଉଡ଼ିଲା । ଆଜି ଜାପାନର ପରିଚୟ ହେଲା, ଆମେରିକାର ପନ୍ଝୁଆଳ, ଶିକ୍ଷା, ପ୍ରତିରକ୍ଷା, ସଂସ୍କୃତି, ବିକୃତି, ସବୁ କ୍ଷେତ୍ରରେ । ଠିକ୍ ସେହିଭଳି ଜର୍ମାନୀ ମଧ୍ୟ ଖଣ୍ଡ ଖଣ୍ଡ ହେଲା, ସବୁଠି ଫାସିବାଦୀମାନେ ପ୍ରାଣଦଣ୍ଡ ପାଇଲେ । ହିଟ୍‌ଲରକୁ ମିତ୍ରଶକ୍ତି ହାତରେ ଧରାପଡ଼ିବା ଭୟରେ ଆତ୍ମହତ୍ୟା କରିବାକୁ ପଡ଼ିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ଆଜି ସଭ୍ୟସମାଜରେ ଫାସିବାଦ ଏକ ଅଶ୍ଳୀଳ ଗାଳି । କେହି ଚାହେଁନାହିଁ, ତା ପରିଚୟ ଭିତରେ କାହିଁ କେଉଁଠି ଫାସିବାଦର ନାମ ରହୁ ।

ମାତ୍ର ଅବଶୋଷର କଥା ଯେ, ନାଁ ରୂପରେ ସିନା 'ଫାସିବାଦ'ର ଅବକ୍ଷୟ ହୋଇଛି, ରାଜନୈତିକ ତତ୍ତ୍ୱ ରୂପରେ ଆଜି ଏହା ବେଶ ବଳ ପାଉଛି । ରାଷ୍ଟ୍ରକୁ ନେଇ ବୃଥା ଆସ୍ଫାଳନ କରିବା, ବିଧର୍ମୀକୁ ଜାତୀୟତା ବିରୋଧୀ ବୋଲି ଘୋଷଣା କରିବା, ସ୍ୱ-ପ୍ରଗତିର ବାଧକ ରୂପରେ ପଡ଼ୋଶୀ ବିରୋଧରେ ସର୍ବଦା ବିଷ ଉଦ୍‌ଗୀରଣ କରିବା, ନିଜ ମତକୁ ସାବ୍ୟସ୍ତ କରିବା ପାଇଁ ସଂସଦ-ବିଧାନସଭାକୁ ଆକ୍ରମଣ କରିବା, ନିଜ ମତଠାରୁ ଭିନ୍ନ ମତ ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ରାଷ୍ଟ୍ରଦ୍ରୋହୀ ମନେ କରିବା, ଆଦି, ଫାସିବାଦର ପୋଷଣ ନୁହେଁ ତ ଆଉ କ'ଣ ? ସରକାର ନିଜର, ଗୁଣ୍ଡା ବି ନିଜର ! କିଏ କାହାକୁ ରୋକିବ ?

ଆଜି ଦେଶର ଚାରିଆଡ଼େ ଫାସିବାଦର ସଂକ୍ରମଣ । ତାର ଢାଲ ଜାତୀୟତା । ତେଣୁ ଅଲକ୍ଷ୍ୟରେ ଆମ ଅନ୍ତଃମନରେ ଯେ ତାହା ଅନୁପ୍ରବେଶ କରିନଯିବ, ତାହା କହିହେବ ନାହିଁ । ତେଣୁ ହିଟଲର, ମୁସୋଲିନି ପରି ତାର ଧ୍ୱଂସ ଅବଶ୍ୟମ୍ଭାବୀ । ତେଣିକି ଧ୍ୱଂସ ଆମେରିକାର ବୋମା ପ୍ରକ୍ଷେପଣରେ ହେଉ, କି ଜନସାଧାରଣଙ୍କ ବିଦ୍ରୋହ ନିଆଁରେ ହେଉ, ସେ ଭିନେ କଥା ।

▢▢

## ସାମ୍ପ୍ରଦାୟିକତାକୁ ବୁଝିବା ପ୍ରକ୍ରିୟାରେ

ସାମ୍ପ୍ରଦାୟିକତାକୁ ଏକ ବିଚାରଧାରା ରୂପେ ପରିଭାଷିତ କରାଯାଇପାରେ । ଏହା ମଧ୍ୟରେ ତିନିଟି ଉପାଦାନ ଅନ୍ତର୍ଭୁକ୍ତ । ପ୍ରଥମତଃ ଏହି ବିଚାରଧାରା ମତରେ ଧର୍ମ ହିଁ ବ୍ୟକ୍ତିର ସ୍ୱାର୍ଥ ନିଶ୍ଚିତ କରେ । ଅର୍ଥାତ୍ ଯେଉଁମାନଙ୍କର ଧର୍ମ ଏକ ସେମାନଙ୍କର ଆର୍ଥିକ ଓ ରାଜନୈତିକ ତଥା ସାମାଜିକ ସ୍ୱାର୍ଥ ମଧ୍ୟ ଅଭିନ୍ନ । ଦ୍ୱିତୀୟତଃ ଗୋଟିଏ ଧର୍ମାବଲମ୍ବୀଙ୍କ ସମସ୍ତ ସ୍ୱାର୍ଥ ଓ ଅନ୍ୟ ଧର୍ମାବଲମ୍ବୀଙ୍କ ସ୍ୱାର୍ଥ ମଧ୍ୟରେ କୌଣସି ସାମଞ୍ଜସ୍ୟ ନ ଥାଏ; ଅର୍ଥାତ୍ ଜଣେ ହିନ୍ଦୁ ଚାଷୀର ଆର୍ଥିକ ସ୍ୱାର୍ଥଠାରୁ ଜଣେ ମୁସଲମାନ ଚାଷୀର ଆର୍ଥିକ ସ୍ୱାର୍ଥ ଭିନ୍ନ, କାରଣ ଉଭୟଙ୍କ ଧର୍ମ ଅଲଗା । ତୃତୀୟତଃ, ସାମ୍ପ୍ରଦାୟିକଙ୍କ ମତରେ ଦୁଇଟି ଭିନ୍ନ ଧର୍ମାବଲମ୍ବୀଙ୍କ ସ୍ୱାର୍ଥ କେବଳ ଅଲଗା ନୁହେଁ, ପରସ୍ପରର ପରିପନ୍ଥୀ ମଧ୍ୟ; ଅର୍ଥାତ୍ ଜଣେ ହିନ୍ଦୁର ସାମାଜିକ ବା ରାଜନୈତିକ ସ୍ୱାର୍ଥ ଏବଂ ଜଣେ ମୁସଲମାନର ସାମାଜିକ ଓ ରାଜନୈତିକ ସ୍ୱାର୍ଥ ମଧ୍ୟରେ ଅହି-ନକୁଳ ସମ୍ପର୍କ । ଏହି କାରଣରୁ ଉଭୟଙ୍କର ମିଳିତ ଭାବେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କଦାପି ସମ୍ଭବ ନୁହେଁ । ଅନ୍ୟ ଶବ୍ଦରେ କହିଲେ, ଧର୍ମ ନାମରେ ଆଖପାଖର ସମାଜର କିଛି ଲୋକଙ୍କୁ 'ବିଧର୍ମୀ' ଘୋଷଣା କରି, ନିରନ୍ତର ସେମାନଙ୍କୁ ଘୃଣା କରିବା ହେଲା ସାଂପ୍ରଦାୟିକତାର ବୀଜମନ୍ତ୍ର ।

ଏହି ଆଧାରରେ ସାମ୍ପ୍ରଦାୟିକ ବ୍ୟକ୍ତି ଦାବି କରେ ଯେ ଏକାଧିକ ଧର୍ମର ଲୋକେ ଗୋଟାଏ ସମାଜ ବା ରାଷ୍ଟ୍ରରେ ଏକା ସାଙ୍ଗରେ ବସବାସ କରିପାରିବେ ନାହିଁ । ଯଦି ସେମାନଙ୍କୁ କୌଣସି କାରଣରୁ ଗୋଟାଏ ରାଷ୍ଟ୍ରରେ ବସବାସ କରିବାକୁ ପଡ଼େ ଉଭୟଙ୍କ ମଧ୍ୟରେ କଳହ ଅବଶ୍ୟମ୍ଭାବୀ । ଏହି ପରିପ୍ରେକ୍ଷୀରେ ସାମ୍ପ୍ରଦାୟିକ ବ୍ୟକ୍ତି ମଧ୍ୟ ଚାହେଁ କଳହର ସ୍ଥାୟୀ ଅବସାନ ହେଉ; ମାତ୍ର ତା' ପାଇଁ ରାସ୍ତା ହେଲା, ଗୋଟାଏ ନିର୍ଦ୍ଦିଷ୍ଟ ଧର୍ମର ନୀତିନିୟମ ବା ସଂସ୍କୃତିକୁ ଅନ୍ୟ ଧର୍ମର ଲୋକ ତାଙ୍କ ନିଜ ହିତରେ ଗ୍ରହଣ କରି ନିଅନ୍ତୁ । ଗୋଟାଏ ରାଷ୍ଟ୍ରକୁ ଗ୍ରହଣ କଲାପରି

ରାଷ୍ଟ୍ରର ସବୁ ଅଧିବାସୀଙ୍କ ପାଇଁ (ସେ ଯେଉଁ ଧର୍ମର ହୁଅନ୍ତୁ ନା କାହିଁକି) ଗୋଟାଏ ଧର୍ମ, ଗୋଟାଏ ସଂସ୍କୃତି, ଗୋଟାଏ ପ୍ରକାର ନୀତିନିୟମ, ଗୋଟାଏ ଭାଷା, ଏକ ପ୍ରକାର ଦେବାଦେବୀ ରହନ୍ତୁ । ସାମ୍ପ୍ରଦାୟିକତା ଆଧାରିତ ରାଷ୍ଟ୍ରବାଦ ବି. ଏଭଳି କେନ୍ଦ୍ରୀକରଣକୁ ଆବଶ୍ୟକ ମନେକରେ ।

ସାମ୍ପ୍ରଦାୟିକତାର ଏ ଯେଉଁ ଆଧାର– ସେଥିରେ ପାକିସ୍ତାନ, ବାଂଲାଦେଶ, ଆଫଗାନିସ୍ଥାନ ପରି ମୁସଲମାନ ବହୁଳ ରାଷ୍ଟ୍ରରେ ମୁସଲମାନ ସାମ୍ପ୍ରଦାୟିକ ପ୍ରଭୁତ୍ୱ ପାଏ । ଭାରତ ପରି ହିନ୍ଦୁବହୁଳ ରାଷ୍ଟ୍ରରେ ହିନ୍ଦୁ ସାମ୍ପ୍ରଦାୟିକ ପ୍ରଭୁତ୍ୱ ଦାବି କରେ; କିନ୍ତୁ ପାଏନି । ସାମ୍ପ୍ରଦାୟିକଙ୍କ ପାଇଁ ଅତି ଦୁର୍ଭାଗ୍ୟର କଥା ଯେ ଆମର ଜାତୀୟତା ସଂଗ୍ରାମ କଦାଚିତ ସେମାନଙ୍କ ହାତରେ ରହିଲାନି । ଫଳରେ ସ୍ୱାଧୀନତା ପରେ ଯେଉଁ ନୂଆ ସମ୍ବିଧାନ ପ୍ରସ୍ତୁତ ହେଲା– ତା ବି ତାଙ୍କ ହାତଛୁଆଁ ହୋଇପାରିଲା ନାହିଁ । ପରିଣାମତଃ ଭାରତର ସମ୍ବିଧାନ ରାଷ୍ଟ୍ରର ସାମ୍ପ୍ରଦାୟିକ ଆଧାରକୁ କେବଳ ଅସ୍ୱୀକାର କରେନା, ତୀବ୍ର ବିରୋଧ ମଧ୍ୟ କରେ । ଯେହେତୁ ପାକିସ୍ତାନରେ ସ୍ଥିତି ଭିନ୍ନ (ଅବଶ୍ୟ ପଡ଼ୋଶୀ ବାଂଲାଦେଶ ଓ ଆଫଗାନିସ୍ଥାନରେ ମଧ୍ୟ ଭିନ୍ନ ସ୍ଥିତି), ସାମ୍ପ୍ରଦାୟିକ ଗୋଷ୍ଠୀ ସେଠି ରାଜନୈତିକ ମଞ୍ଚରେ ମୁଖ୍ୟ ଭୂମିକା ପାଏ । ଏଣୁ ଭାରତର ସଂଖ୍ୟାବହୁଳ ସାମ୍ପ୍ରଦାୟିକଙ୍କ ଅଭାବବୋଧ ଅପେକ୍ଷାକୃତ ଭାବେ ଅଧିକ । ଯେଉଁ ପ୍ରଭୁତ୍ୱ ପାକିସ୍ତାନରେ ତାଙ୍କ ସମଗୋତ୍ରୀଙ୍କୁ ମିଳିଛି, ସେହି ଧରଣର ପ୍ରଭୁତ୍ୱ ଭାରତରେ ତାଙ୍କୁ ମିଳିବା କଥା । ମିଳିନି ! ଉଭୟଙ୍କ ମଧ୍ୟରେ ଥିବା ଏହି ପାର୍ଥକ୍ୟ ନିଶ୍ଚିତ ରୂପେ ଭାରତର ସାମ୍ପ୍ରଦାୟିକ ଶକ୍ତିର ଅଭାବବୋଧକୁ ବୃଦ୍ଧି କରେ ।

ଉଲ୍ଲିଖିତ ଅଭାବବୋଧକୁ ଦୂର କରିବାକୁ ଭାରତୀୟ ରାଷ୍ଟ୍ରର ସାମ୍ପ୍ରଦାୟିକ ଶକ୍ତି ନୂଆ ନୂଆ ପ୍ରୟୋଗମାନ ଯେ ନ କରିବେ, ତା'ର କିଛି ମାନେ ନାହିଁ । ସେ କ୍ଷେତ୍ରରେ ରାଷ୍ଟ୍ରର ଶକ୍ତି ସାମର୍ଥ୍ୟର ଅହେତୁକ ଅପବ୍ୟୟ ହେବା କଥା ନିଶ୍ଚିତ । ଏହି ଆଧାରରେ ସାମ୍ପ୍ରଦାୟିକ ଶକ୍ତିଙ୍କୁ ରାଷ୍ଟ୍ରର ବଡ଼ ରାଷ୍ଟ୍ରବିରୋଧୀ ବୋଲି କୁହାଯାଇପାରେ ।

ସାମ୍ପ୍ରଦାୟିକଙ୍କ ହାତକୁ ଭାରତୀୟ ରାଜ୍ୟ-ରାଷ୍ଟ୍ର ନ ଯିବା ପଛରେ ବଡ଼ କାରଣ ହେଲା ଖୋଦ୍ ସାମ୍ପ୍ରଦାୟିକତା । ଆଧୁନିକ ରାଜ୍ୟ-ରାଷ୍ଟ୍ରର ଏଠି ଭିତ୍ତି ପଡ଼ିଲା ଉପନିବେଶବାଦ ବିରୋଧୀ ଆମର ସ୍ୱାଧୀନତା ସଂଗ୍ରାମ ବେଳେ । ସେହି ଭିତ୍ତିପ୍ରସ୍ତର ପଡ଼ିବାବେଳେ ସାମ୍ପ୍ରଦାୟିକମାନେ ପ୍ରାୟତଃ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରିନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ଏବଂ ଯେଉଁମାନେ ପ୍ରାରମ୍ଭିକ ସ୍ତରରେ

ଅଂଶଗ୍ରହଣ କରିଥିଲେ ସେମାନେ ନିଜେ ପୂର୍ଣ୍ଣତଃ ସାମ୍ପ୍ରଦାୟିକ ହେବା ପରେ ଉପନିବେଶବାଦର ବିରୋଧ କରିବା ପରିବର୍ତ୍ତେ ତାକୁ ସହଯୋଗ ଦେବା ଆରମ୍ଭ କଲେ । ଏହିଭଳି ଏକ ଐତିହାସିକ ଚରିତ୍ର ହେଲେ ବୀର ସବର କର । ସାମ୍ପ୍ରଦାୟିକତା ଆଧାରରେ ଯଦି ପାକିସ୍ତାନ ଗଠିତ ହୋଇ ନ ଥାନ୍ତା, ସବରକରଙ୍କ ପରି ଜିନ୍ନାଙ୍କୁ ବି ଆଜି ସରକାରଙ୍କ ରୋଷର ଶିକାର ହେବାକୁ ପଡ଼ନ୍ତା, ଅବିଭାଜିତ ଭାରତ ଇତିହାସର ଏକ ଅନାମଧେୟ ବ୍ୟକ୍ତିତ୍ୱର ମର୍ଯ୍ୟାଦା ହିଁ ତାଙ୍କର ପ୍ରାପ୍ୟ ହୋଇଥାନ୍ତା । ଅନ୍ୟ ଅର୍ଥରେ କହିଲେ, ସ୍ୱାଧୀନତା ସଂଗ୍ରାମକୁ ଅବହେଳା କରିବାରୁ, ସ୍ୱାଧୀନତୋତ୍ତର ଭାରତରେ ମଧ୍ୟ ସାମ୍ପ୍ରଦାୟିକ ଶକ୍ତି ରାଜନୀତିର ଗୌଣ ସ୍ୱର ହୋଇ ରହିଗଲେ । ଯେତେବେଳେ ବି ସେମାନେ କ୍ଷମତାକୁ ଆସିଛନ୍ତି, ସେ ୧୯୭୭ରେ ହେଉ ବା ୧୯୯୮ ରେ ହେଉ, ତାହା ସମ୍ଭବ ହୋଇଛି, ଧର୍ମନିରପେକ୍ଷ-ଅବସରବାଦୀଙ୍କ ସହଯୋଗ ଯୋଗୁଁ । ଅବସରବାଦୀ ଜର୍ଜ ଫର୍ଣ୍ଣାଡିସ୍ ହୁଅନ୍ତୁ ବା ଆନ୍ଧ୍ରର ଚନ୍ଦ୍ରବାବୁ ନାଇଡୁ ହୁଅନ୍ତୁ ।

ସାମ୍ପ୍ରଦାୟିକ ବିଚାରକୁ ଯଥୋଚିତ ମହତ୍ତ୍ୱ ନ ମିଳିବା ପଛରେ ଅନ୍ୟ ଏକ ବଡ଼ କାରଣ ହେଲା ତା'ର ଅଯୌକ୍ତିକତା । ଆବହମାନ କାଳରୁ ଭାରତ ହେଲା ଏକ ବିବିଧତାର ପରମ୍ପରା । ବିବିଧତା ସତ୍ତ୍ୱେ ଏହି ଭୂଖଣ୍ଡର ଲୋକସମୂହ ହାଣକାଟ ହୋଇ ଇତିହାସରେ ଲୋପ ପାଇ ଯାଇନାହାନ୍ତି । ଅନେକତା ଓ ଏକତା ଭାରତର ଦୁଇଟି ପାର୍ଶ୍ୱ । ଭାରତର ଏହି ସାମାଜିକ ବିବିଧତାକୁ ଯିଏ ମର୍ଯ୍ୟାଦା ଦେଇନି, ଏକୀକରଣ ପାଇଁ ଖଳ ଉଦ୍ୟମ କରିଛି, ଔରଙ୍ଗଜେବ୍ ପରି କେବଳ ନିଜେ ଧ୍ୱଂସ ପାଇନି, ତା'ର କୁଳ ବି ବୁଡ଼ିଛି । ସାମ୍ପ୍ରଦାୟବାଦୀ ଏହି ସତ୍ୟକୁ ଅସ୍ୱୀକାର କରେ । ତେଣୁ ନିକଟ ଭବିଷ୍ୟତରେ ତାକୁ ରାଜନୈତିକ ପ୍ରଭୁତ୍ୱ ମିଳିବା ବି ନୋହିବ ।

ତୃତୀୟରେ, ଆଧୁନିକ ରାଜ୍ୟ-ରାଷ୍ଟ୍ରରେ ଧର୍ମ କିମ୍ବା ସଂସ୍କୃତି କ୍ଷେତ୍ରରେ ନୂଆ କରି ଏକୀକରଣ ଆଉ ସମ୍ଭବ ନୁହେଁ । ଯେଉଁଠି ପରମ୍ପରାଗତ ଭାବେ ଏକୀକରଣ ରହିଥିଲା ସେ ୟୁରୋପ ହେଉ ବା ଚୀନ୍, ଆଜି ସେଠି ବି ବିବିଧତା କ୍ରମଶଃ ପ୍ରସାର ଲାଭ କରୁଛି । ଗମନାଗମନର ସୁବିଧା ତଥା ପେସାଗତ କାରଣରୁ ଛୋଟ ଛୋଟ ସହର ଓ ସାନ ସାନ ରାଷ୍ଟ୍ରରେ ଆଜି ଏକାଧିକ ଧର୍ମ, ସଂସ୍କୃତି ଓ ଭାଷାର ଲୋକ ବସବାସ କଲେଣି । ଅରୁଣାଚଳପ୍ରଦେଶର ପାସିଘାଟ ଏକ ଜିଲ୍ଲାସ୍ତରୀୟ ସହର, ମୋଟ ଲୋକସଂଖ୍ୟା (୧୯୮୮ ମସିହାରେ) ପାଞ୍ଚ ହଜାରରୁ ବେଶି ହେବନି । ସେଠାରେ ମୋର ଦୁଇ ବର୍ଷର ରହଣି ଅବସରରେ ଥରେ ମୁଁ ହିସାବ କରି ଦେଖିଲି ଯେ ଭାରତର ସବୁ ରାଜ୍ୟର ଲୋକ ଅଛନ୍ତି ସେଠି, ସବୁ ଧର୍ମାବଲମ୍ବୀ ଅଛନ୍ତି ।

କେବଳ ସେତିକି ନୁହେଁ, ସତ୍ୟସାଇ ବାବାଙ୍କଠାରୁ ଆରମ୍ଭ କରି ଆଶାରାମ ବାପୁଙ୍କ ଯାଏଁ ସଭିଙ୍କର ଭକ୍ତ ବି ଅଛନ୍ତି । ଏଭଳି ପାସିଘାଟ ସବୁ 'ମିନି ଇଣ୍ଡିଆ' ରୂପରେ ଦେଶର ପ୍ରତିଟି ସାନ ବଡ଼ ସହରରେ ବିରାଜମାନ । ଏହି ପରିସ୍ଥିତିରେ ସମଗ୍ର ଭାରତ ଭୂଖଣ୍ଡରୁ ସଂଖ୍ୟାଲଘୁଙ୍କୁ ନା ନିଶ୍ଚିହ୍ନ କରିବା ସମ୍ଭବ, ନା ତାଙ୍କୁ ହିନ୍ଦୁ ନୀତିରୀତି ମାନିବା ପାଇଁ ବାଧ୍ୟ କରିବା ସମ୍ଭବ ! ତେଣୁ, ବିବିଧତାକୁ ଆଦରି ନେବା କେବଳ ଯୁକ୍ତିଯୁକ୍ତ ନୁହେଁ, ବରଂ ବୁଦ୍ଧିମାନର କାର୍ଯ୍ୟ ମଧ୍ୟ । ଖାଦ୍ୟରେ ବିବିଧତା, ପରିଧାନରେ ବିବିଧତା ଯଦି ବ୍ୟକ୍ତିର ପ୍ରାଚୁର୍ଯ୍ୟକୁ ଦର୍ଶାଏ, ଧର୍ମ ଓ ସଂସ୍କୃତିରେ ବିବିଧତାକୁ ରାଷ୍ଟ୍ର ନିଜର ସଂପତ୍ତି ବୋଲି ଦର୍ଶାଇଲେ- ତହିଁରେ ଅଯୌକ୍ତିକତା କିଛି ନାହିଁ ।

ଏହି କ୍ରମରେ ସଂଖ୍ୟାଲଘୁ ସାମ୍ପ୍ରଦାୟିକତାକୁ ମଧ୍ୟ ବୁଝିବାର ଆବଶ୍ୟକତା ରହିଛି । ଉଭୟ ସଂଖ୍ୟାବହୁଳ ଓ ସଂଖ୍ୟାଲଘୁ ସାମ୍ପ୍ରଦାୟବାଦ ହେଲେ ସାମ୍ପ୍ରଦାୟିକତାର ଗୋଟାଏ ଗୋଟାଏ ଦିଗ । ଉଭୟେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଗୋଟାକର ବହୁଳତାରେ ଅନ୍ୟଟି ବଳ ପାଏ । ଯିଏ ପାକିସ୍ତାନରେ ସଂଖ୍ୟାବହୁଳ ସମ୍ପ୍ରଦାୟବାଦର ପକ୍ଷଧର, ଭାରତରେ ସେ ସଂଖ୍ୟାଲଘୁର ପକ୍ଷଧର । ସଂଖ୍ୟାବହୁଳ ହେବା କାରଣରୁ ଯେଉଁ ସାମ୍ପ୍ରଦାୟିକମାନେ ଭାରତରେ ଧର୍ମନିରପେକ୍ଷତାକୁ ନିଜର ବଡ଼ ଶତ୍ରୁ ବୋଲି ମନେ କରନ୍ତି, ପାକିସ୍ତାନ, ବାଂଲାଦେଶରେ ସେମାନେ ପୁଣି ସ୍ୱ-ସୁରକ୍ଷା ପାଇଁ ଧର୍ମନିରପେକ୍ଷତାର ଆଢୁଆଳରେ ରହନ୍ତି । ତେଣୁ ଧର୍ମନିରପେକ୍ଷ ଗୋଷ୍ଠୀର ଦାୟିତ୍ୱ ହେଲା– ପକ୍ଷପାତ ନ କରି ଉଭୟ ସମ୍ପ୍ରଦାୟବାଦକୁ ସମସ୍ୱରରେ ବିରୋଧ କରିବା । କେବଳ ଗୋଟାକୁ ଆକ୍ରମଣ କଲେ ଅନ୍ୟଟି ବଳ ପାଏ– ସେଥିରେ ଦ୍ୱିରୁକ୍ତି ନାହିଁ । ଦ୍ୱିତୀୟତଃ, ଆକ୍ରମଣର ଶିକାର ହୋଇଥିବା ସାମ୍ପ୍ରଦାୟିକର ମଧ୍ୟ ରକ୍ତବୀର୍ଯ୍ୟ ପରି ଚେର ମାଡ଼େ । ଯଦି ଗତ କେତେ ଦଶନ୍ଧି ଭିତରେ ସଂଖ୍ୟାବହୁଳ ହିନ୍ଦୁ ସମ୍ପ୍ରଦାୟବାଦ ଭାରତରେ ସବଳ ହୋଇଚାଲିଛି, ତା'ପଛରେ ଅନ୍ୟତମ ବଡ଼ କାରଣ ହେବ- 'ଧର୍ମନିରପେକ୍ଷ' ବୁଦ୍ଧିଜୀବୀ ଗୋଷ୍ଠୀର ସଂଖ୍ୟାଲଘୁ ସାମ୍ପ୍ରଦାୟିକତା ପ୍ରତି ନରମ ବ୍ୟବହାର । ଠିକ୍ ସେହିଭଳି ଧର୍ମନିରପେକ୍ଷ ମୁଖ୍ୟ ରାଜନୀତିକ ଦଳ (ଯଥା- କଂଗ୍ରେସ) ଅବସରବାଦୀ ହୋଇ ସଂଖ୍ୟାଲଘୁମାନଙ୍କୁ 'ଭୋଟ୍‌ବ୍ୟାଙ୍କ୍' ରୂପେ ବ୍ୟବହାର କରେ । ଏହା ସଂଖ୍ୟାବହୁଳ ସମାଜର ଅନେକ ଲୋକଙ୍କୁ ନୂଆକରି ସାମ୍ପ୍ରଦାୟିକତା ଆଡ଼କୁ ଆକୃଷ୍ଟ କରେ ।

ସବୁଠାରୁ ବଡ଼ କଥା ହେଲା, ସଂଖ୍ୟାଲଘୁ ସମ୍ପ୍ରଦାୟବାଦର ପ୍ରଚ୍ଛନ୍ନ ସମର୍ଥନ ଦ୍ୱାରା ପ୍ରଥମତଃ ସଂଖ୍ୟାଲଘୁ ସମ୍ପ୍ରଦାୟର ହିଁ ଶତ୍ରୁସଂଖ୍ୟା ବୃଦ୍ଧି ପାଏ । ଦ୍ୱିତୀୟତଃ, ସଂଖ୍ୟାଲଘୁ ସମ୍ପ୍ରଦାୟବାଦୀଙ୍କ ଦାବି ଅନୁଯାୟୀ ଯଦି ଧର୍ମନିରପେକ୍ଷ ଗୋଷ୍ଠୀ କହନ୍ତି

ଯେ ମୁସଲିମ୍ ସାମାଜିକ ଜୀବନରେ କୌଣସି କିସମର ଆଧୁନିକତା ପ୍ରବେଶ କରିବା କଥା ନୁହେଁ, ମଦ୍ରାସା ପୂର୍ବବତ୍ ରୁଢ଼ିବାଦୀଙ୍କ କବଳରେ ରହିବ, ମହିଳା ପର୍ଦ୍ଦା କରିବେ, ତେବେ ନିଶ୍ଚିତ ରୂପେ ତାହା ମୁସଲମାନ ସମାଜର ପ୍ରଗତି ଦିଗରେ ପଦକ୍ଷେପ ହୋଇ ନ ପାରେ । ଠିକ୍ ଏକା ଯୁକ୍ତି ସଂଖ୍ୟାବହୁଳ ସାମ୍ପ୍ରଦାୟିକତା ପାଇଁ । ଆଜି ଏକବିଂଶ ଶତାବ୍ଦୀରେ ଦେଶର ସମସ୍ତ ହିନ୍ଦୁ ଯଦି ଜ୍ୟୋତିଷଶାସ୍ତ୍ରକୁ ବିଜ୍ଞାନର ଉଚିତ ବିକଳ୍ପ ରୂପେ ଆଦରି ନିଅନ୍ତି, ବିଜ୍ଞାନାଗାରରେ 'ହୋମକୁଣ୍ଡ' ସବୁ ସ୍ଥାପିତ ହୁଏ, ତା'ଦ୍ୱାରା ହିନ୍ଦୁମାନଙ୍କର ସାମଗ୍ରିକ ବିକାଶ ହେବ ବୋଲି କଦାଚିତ ଆଶା କରାଯାଇ ନପାରେ ।

ସଂଖ୍ୟାଲଘୁ ଓ ସଂଖ୍ୟାବହୁଳ ସମ୍ପ୍ରଦାୟବାଦ ଯେମିତି ଗୋଟାଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି ଏବଂ ସମ ପରିମାଣରେ ମାରାତ୍ମକ, 'ନରମପନ୍ଥୀ' ଓ 'ଚରମପନ୍ଥୀ' ସମ୍ପ୍ରଦାୟବାଦୀ ସେମିତି ଜଣେ ଅପରର ସହାୟକ ଏବଂ ଉଭୟେ ଏକା ପରିମାଣରେ ରାଷ୍ଟ୍ର ପାଇଁ ଆତଙ୍କବାଦୀ । ତେଣୁ ଶେଷ ନିଷ୍ପତ୍ତି ନେବାବେଳେ 'ନରମପନ୍ଥୀ' ଅଟଳ ବିହାରୀ ବାଜପେୟୀ 'ଚରମପନ୍ଥୀ' ପ୍ରବୀଣ ତୋଗାଡ଼ିଆଙ୍କ ଦ୍ୱାରା କରାଯାଉଥିବା ସମାଲୋଚନା ଓ ବ୍ୟକ୍ତିଗତ ନିନ୍ଦାକୁ ଅକ୍ଳେଶରେ ହଜମ କରିଯାଆନ୍ତି, ଗୁଜରାଟ ଗଣହତ୍ୟା ପାଇଁ ଚାହିଁବା ସତ୍ତ୍ୱେ ନରେନ୍ଦ୍ର ମୋଦିଙ୍କୁ 'ଦୋଷୀ' ଘୋଷଣା କରିପାରନ୍ତି ନାହିଁ । ଅନ୍ୟପକ୍ଷରେ ଉଭୟ ନରମପନ୍ଥୀ ଓ ଚରମପନ୍ଥୀ ମିଶିବା ଦ୍ୱାରା ସାମ୍ପ୍ରଦାୟିକତାର ପରିଧି ବୃଦ୍ଧି ପାଏ । ଅର୍ଥାତ୍ ଉଭୟଙ୍କ ମଧ୍ୟରେ ଯେତେ ବାକ୍‌ବିତଣ୍ଡା ହେଲେ ବି ଜଣେ ଅପରର ପରିପୂରକ । 'ନରମପନ୍ଥୀ' ବାଜପେୟୀଙ୍କ ପ୍ରଶଂସାର ବିଶେଷ ଅର୍ଥ ହେଲା ସାମ୍ପ୍ରଦାୟିକତା ପ୍ରତି ଆକୃଷ୍ଟ ହେବା, ଯାହାକି ପରବର୍ତ୍ତୀ ପଦକ୍ଷେପ ରୂପେ ଆମକୁ 'ଚରମପନ୍ଥୀ' ତୋଗାଡ଼ିଆଙ୍କ କାର୍ଯ୍ୟଶୈଳୀକୁ ସ୍ୱୀକୃତି ଦେବାକୁ ପ୍ରରୋଚିତ କରିବ, ପ୍ରୋତ୍ସାହିତ କରିବ– ଏଥିରେ ସନ୍ଦେହ ନାହିଁ ।

□□

# ଔରଙ୍ଗଜେବଙ୍କ ବ୍ୟକ୍ତିତ୍ୱର ଅନ୍ୟଦିଗ

ମୋଗଲ ସମ୍ରାଟ ଔରଙ୍ଗଜେବଙ୍କୁ ଆମ ଇତିହାସ ପୁସ୍ତକରେ ମୁଖ୍ୟତଃ ଏକ ଖଳନାୟକର ସ୍ଥାନ ମିଳେ । ହିନ୍ଦୁ ବିରୋଧୀ କଟ୍ଟର ମୁସଲିମ୍, ଭାତୃହନ୍ତା, ପିତୃବଂନ୍ଦୀକାରୀ, ସ୍ନେହ, ପ୍ରେମ, ଦୟା, କ୍ଷମା ବିବର୍ଜିତ ଜଣେ କଠୋର ପୁରୁଷ । ଐତିହାସିକ ଯଦୁନାଥ ସରକାରଙ୍କ (୧୮୭୦-୧୯୫୭) ଗବେଷଣା ଆଧାରରେ ସାଧାରଣତଃ ଅନ୍ୟ ଲେଖକମାନେ ଔରଙ୍ଗଜେବଙ୍କ ଏପରି ଚରିତ୍ର-ଚିତ୍ରଣ କରିଥାନ୍ତି । ଯଦୁନାଥ ସରକାର କେବଳ ଔରଙ୍ଗଜେବଙ୍କ ଉପରେ ପାଞ୍ଚଖଣ୍ଡ ଦୀର୍ଘ ପୁସ୍ତକ ଲେଖି ଯାଇଛନ୍ତି । ତହିଁରୁ କିଛି କିଛି ତଥ୍ୟ ନେଇ ଅନ୍ୟମାନେ ଔରଙ୍ଗଜେବଙ୍କୁ ଖଳନାୟକ ରୂପେ ଚିତ୍ରିତ କରନ୍ତି । ଫଳତଃ ଜଣେ କ୍ରୁର, ହିଂସ୍ର ଓ ଅମାନବୀୟ ଶାସକ ରୂପେ ଔରଙ୍ଗଜେବ କେବଳ ଇତିହାସ କାହିଁକି, ଗୀତ-କବିତା, ଢଗ-ଢମାଳିରେ ମଧ୍ୟ ସ୍ଥାନ ପାଆନ୍ତି ।

ମାତ୍ର ଯଦୁନାଥ ସରକାରଙ୍କ ଅଧ୍ୟୟନକୁ ଯଦି ପୂର୍ଣ୍ଣତଃ ବିଚାର କରାଯାଏ, ଦେଖାଯିବ ଯେ ଔରଙ୍ଗଜେବ ଥିଲେ ଉଭୟ 'ବଦଗୁଣ' ଓ 'ସଦ୍‌ଗୁଣ'ର ଏକ ମିଶ୍ରଣ । ତାଙ୍କ ବିଚାର କେତେବେଳେ ନମନୀୟ ତ ଆଉ କେତେବେଳେ ଅନମନୀୟ । କେଉଁଠି ସେ 'ଭୁଲ୍' କରନ୍ତି, ତ ଅନ୍ୟ କେଉଁଠି ସେ 'ଭଲ'. କରନ୍ତି । ଠିକ୍ ଜଣେ ସାଧାରଣ ରକ୍ତ ମାଂସର ମଣିଷ ପରି ଲେଖକ ନିଜ ନିଷ୍ପତ୍ତିରେ ତାଙ୍କର କେବଳ ଗୋଟାଏ ଦିଗକୁ ଧ୍ୟାନ ଦିଏ, ଅନ୍ୟ ଦିଗଗୁଡ଼ିକୁ ଲୋକ ଲୋଚନକୁ ଆଣେନା । ଔରଙ୍ଗଜେବ ଅଧା ଆଲୋଚିତ ରହନ୍ତି, ତାଙ୍କ ବ୍ୟକ୍ତିତ୍ୱର ସମଗ୍ର ରୂପ ଦେଖାପଡ଼େନା । ଐତିହାସିକ ଭାବରେ ଯଦୁନାଥ ସରକାର ହେଲେ ଜଣେ ବ୍ୟତିକ୍ରମ, କାରଣ ସେ ଉଭୟ 'ଭଲ' ଓ 'ଭୁଲ୍' ଦିଗକୁ ଦର୍ଶାନ୍ତି । ଅର୍ଥାତ୍ ତାଙ୍କ ରଚନାରେ ଔରଙ୍ଗଜେବଙ୍କ ବ୍ୟକ୍ତିତ୍ୱର ଅନ୍ୟ ଦିଗ ବି ଦେଖାପଡ଼େ । ତାଙ୍କ ରଚନାରୁ ଦୁଇ ଚାରୋଟି ଘଟଣାକୁ ଏହି ନିବନ୍ଧରେ ଔରଙ୍ଗଜେବଙ୍କ ବ୍ୟକ୍ତିତ୍ୱର 'ଅନ୍ୟଦିଗ'କୁ ଦେଖିବା ପାଇଁ ଏଠାରେ ପ୍ରୟାସ କରାଯାଇଛି ।

ସେତେବେଳେ ଔରଙ୍ଗଜେବ ମାତ୍ର ଜଣେ ୧୪ ବର୍ଷର କିଶୋର । ଦିନେ ବିଭୋର ହୋଇ ଅନ୍ୟ ରାଜକୁମାରମାନଙ୍କ ସହ ଆଗ୍ରା ରାଜପ୍ରସାଦ ଆଗରେ ଆୟୋଜିତ ହୋଇଥିବା ହାତୀ-ଯୁଦ୍ଧ ଦେଖୁଥାନ୍ତି । ହଠାତ୍ ଗୋଟାଏ ହାତୀ ମାତି ଉଠିଲା ଓ ରାଜକୁମାରମାନଙ୍କ ଆଡ଼କୁ ଦଉଡ଼ିଲା । ସେ ମାହୁନ୍ତର ନିୟନ୍ତ୍ରଣ ବାହାରେ । କ୍ଷଣକେ ଉପସ୍ଥିତ ଜନତା ଇତସ୍ତତଃ ହେଲେ । ରାଜକୁମାରମାନେ ମଧ୍ୟ ଏକା ଔରଙ୍ଗଜେବଙ୍କୁ ଛାଡ଼ି ପ୍ରାଣ ବିକଳରେ ଦଉଡ଼ି ପଳାଇଲେ । କିଶୋର ଔରଙ୍ଗଜେବ ସାହସର ସହ କେବଳ ମତ୍ତହସ୍ତୀ ସହ ଖଣ୍ଡଯୁଦ୍ଧ କଲେ ନାହିଁ, ଖଣ୍ଡାବଳରେ ତାକୁ ନିୟନ୍ତ୍ରଣ ମଧ୍ୟ କଲେ । ଆତଙ୍କିତ ଶାହାଜାହାନ ଉପର ମହଲାରୁ ତଳକୁ ଓହ୍ଲାଇ ପଡ଼ିଲେ ଏବଂ ପୁତ୍ର ଔରଙ୍ଗଜେବଙ୍କୁ କୋଳାଗ୍ରତ କରି କହିଲେ, 'ହେ ଈଶ୍ୱର, କି ଦୁର୍ଭାଗ୍ୟ ଘଟିଥାନ୍ତା ଏବେ ? ପୁତ୍ର, ତୁ ଆମର ସମ୍ମାନ ରଖିଦେଲୁ ।' ଔରଙ୍ଗଜେବ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, 'ବାପା, ମୋର ଭାଇମାନେ ପ୍ରାଣବିକଳରେ ଦଉଡ଼ି ଚାଲିଯିବା ପରେ ଆଉ କୋଉ ସମ୍ମାନ ରହିଥିଲା ଯେ ମୁଁ ତାକୁ ରଖି ପାରନ୍ତି ?'

ଥରେ ଦାକ୍ଷିଣାତ୍ୟ ଗସ୍ତ ବେଳେ କୁମାର ଔରଙ୍ଗଜେବ ନିଜ ମଉସା ବରହନପୁର ସୁବାଦାରଙ୍କ ଘରେ ପହଞ୍ଚିଲେ । ଦିନେ ବୁଲୁଥାନ୍ତି, ଶୁଣିଲେ ରାଜ ଉଦ୍ୟାନରେ ଜଣେ ମହିଳା ସୁଲଳିତ କଣ୍ଠରେ ଗୁଣୁ ଗୁଣୁ କରି ଗୀତ ଗାଉଛି । ଗାୟିକା ଥିଲା ମଉସାଙ୍କ ହାରେମର ହୀରାବାଈ ଜଇନାବାଦୀ । ଗୀତ ଶୁଣି ଔରଙ୍ଗଜେବ ଏତେ ବିମୁଗ୍ଧ ହେଲେ ଯେ ତାଙ୍କ ହିତାହତ ଜ୍ଞାନ ହଜିଗଲା । ମାଉସୀଙ୍କ ଆଗରେ ଅଳି କରି କରି, ଜ୍ୟେଷ୍ଠ କୁମାର ଦାରାଙ୍କ ବିରୋଧ ସତ୍ତ୍ୱେ, ଶେଷରେ ସେ ହୀରାବାଈଙ୍କୁ ମୋଗଲ ପ୍ରାସାଦକୁ ଆଣିଲେ ଏବଂ ନିଜ ରକ୍ଷିତା କରି ରଖିଲେ । ତେଣିକି ଔରଙ୍ଗଜେବ ହୀରାବାଈ ପ୍ରେମରେ ବିଭୋର । ପ୍ରବାଦ ଅଛି, ଦିନେ ପ୍ରେମିକା ହୀରାବାଈର କଥା ମାନି ମଦ ପିଇବାକୁ ମଧ୍ୟ ସେ ହଁ ଭରିଥିଲେ । ମଦପାତ୍ରକୁ ହୀରାବାଈ ଔରଙ୍ଗଜେବ ହାତରୁ ଟାଣିନେଇ କହିଲେ, 'କୁମାର, ମୁଁ ଆପଣଙ୍କ ମୋ ପ୍ରତି ପ୍ରେମ କେତେ ଜାଣିବାକୁ ମଦ୍ୟପାନ କରିବାକୁ କହିଥିଲି । ଅନ୍ୟଥା ମୁଁ ଚାହେଁନା ଆପଣ ମଦ ପିଅନ୍ତୁ ।' ହୀରାବାଈର ମୃତ୍ୟୁ ଯାଏଁ ତା ପ୍ରତି ଆଉରଙ୍ଗଜେବଙ୍କ ପ୍ରେମ ଅତୁଟ ଥିଲା । କୁହାଯାଏ, କୋକିଳ-କଣ୍ଠୀ ହୀରାବାଈର ମୃତ୍ୟୁ ପରେ ସେ ଆଉ କେବେ ସଂଗୀତ ଶୁଣି ନାହାନ୍ତି ।

ସମ୍ରାଟ ଔରଙ୍ଗଜେବ୍ ତାଙ୍କ ନାତି ବିଦରକୁ ପ୍ରାଣ ଦେଇ ଭଲ ପାଉଥିଲେ । ନବବିବାହିତ ବିଦରଙ୍କ ଥରେ ପତ୍ନୀ ପୁଟି ବେଗମ୍ ସହ ଝଗଡ଼ା ହେଲା । ପୁଟି

ବେଗମ୍ ଉଚ୍ଚବଂଶଜା, ସୟଦ-କନ୍ୟା । କ୍ରୋଧରେ ବିଦର କହିଲେ, 'ପାଜିର ଝିଅ ପକ୍ଷରେ ମୋଗଲ କୁମାର ଆଗରେ ଗର୍ବ ଶୋଭା ପାଏନା ।' କ୍ଷୁବ୍ଧ ବେଗମ ଉତ୍ତର ଦେଲେ, 'କୁମାର, ଯଦି ଚାହଁ ମତେ ହତ୍ୟା କର ଏହିକ୍ଷଣି । କିନ୍ତୁ ମୋ ବାପାଙ୍କୁ ପାଜି କହିଥିବା ବ୍ୟକ୍ତି ସାଙ୍ଗରେ ମୁଁ କେବେ କଥା କରିବିନି ।' ତେଣିକି ପତି-ପତ୍ନୀ ମଧ୍ୟରେ କଥାଭାଷା ବନ୍ଦ ହେଲା । ଖବର ଯାଇ ଜେଜେ ଔରଙ୍ଗଜେବ କାନରେ ପଡ଼ିଲା । ତତ୍‌କ୍ଷଣାତ୍ ସେ ପାର୍ସୀଭାଷାରୁ ଗୋଟିଏ ପଦ ଉଦ୍ଧାର କରି ମନ୍ତବ୍ୟ ଦେଲେ, 'ପ୍ରତ୍ୟୁଷରେ କୋକିଳ ନବକୁସୁମିତ ଗୋଲାପକୁ କହିଲା, ତୁ ଗର୍ବ କରନା ବେଶି । ତୋ'ଠାରୁ ବହୁତ ସୁନ୍ଦର ଫୁଲ ସବୁ ଏ ଉଦ୍ୟାନରେ ଫୁଟି ସାରିଛନ୍ତି ଆଗରୁ । ଉତ୍ତରରେ ଗୋଲାପ କହିଲା, 'ସତ୍ୟ ଜାଣିବାରେ ମୋର ଦୁଃଖ ନାହିଁ । ହେଲେ ମୋର ଦୁଃଖ ଯେ, ଜଣେ ପ୍ରେମିକ ତା ପ୍ରେମିକାକୁ ଏତେ କଟୁ-ସତ୍ୟଟିଏ କହି ପାରିଲା ।' ସମ୍ରାଟ ପୁଣି ଲେଖିଲେ, 'ମୋର ପ୍ରିୟ ନାତି, ତୋର ଜେଜିମାର ମଧ୍ୟ ଖୁବ୍ ଆତ୍ମଗର୍ବ ଥିଲା । କିନ୍ତୁ ସେ ବଞ୍ଚିଥିବାଯାକେ କେବେ ତାକୁ କଟୁ କଥା କହି ମୁଁ ଆହତ କରି ନାହିଁ, ଜୀବନ ଦେଇ ଭଲ ପାଇଛି ।' ବିଦରଙ୍କୁ ଏ ପତ୍ର କେତେ ପତ୍ନୀ-ପ୍ରେମରେ ଆବଦ୍ଧ କଲା କେଜାଣି, ତେଣିକି ପତି-ପତ୍ନୀ ମଧ୍ୟରେ ଝଗଡ଼ା ଆଉ ମୋଗଲ ଦରବାରକୁ ପହଞ୍ଚିଲା ନାହିଁ ।

ସେ ସମୟରେ ମିର୍ଜା ନୁରଉଦ୍ଦିନ ଥିଲେ ଜଣେ ନାମ କରା ବ୍ୟଙ୍ଗ କବି । ମୋଗଲ ମାନସବଦାର କାମଗାର ଖାନ୍‌ଙ୍କ ନାଁରେ ସେ କବିତାରେ ବ୍ୟଙ୍ଗୋକ୍ତି କଲେ । କ୍ଷୁବ୍ଧ କାମଗାର ଖାନ୍ କବିଙ୍କୁ ଦଣ୍ଡ ଦେବା ପାଇଁ ସମ୍ରାଟଙ୍କଠାରୁ ଅନୁମତି ଲୋଡ଼ିଲେ । କଲମର ତାକତକୁ ଠିକ୍ ରୂପେ ବୁଝିଥିଲେ ଔରଙ୍ଗଜେବ । ସେ କାମଗାର ଖାନ ପାଖକୁ ପଠାଇଥିବା ଫରମାନରେ ଉଲ୍ଲେଖ କଲେ, 'ମିର୍ଜାଙ୍କୁ ଦଣ୍ଡ ଦେଲେ ବେଶି ଅନିଷ୍ଟ ହେବ । ଅତୀତରେ ମୁଁ ମଧ୍ୟ ତାଙ୍କ ବ୍ୟଙ୍ଗର ଶିକାର ହୋଇଛି । ପ୍ରତି ବଦଳରେ ଦଣ୍ଡ ନ ଦେଇ ତାଙ୍କ ମାସିକ ଭତ୍ତା ବଢ଼େଇଛି । ତା' ସତ୍ତ୍ୱେ କବି ମତେ ଛାଡ଼ି ନାହାନ୍ତି । ସମ୍ରାଟଙ୍କ ଅଭିଜ୍ଞତା ଓ ଅଭିନବ ଉପଦେଶ କାମଗାର ଖାନ୍‌ଙ୍କୁ ଶାନ୍ତ କଲା ।

ପାରସ୍ୟ ରାଜା ଥିଲେ ମୋଗଲ ସାମ୍ରାଜ୍ୟର ପଡ଼ୋଶୀ ତଥା ସେହି ହିସିବାରେ ବଡ଼ ଶତ୍ରୁ । ଦିନେ ଗୁପ୍ତଚର ଆସି ଖବର ଦେଲା, ପାରସ୍ୟ ରାଜା ଶାହ ଆବାସ ମୋଗଲ ରାଜ୍ୟ ଆକ୍ରମଣ ପାଇଁ ସୀମାନ୍ତକୁ ସେନା ପଠାଇଛନ୍ତି । ଖବର ପାଇବା କ୍ଷଣି ଔରଙ୍ଗଜେବ ନିଜ ବିଶ୍ୱସ୍ତ ଆରବ ଘୋଡ଼ା ଚଢ଼ି ବାହାରି ପଡ଼ିଲେ । ଉଦ୍ଦେଶ୍ୟ ଶତ୍ରୁ ସେନାକୁ ପ୍ରତିହତ କରିବେ । କିଏ ଅଟକାଇବ ତାଙ୍କୁ ? ଜଣେ ନିର୍ଭୀକ ରାଜ

କର୍ମଚାରୀ ଶେଷକୁ ବାଧ ହୋଇ କହିଲେ, 'ସମ୍ରାଟ, ପ୍ରସ୍ତୁତି ପାଇଁ ଆଗୁଆ ବାହିନୀ ନ ଯିବା ଯାକେ ସମ୍ରାଟଙ୍କ ଯୁଦ୍ଧକୁ ଯିବାର ନିୟମ ନାହିଁ।' ଔରଙ୍ଗଜେବ ଜବାବ ଦେଲେ, 'ଆକ୍ରମଣ କଥା ମୁଁ ନ ଜାଣିଥିଲେ ବା କଥା ଥିଲା। ଯଦି ଗୁପ୍ତଚରଠାରୁ ସମ୍ବାଦ ପାଇଲାପରେ ବି ଆକ୍ରମଣ କ୍ଷେତ୍ରକୁ ନ ଯାଏଁ ମୋଗଲ ସାମ୍ରାଜ୍ୟର ପତନ ହିଁ ଅବଶ୍ୟମ୍ଭାବୀ ହେବ। ସେତେବେଳେ କି ଆଉ ଦରକାର ଥିବ ମୋଗଲ ଆଗୁଆ ବାହିନୀର ?'

ଭାଗ୍ୟର ବିଡ଼ମ୍ବନା ଯେ ନିଜ ରାଜ୍ୟକୁ ପ୍ରାଣଠାରୁ ଅଧିକ ଭଲପାଇଥିବା ଏହି ବିରଳ ବ୍ୟକ୍ତିତ୍ୱ ଇତିହାସରେ କେବେ ତାଙ୍କ ଦେଶପ୍ରେମ ପାଇଁ ଗଣା ହୁଅନ୍ତି ନାହିଁ। ପ୍ରେମ ଓ ଶ୍ରଦ୍ଧା ପାଇଁ ମଧ୍ୟ କାହାରି ନଜରରେ ପଡ଼ନ୍ତି ନାହିଁ, କାରଣ ଆମେ ଦେଖିବା ଲୋକ ଅନ୍ୟ ବ୍ୟକ୍ତିଠାରେ କେବଳ 'ଭଲ' କେବଳ, 'ଧଳା', 'କେବଳ 'ସୁଗୁଣ' ବା ଅନ୍ୟ ପକ୍ଷରେ କେବଳ 'ଖରାପ', କେବଳ 'କଳା', କେବଳ 'ଦୁର୍ଗୁଣ' ଦେଖିବାକୁ ଚାହାନ୍ତି। 'ଧଳା' ଓ 'କଳା' ମଝିରେ ବି ଆହୁରି ଅନେକ ରଂଗ ରହିଛି, ତାହା ବୁଝିବାକୁ, ଦେଖିବାକୁ ଆମେ କ୍ୱଚିତ ପ୍ରୟାସ କରନ୍ତି।

❐❐

# ଜୟୀ ରାଜଗୁରୁଙ୍କୁ ନେଇ

ଓଡ଼ିଶା ବାହାରେ ବହୁତ କମ୍ ଲୋକ ହୁଏତ ଜୟୀ ରାଜଗୁରୁଙ୍କ ନାଁ ଶୁଣିଥିବେ । ଓଡ଼ିଶାରେ ନାଁ ଶୁଣି ଥାଇପାରନ୍ତି; କିନ୍ତୁ ତାଙ୍କ ଐତିହାସିକ ଭୂମିକା ସମ୍ପର୍କରେ ଭଲ ଭାବେ ଜାଣିଥିବେ ବୋଲି ମନେ ହୁଏନା । ଏହା କହିବା ପଛରେ ଆଧାର ହେଲା, ଇତିହାସର ଛାତ୍ର ହେବା ସତ୍ତ୍ୱେ ମୋର ବି ଆଗରୁ ଜୟୀ ରାଜଗୁରୁଙ୍କୁ ନେଇ ବିଶେଷ କିଛି ଧାରଣା ନ ଥିଲା । ନିକଟରେ ଏକ ଆଲୋଚନା ସଭାରେ ତାଙ୍କ ଉପରେ ଏକ ଲେଖା ପ୍ରସ୍ତୁତ କରିବାକୁ ସଭାର ଆଲୋଚକ ବନ୍ଧୁ ପ୍ରସ୍ତାବ ଦେଲେ । ସେହି ସନ୍ଦର୍ଭରେ କିଛିଟା ଅଧ୍ୟୟନ ହେଲା । ତାକୁ ଭିତ୍ତିକରି କହିବାକୁ ଇଚ୍ଛା ହେଉଛି ଯେ ଜୟୀ ରାଜଗୁରୁ ଏବଂ ତତ୍କାଳୀନ ଓଡ଼ିଶା ଇତିହାସକୁ ନେଇ ଆମର ଯେଉଁ ଗାମ୍ଭୀର୍ଯ୍ୟ ରହିବା କଥା, ତାହା ରହିନି । କୌଣସି ସଭାରେ ରାଜନେତା, ମନ୍ତ୍ରୀଙ୍କ ମୁହଁରୁ ରାଜଗୁରୁଙ୍କ ପ୍ରଶସ୍ତି ଶୁଣାଯାଇପାରେ, ହେଲେ ତାହା କଦାଚିତ ତଥ୍ୟଭିତ୍ତିକ ବସ୍ତୁନିଷ୍ଠ ଆଲୋଚନା ହୋଇପାରେନା । ପ୍ରଶଂସା ବା ନିନ୍ଦା ଯଦି ଭିତ୍ତିହୀନ, ସଭାରେ ହୁଏତ ତାହା କରତାଳି ଆଣିଦେଇପାରେ, ହେଲେ ଉଦ୍ଦିଷ୍ଟ ଚରିତ୍ର କିମ୍ବା ପରିଘଟନାକୁ ଯଥୋଚିତ ଐତିହାସିକ ମର୍ଯ୍ୟାଦା ଦେଇ ପାରେନା । ଫଳରେ ଯେଉଁ ଜୟୀ ରାଜଗୁରୁଙ୍କୁ ଭାରତ ଇତିହାସରେ ସ୍ଥାନ ମିଳିବା କଥା, ସେ ଓଡ଼ିଶା ଇତିହାସ ଯାଏଁ ବି ଅଣା ହୋଇପାରନ୍ତି ନାହିଁ । ନିଜ କର୍ମଭୂମି ଖୋର୍ଦ୍ଧାର ସାନ ପରିଧି ଭିତରେ କେବଳ କିମ୍ବଦନ୍ତୀ ହୋଇ ରହିଯା'ନ୍ତି । ଗ୍ରାମ୍ୟ ଦେବାଦେବୀଙ୍କ ପରି । ଜାଣି, ଗାଁ ବାହାରେ ତାଙ୍କୁ କିଏ ଚିହ୍ନିବ ?

୧୮୦୩ ମସିହା ସେପ୍ଟେମ୍ବର- ଅକ୍ଟୋବର ମାସରେ ମରାଠାମାନଙ୍କୁ ପରାସ୍ତ କରି ଇଂରେଜମାନେ ଓଡ଼ିଶା ଅଧିକାର କରିନେଲେ । ତା'ର କିଛି ମାସ ନ ଯାଉଣୁ ୧୮୦୪ ମସିହାରେ ଖୋର୍ଦ୍ଧାରେ ଜୟୀ ରାଜଗୁରୁ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବକ୍ସି ଜଗବନ୍ଧୁ ଓ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହର ବହୁ ପୂର୍ବର ଏହି ଘଟଣା ! ୧୮୦୫ ଜାନୁଆରୀ ମାସରେ ବ୍ରିଟିଶ୍ ସେନାପତି ହାର୍‌କୋର୍ଟ୍‌ଙ୍କ ହାତରେ ଜୟୀ ବରୁଣେଇ ପାହାଡ଼ରେ ଧରାପଡ଼ିଲେ । ୧୮୦୬ ଡିସେମ୍ବର ୬ ତାରିଖରେ ସୁଦୂର ମେଦିନିପୁର ଜେଲ୍‌ରେ ତାଙ୍କୁ ରାଜଦ୍ରୋହ ଅପରାଧରେ ଫାଶୀ

ଦିଆଗଲା । ବ୍ରିଟିଶ୍ ଶାସନକୁ ବିରୋଧ କରି ଆତ୍ମବଳି ଦେବାରେ ଜୟୀ ରାଜଗୁରୁ ବୋଧେ ହେବେ ପ୍ରଥମ ଓଡ଼ିଆ ।

ଜୟୀ ରାଜଗୁରୁଙ୍କ ରାଜନୀତିର ଅନ୍ୟ ଏକ ମହତ୍ତ୍ୱ ହେଲା ତାଙ୍କ ଦୂରଦୃଷ୍ଟି । ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀର ଅନେକ ଇଂରେଜ-ବିରୋଧୀଙ୍କ ଏକ ବଡ଼ ଦୁର୍ବଳତା ହେଲା- ଦୂରଦୃଷ୍ଟିର ଅଭାବ । ସେମାନେ ଭାବୁଥିଲେ, ଇଂରେଜମାନେ ହେଲେ ଦରିଆପାରିର ଏକ ଛୋଟିଆ ବଣିକ ଦଳ । ସେହି ଆଧାରରେ ଭାରତର ରାଜାରାଜୁଡ଼ାମାନେ ଇଂରେଜମାନଙ୍କ ସହ ବନ୍ଧୁତା କରୁଥିଲେ, ଶତ୍ରୁତା କରୁଥିଲେ । ମିର୍‌ଜାଫର ବନ୍ଧୁତା କଲେ, ପରିଣାମ ବିଷମୟ ହେଲା ତାଙ୍କ ପାଇଁ । ଯେଉଁମାନେ ଶତ୍ରୁତା କଲେ, ସେମାନେ ବି ନିଜର ସମ୍ମିଳିତ ଶକ୍ତିକୁ ଇଂରେଜ ବିରୁଦ୍ଧରେ ଏକଜୁଟ୍ କରି ପାରିଲେ ନାହିଁ । ଏହି ସନ୍ଦର୍ଭରେ ମୈସୁରର ରାଜା ଟିପୁ ସୁଲ୍‌ତାନଙ୍କ ଦୂରଦୃଷ୍ଟି ଥିଲା ବୋଲି ସ୍ୱୀକାର କରିବାକୁ ହେବ, କାରଣ ଅନ୍ୟ ଭାରତୀୟ ରାଜାମାନଙ୍କୁ ଏକଜୁଟ କରି ବ୍ରିଟିଶ୍ ବିରୁଦ୍ଧରେ ସେ ଲଢ଼ିବାର ଯୋଜନା କରୁଥିଲେ । ତାଙ୍କୁ ଭଲ ଭାବେ ଜଣାଥିଲା ଯେ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜ ସୈନ୍ୟ ପଛରେ ବିଶାଳ ଇଂରେଜ ଉପନିବେଶବାଦର ପ୍ରଚ୍ଛନ୍ନ ହାତ ରହିଛି । ତେଣୁ ଏକା ଏକା ତା'ର ପ୍ରତିରୋଧ କରିବା ମାନେ କୀଟ ପତଙ୍ଗ ପରି ଜଳନ୍ତା ଜୁଇରେ ଝାସ ଦେବା । ଜୟୀ ରାଜଗୁରୁ କମ୍ ବେଶି କରି ଟିପୁଙ୍କ ପରି ଦୂରଦୃଷ୍ଟିସମ୍ପନ୍ନ ଥିଲେ । ଯେତେବେଳେ ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ଇଂରେଜମାନଙ୍କର ଓଡ଼ିଶା ଆକ୍ରମଣ ବେଳେ ମରାଠାମାନଙ୍କ ବିରୁଦ୍ଧରେ ଇଂରେଜ ଶକ୍ତିକୁ ସହଯୋଗ କରିବାକୁ ଆଦେଶ ଦେଲେ, 'ରାଜଗୁରୁ' ଭାବରେ ଜୟୀ ତା'ର ବିରୋଧ କରିଥିଲେ । ରାଜାଙ୍କ ବିଚାରରେ ମରାଠାମାନଙ୍କ କବଳରୁ ପୁରୀ ମନ୍ଦିରକୁ ପୁନରାଧିକାର କରିବାକୁ ହେଲେ ଇଂରେଜମାନଙ୍କୁ ସାହାଯ୍ୟ କରି ମରାଠାମାନଙ୍କୁ ପରାସ୍ତ କରାଯାଉ । ତେଣିକି ଅଣ-ହିନ୍ଦୁ ବ୍ରିଟିଶ୍ ସରକାର ମନ୍ଦିରର ଦାୟିତ୍ୱ ସହଯୋଗୀ ଖୋର୍ଦ୍ଧା ଗଜପତିଙ୍କୁ ହସ୍ତାନ୍ତର କରିଦେବେ ! ଏହି ସହଯୋଗ ପାଇଁ ଇଂରେଜଠାରୁ ଖୋର୍ଦ୍ଧାକୁ ଅର୍ଥ ସାହାଯ୍ୟ ମିଳିବାର ବି ଆଶା ଥିଲା । ମାତ୍ର ଜୟୀଙ୍କ ଦୃଷ୍ଟିରେ ଏହା କେବେ ଗ୍ରହଣୀୟ ନ ଥିଲା । ତା' ସତ୍ତ୍ୱେ, ଯେତେବେଳେ ଖୋର୍ଦ୍ଧା ମରାଠାମାନଙ୍କ ବିରୁଦ୍ଧରେ ଇଂରେଜ କମ୍ପାନୀକୁ ସହଯୋଗ କଲା ୧୮୦୩ ମସିହାରେ ଏବଂ କିଛି ମାସ ପରେ ମନ୍ଦିର ପରିଚାଳନା ଭାର ହସ୍ତାନ୍ତର କରିବାକୁ ସରକାର ମଙ୍ଗିଲେ ନାହିଁ, ୧୮୦୪ ମସିହା ମାର୍ଚ୍ଚ ମାସରେ ଜୟୀ ରାଜଗୁରୁ ୨୦୦୦ ପାଇକଙ୍କୁ ନେଇ କଟକରେ 'ସାହେବ'ଙ୍କୁ ଫେରାଦ ହେଲେ । କେବଳ ସେତିକି ନୁହେଁ, ଇଂରେଜ ବିରୁଦ୍ଧରେ ଲଢ଼ିବା ପାଇଁ ସେ ଖୋର୍ଦ୍ଧାର ପରମ ଶତ୍ରୁ ମରାଠାମାନଙ୍କଠାରୁ ମଧ୍ୟ ସହଯୋଗ ଲୋଡ଼ିଥିଲେ ତଥା କୁଜଙ୍ଗ, କନିକା ଓ ମାରିଚପୁରର ରାଜା-ଜମିଦାରଙ୍କୁ ଏକଜୁଟ କରିଥିଲେ ।

ତା' ସତ୍ତ୍ୱେ ଜୟୀଙ୍କ ନେତୃତ୍ୱରେ ପରିଚାଳିତ ଖୋର୍ଦ୍ଧା ପରାଜିତ ହେଲା ସତ, ମାତ୍ର ଏସବୁ ପଦକ୍ଷେପ ନେତୃତ୍ୱର ଦୂରଦୃଷ୍ଟିକୁ ସୂଚିତ କରେ ।

ଜୟୀ ରାଜଗୁରୁଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ଦିଗ ହେଲା ତାଙ୍କ ସ୍ୱାଭିମାନ । ତାଙ୍କ ସମଗ୍ର ସଂଗ୍ରାମକୁ ସ୍ୱାଭିମାନ ପାଇଁ ଲଢ଼େଇ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଅଷ୍ଟାଦଶ ଶତାବ୍ଦୀର ଖୋର୍ଦ୍ଧା ଗଡ଼ଜାତ, ଜଗନ୍ନାଥ ମନ୍ଦିର, ପୁରୀକୁ ନେଇ ଥିବା ସ୍ୱାଭିମାନକୁ ଆଜି ଏକବିଂଶ ଶତାବ୍ଦୀର ରାଷ୍ଟ୍ରଭକ୍ତି, ଦେଶାଭିମାନ ସାଙ୍ଗରେ ତୁଳନା କରିବା ଅମୂଳକ । ପଚିଶ ଶହ ବର୍ଷ ତଳେ ପଞ୍ଜାବର କେଉଁ ଛୋଟିଆ ରାଜ୍ୟର ରାଜା ପୁରୁ ତା' କ୍ଷୁଦ୍ର ରାଜ୍ୟର ସ୍ୱାଭିମାନ ପାଇଁ ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡାର ଆଗରେ ମୁଣ୍ଡ ନୁଆଇଁ ନ ଥିଲା । ଆଜି ଏକବିଂଶ ଶତାବ୍ଦୀରେ ଜାତୀୟତାର ଚରମ କାଳରେ ଯଦି ସେ ରହିଥା'ନ୍ତା, ବିଶାଳ ଭାରତ ରାଷ୍ଟ୍ରର ସ୍ୱାଭିମାନ ପାଇଁ ମଧ୍ୟ ଏକା ରୀତିରେ ପ୍ରତିବଦ୍ଧତା ଦେଖାଇ ଥା'ନ୍ତା । ଠିକ୍ ସେହିଭଳି ଊନବିଂଶ ଶତାବ୍ଦୀର ଆଦ୍ୟ କାଳରେ ଜୟୀ ରାଜଗୁରୁଙ୍କ କେବଳ ଖୋର୍ଦ୍ଧା ଗଡ଼ଜାତ ଓ ଜଗନ୍ନାଥଙ୍କ ପାଇଁ ସ୍ୱାଭିମାନ ରହିବାରେ କିଛି ଅସ୍ୱାଭାବିକତା ଦେଖାଯାଇ ନ ପାରେ । ବଡ଼କଥା ହେଲା ଯେ ସେହି ସ୍ୱାଭିମାନ ପାଇଁ ସେ ଇଂରେଜ ସହ ବୁଝାମଣାର ସବୁ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ବନ୍ଦୀ ହେଲା ପରେ ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜମାନଙ୍କ ପ୍ରଭୁତ୍ୱ ସ୍ୱୀକାର କରିବାକୁ ରାଜି ହୋଇଗଲେ ବୋଲି ଫାଶୀଦଣ୍ଡରୁ ମୁକ୍ତି ପାଇଲେ । ଶେଷରେ ୧୮୦୭ ମସିହାରେ ମେଦିନିପୁର ଜେଲ୍‌ରୁ ଖଲାସ ହୋଇ ବାର୍ଷିକ ପେନ୍‌ସନ୍ ମଧ୍ୟ ଭୋଗ କଲେ । ଅନ୍ୟ ପକ୍ଷରେ ଜୟୀ ରାଜଗୁରୁ ଶେଷଯାଏଁ ନିଜ ବିଶ୍ୱାସରେ ଅଟଳ ରହିଲେ, ଇଂରେଜମାନଙ୍କ ବଶ୍ୟତା ସ୍ୱୀକାର କଲେନି । ଫଳତଃ, ତାଙ୍କୁ ଫାଶୀ ଦଣ୍ଡ ମିଳିଲା । ସ୍ୱାଭିମାନର ରକ୍ଷାର୍ଥେ ଜୟୀ ରାଜଗୁରୁଙ୍କ ସେହି 'ପାଗଳ ପଣିଆ'ର ଆଜି ବି ପ୍ରାସଙ୍ଗିକତା ରହିଛି । ସେହି କାରଣରୁ ଇଂରେଜମାନଙ୍କ ବୋଲ ମାନିଥିବା, ସ୍ୱାଭିମାନକୁ ବଳି ଦେଇଥିବା ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ ମାତ୍ର କେତୋଟି ବର୍ଷ ଭିତରେ ଇତିହାସର ଗିରି ଗହ୍ୱରରେ ଚାପିହୋଇ ପଡ଼ିଲେ । ଅନ୍ୟପକ୍ଷରେ ଆଜି ଦୁଇଶହ ବର୍ଷ ପରେ ବି ଜୟୀ ରାଜଗୁରୁ ଅମ୍ଳାନ ପ୍ରତିଭା ହୋଇ ରହିଛନ୍ତି । ଇତିହାସକୁ ଖୋଳି ତାଙ୍କୁ ଯାହା ଖାଲି ଆବିଷ୍କାର କରିପାରିଲେ ହେଲା ।

ଜୟୀ ରାଜଗୁରୁଙ୍କୁ ତାଙ୍କ ପରିବେଶ ଓ ସମୟର ଏକ ସୃଷ୍ଟି ରୂପେ ଦେଖାଯାଇପାରେ । ୧୭୩୯ ମସିହାରେ ତାଙ୍କର ଜନ୍ମ ପୁରୀ ବ୍ରାହ୍ମଣ ଶାସନ ବୀର ହରେକୃଷ୍ଣପୁର ଗାଁରେ । ପିତା ଚାନ୍ଦ ରାଜଗୁରୁଙ୍କଠାରୁ ଉତ୍ତରାଧିକାର ସୂତ୍ରରେ ଖୋର୍ଦ୍ଧା ଗଡ଼ଜାତର 'ରାଜଗୁରୁ' ପଦ ପାଇବା ପୂର୍ବରୁ ଜୟୀ ଗାଁର ସେହି ରକ୍ଷଣଶୀଳ ବ୍ରାହ୍ମଣ ପରିବେଶରେ ପ୍ରାଚ୍ୟ ଜ୍ଞାନ ଓ ଗାରିମା କେବଳ ଲାଭ କରି ନ ଥିଲେ,

ଜଗନ୍ନାଥ ସଂସ୍କୃତିର ଶ୍ରେଷ୍ଠତାକୁ ନେଇ ନିଜ ଅନ୍ତଃମନରେ ବିଶ୍ୱାସ ଓ ସ୍ୱାଭିମାନ ମଧ୍ୟ ପାଇଥିଲେ । ଇଂରେଜମାନଙ୍କ ବଶ୍ୟତା ସ୍ୱୀକାର କଲେ ସେହି ଆତ୍ମବିଶ୍ୱାସର ଅପମୃତ୍ୟୁ ହେବ, ସ୍ୱାଭିମାନର ହତ୍ୟା ହେବ, ଏକଥା ଜୟୀଙ୍କୁ ଜଣାଥିଲା । ତେଣୁ ନିଜେ ଫାଶୀରେ ଝୁଲିଲେ ପଛେ ନିଜ ବିଶ୍ୱାସକୁ ବଳି ଦେଲେ ନାହିଁ ।

ମହତ୍ତ୍ୱ ଦେବା ପାଇଁ ହେଉ ପଛେ, ଜୟୀ ରାଜଗୁରୁଙ୍କୁ କସ୍ମିନ କାଳେ ଇତିହାସର ଏକ ବ୍ୟତିକ୍ରମ ରୂପେ ଦେଖାଯାଇ ନ ପାରେ । ତାଙ୍କର ଯାହା ଭୂମିକା ସେଥିରୁ ତାଙ୍କୁ ସାନ କରି ଦେଖିଲେ ଜୟୀଙ୍କର ଯେତେ ଅମର୍ଯ୍ୟାଦା ହେବ, ତାଙ୍କ ସମସାମୟିକ ସଂଗ୍ରାମୀମାନଙ୍କଠାରୁ ତାଙ୍କୁ ଉଚ୍ଚରେ ରଖିଲେ ମଧ୍ୟ କମ୍ ଅମର୍ଯ୍ୟାଦା ହେବନାହିଁ । ଅସଲରେ ୧୭୫୭ ପଲାସୀ ଯୁଦ୍ଧ ପରଠାରୁ ଇଂରେଜ ଶାସନ କ୍ରମଶଃ ବିସ୍ତାରିତ ହେଲା ଏବଂ ତା' ସାଙ୍ଗରେ ତାଳଦେଇ ଅଧିକୃତ ଅଞ୍ଚଳରେ ବିଦ୍ରୋହର ସୂତ୍ରପାତ ହେଲା । ଏହି କ୍ରମରେ ୧୭୬୫ ମସିହା ବେଳକୁ ବଙ୍ଗପ୍ରଦେଶରେ ସନ୍ୟାସୀ ଆନ୍ଦୋଳନ ସଂଘଟିତ ହେଲା, କାରଣ ସର୍ବପ୍ରଥମ ଇଂରେଜ ଶାସନ ସେହି ପ୍ରଦେଶରେ ବିସ୍ତାରିତ ହୋଇଥିଲା । ଏହି ଓଡ଼ିଶାରେ ଖୋର୍ଦ୍ଧା ସାଙ୍ଗରେ ହାତ ମିଳାଇବା ଅପରାଧରେ କୁଜଙ୍ଗ ରାଜା ରାଜ୍ୟଚ୍ୟୁତ ହେଲେ, କନିକା ରାଜା ବାଲେଶ୍ୱର ଜେଲ୍‌ରେ ବନ୍ଦୀ ହୋଇ ରହିଲେ । କନିକା, କୁଜଙ୍ଗର ତ୍ୟାଗ ଖୋର୍ଦ୍ଧାର ତ୍ୟାଗଠାରୁ କମ୍ ବୋଲି ବା କହିବା କେମିତି ? ଓଡ଼ିଶା ବାହାରେ କେରଳର ତ୍ରିଭାନ୍‌କୁର ରାଜ୍ୟର ଦେଓ୍ୱାନ୍ ଭେଲୁ ଥାଂପି ସେହି ୧୮୦୪-୦୫ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ବିରୁଦ୍ଧରେ କେବଳ ବିଦ୍ରୋହ କଲେ ନାହିଁ । ଶେଷଯାଏଁ ନିଜ ବିଶ୍ୱାସରେ ଅନମନୀୟ ରହିଲେ ବୋଲି ଫାଶୀ ପାଇଲା ପରେ ବି ତାଙ୍କ ଶରୀରକୁ କେତେଦିନ ଯାଏଁ ଗଛରେ ଝୁଲାଇ ରଖାଗଲା । ଉଦ୍ଦେଶ୍ୟ ଲୋକ ଜାଣନ୍ତୁ ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିବାର ପରିଣାମ କେତେ ଭୟଙ୍କର !

ଜୟୀ ରାଜଗୁରୁ ଓ ଭେଲୁ ଥାଂପି ଆଦି ସମସ୍ତ ଇତିହାସର ଚରିତ୍ର ହେଲେ ନିଜ ନିଜ ପରିବେଶ ଓ ସମୟର ସୃଷ୍ଟି । ତାଙ୍କୁ ତାଙ୍କ ପରିବେଶ ଓ ପରିପ୍ରେକ୍ଷୀରେ ଦେଖିଲେ ଦେଖିବାଟା ଆମୋଦଦାୟୀ ହେବ, ଶିକ୍ଷଣୀୟ ହେବ । ଅଯଥାରେ ଅତି ଭାବପ୍ରବଣ ହୋଇ ଜୟୀ ରାଜଗୁରୁଙ୍କୁ ଭେଲୁ ଥାଂପିଙ୍କଠାରୁ ଉଚ୍ଚରେ ରଖିଲେ, ଆତ୍ମବଳି ଦେଇ ସାରିଥିବା ଭେଲୁ ଥାଂପିଙ୍କର ତ କିଛି କ୍ଷତି ହେବ ନାହିଁ, ବରଂ ଆମେ ହାସ୍ୟାସ୍ପଦ ହେବେ, ଆମର ଦୃଷ୍ଟି ସଂକୁଚିତ ବୋଲି ଆମେ ନିଜେ ସିଦ୍ଧ କରିଦେବା । ଅନ୍ୟ ପକ୍ଷରେ ଆମ ଚିତ୍ରଣରେ ତ୍ରୁଟି ଦିଶାଇ ଜୟୀ ରାଜଗୁରୁଙ୍କ ଐତିହାସିକ ଭୂମିକାକୁ ମଧ୍ୟ ବାକୀମାନେ ଉପେକ୍ଷା କରିବେ । ତେଣିକି ଆଞ୍ଚଳିକ ସ୍ତରରେ ଆବଦ୍ଧ ହୋଇ ରହିବା ହିଁ ଜୟୀଙ୍କର ନିୟତି ହେବ— ଏଥିରେ ସନ୍ଦେହ ନାହିଁ ।

□□

## ଗାନ୍ଧି ଚର୍ଚ୍ଚା

ସାଂପ୍ରତିକ ସମାଜରେ ମହାତ୍ମା ଗାନ୍ଧିଙ୍କୁ ଜଣେ 'ଅତି ମାନବ' ବା 'ମହାପୁରୁଷ' ରୂପେ ଦେଖିବାର କୌଣସି ଆବଶ୍ୟକତା ନାହିଁ, କାରଣ ସେ ସେହି ଧରଣର କୌଣସି 'ମହାମାନବ' ନ ଥିଲେ । ଦ୍ୱିତୀୟତଃ, ତାଙ୍କୁ ଯଦି ଜଣେ ହାଡ଼ମାଂସର ମଣିଷ, ନିଷ୍ଠାବାନ ରାଜନେତା ଭାବରେ ଦେଖାଯାଏ, ତେବେ ସେହି ଦୃଷ୍ଟିକୋଣ ବୋଧହୁଏ ଅଧିକ ପ୍ରାସଙ୍ଗିକ ମନେହେବ । 'ଅତି ମାନବ' ପୂଜ୍ୟ ହୁଏ ସତ, ମାତ୍ର ସାଧାରଣ ମଣିଷଟିଏ ପାଇଁ 'ଅପହଞ୍ଚ' ହୋଇ ରହିଯାଏ । ଉଭୟ ଭୁଲ୍ ବା ଠିକ୍ କରିବା ପାଇଁ ସାମର୍ଥ୍ୟ ରଖିଥିବା ସାଧାରଣ ମଣିଷ ଜଣେ ପ୍ରାୟତଃ ତା' ନିଜ ଭଳିଆ ବ୍ୟକ୍ତିଠାରୁ ହିଁ ପ୍ରେରଣା ନିଏ । ବଡ଼ଲୋକ ତା' ପାଇଁ ଏତେ 'ଉଚ୍ଚ' ହୋଇ ପଡ଼ନ୍ତି ଯେ, ତାଙ୍କ ଦିଆ ପ୍ରେରଣା ତା' ପାଖରେ ପହଞ୍ଚି ପାରେନା । ଆଜିର ପରିପ୍ରେକ୍ଷୀରେ ଜାତିର ଜନକଙ୍କୁ ପୂଜା କରିବା ଅପେକ୍ଷା ଅଧିକ ଆବଶ୍ୟକ ତାଙ୍କଠାରୁ ବାଟ ପାଇବାର । ଆଜି ବି ସମାଜରେ ଅନେକ ନିଷ୍ଠାପର ବ୍ୟକ୍ତି ଅଛନ୍ତି, ସେମାନେ 'ସାଧାରଣ ହିତ'କୁ 'ବ୍ୟକ୍ତିଗତ ସ୍ୱାର୍ଥ' ଅପେକ୍ଷା ଅଧିକ ମହତ୍ୱପୂର୍ଣ୍ଣ ମନେ କରନ୍ତି; ଭଲ ଦିଗରେ ସାମାଜିକ ପରିବର୍ତ୍ତନ ହେବ ବୋଲି ସେମାନେ ମନରେ ଆଶା ବାନ୍ଧିଥାନ୍ତି । ଗାନ୍ଧି ଭଳି ଚରିତ୍ରର ପ୍ରକୃତ ମୂଲ୍ୟାୟନ ହେଲେ, ସେମାନେ କେବଳ ବାଟ ପାଇବେନି, ହୁଏତ ସାଙ୍ଗରେ 'ଏକାକୀ' ପଡ଼ିଯାଇଥିବାର ଡରରୁ ବି ମୁକୁଳି ପାରିବେ । ସ୍ରୋତର ପ୍ରତିକୂଳ ଦିଗରେ ଯିବା ଜନିତ ନିରାଶା ତାଙ୍କୁ ଖାଇଯିବ ନାହିଁ ।

ଏ' ତ ଗଲା ହାତଗଣତା କେତେଜଣ ନିଷ୍ଠାପର ବ୍ୟକ୍ତିଙ୍କ କଥା । ପୁଣି ଅନେକ ତଥାକଥିତ 'ନିଷ୍ଠାଶୂନ୍ୟ' ବ୍ୟକ୍ତି ମଧ୍ୟ ଅଛନ୍ତି, ଯାହାଙ୍କ ପାଇଁ ଗାନ୍ଧି ପରି ବ୍ୟକ୍ତିର (ହାଡ଼ମାଂସଧାରୀ ଜଣେ ଗୃହୀ ମଣିଷର !) ଚର୍ଚ୍ଚା କେବେ ଅପ୍ରାସଙ୍ଗିକ ହୋଇ ପାରେ । କାରଣ ତଥାକଥିତ 'ନିଷ୍ଠାପର' ବ୍ୟକ୍ତିଙ୍କୁ ଯେମିତି ଶହେ ପ୍ରତିଶତ 'ନିଷ୍ଠାପୂର୍ଣ୍ଣ' ବୋଲି ଦାବି କରାଯାଇ ନ ପାରେ, ତଥାକଥିତ 'ନିଷ୍ଠାଶୂନ୍ୟ' ବ୍ୟକ୍ତି

ମଧ୍ୟ ପୂର୍ଣ୍ଣତଃ 'ନିଷ୍ଠା ରହିତ' ହୋଇ ନ ପାରେ । ଉଚିତ ଅବସର ମିଳିଲେ ତା' ଭିତରେ ଥିବା 'ନିଷ୍ଠା'ର ସମ୍ଭାବନା ମଧ୍ୟ ତାକୁ 'ନିଷ୍ଠାପର' ଗୋଷ୍ଠୀକୁ ଆଣି ଦେଇପାରେ । ସଦାବେଳେ କେହି 'ଭଲ' ବା ସଦାବେଳେ କେହି 'ଖରାପ' ହୋଇ ନ ଥାଏ । ଅସଲରେ ପ୍ରାୟ ବ୍ୟକ୍ତି ନିରନ୍ତର ଏକ ଅର୍ନ୍ତଦ୍ୱନ୍ଦ୍ୱ ମଧ୍ୟ ଦେଇ ଗତି କରୁଥାଏ– 'ଭଲ' ଓ 'ଖରାପ'ର ଅର୍ନ୍ତଦ୍ୱନ୍ଦ୍ୱ, ସମାଜ ପାଇଁ 'ସଂପତ୍ତି' ବା 'ବୋଝ' ହେବାର ଅନ୍ତର୍ଦ୍ୱନ୍ଦ୍ୱ । ଆଉ କେହି ନ ଜାଣନ୍ତୁ ପଛେ, ନିଜ ଭିତରେ ସେ ଅହର୍ନିଶ ଅଭିମନ୍ୟୁ ସାଜି ମହାଭାରତ ଲଢୁଥାଏ । ସେହି ଆନ୍ତରିକ ସଙ୍କଟବେଳେ ଗାନ୍ଧି ପରି ଚରିତ୍ରର ଚର୍ଚ୍ଚା ତାକୁ ଅଦରକାରୀ ଓ ଅଲୋଡ଼ା ମନେ ହେବା କଥା ନୁହେଁ ।

୧୮୯୩ ମସିହାରେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକା ଗଲେ । ଫେରିଲେ ୧୯୧୫ ମସିହାରେ । ସେତେବେଳକୁ ତାଙ୍କୁ ୪୬ ବର୍ଷ । ମଧ୍ୟବୟସ୍କ ସେ । ଯେହେତୁ ଭାରତ ହିଁ ତାଙ୍କ କର୍ମସ୍ଥଳୀ ହେବ, ଦୀର୍ଘ ୨୩ ବର୍ଷର ଦକ୍ଷିଣ ଆଫ୍ରିକାର ରହଣି ତାଙ୍କ ପାଇଁ 'ଅଦରକାରୀ' ହେବା କଥା । ପୁଣି ଭାରତକୁ ଫେରିଲା ପରେ ମଧ୍ୟ ଦୀର୍ଘ ପାଞ୍ଚ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ସେ ସାମାଜିକ ବସ୍ତୁସ୍ଥିତିକୁ ଅନୁଧ୍ୟାନ ଓ ଅଧ୍ୟୟନ କରି ଦିନ କାଟିଛନ୍ତି । ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନ ଥିଲା ତାଙ୍କ ନେତୃତ୍ୱରେ ସଂଗଠିତ ହୋଇଥିବା ପ୍ରଥମ ଦେଶବ୍ୟାପୀ ଜନଆନ୍ଦୋଳନ । ତା'ପରେ ବି ଭାରତକୁ ସ୍ୱାଧୀନତା ମିଳିବା ପାଇଁ, ଅର୍ଥାତ୍ ଗାନ୍ଧୀଙ୍କୁ ସଫଳତା ମିଳିବା ପାଇଁ ଦୀର୍ଘ ୨୭ ବର୍ଷ ସମୟ ଲାଗିଛି । ସବୁଠାରୁ ବଡ଼ କଥା, ଏହି ପୂରା ସମୟକୁ ଜାତୀୟତାର କେବଳ ଜୁଆର ବୋଲି କେବେ କୁହାଯାଇ ନ ପାରେ । ୧୯୨୦ ରୁ ୧୯୨୨ ମସିହା ଭିତରେ ଯଦି ଅସହଯୋଗ ଆନ୍ଦୋଳନ ହେଲା, ଦେଶରେ ରାଷ୍ଟ୍ରୀୟତାର ଜୁଆର ଦେଖାଗଲା, ତା'ପରେ ଦୀର୍ଘ ଆଠ ବର୍ଷ ଧରି ଜାତୀୟତାର ରାଜନୀତିରେ ଭଟ୍ଟା ମଧ୍ୟ ଦେଖାଯାଇଛି । କଂଗ୍ରେସ ଦଳ ଭିତରେ ଗୋଷ୍ଠୀ କନ୍ଦଳ, ହିନ୍ଦୁ-ମୁସଲିମ୍‌ଙ୍କ ଭିତରେ ସାଂପ୍ରଦାୟିକ କଳହ, ଉପନିବେଶବାଦୀ ଇଂରେଜ ସରକାର ପକ୍ଷରୁ ରାଷ୍ଟ୍ରବାଦୀମାନଙ୍କୁ ଭାଗ ଭାଗ କରିବାର ଉଦ୍ୟମ– ସବୁଗୁଡ଼ିକ ସମସ୍ୟା ଦେଶ ପାଇଁ ପ୍ରତିବଦ୍ଧ ଜଣେ ବ୍ୟକ୍ତିକୁ ହତାଶ କରିବ, ଧୈର୍ଯ୍ୟଚ୍ୟୁତ କରିଦେବ ! ୧୯୩୦ ମସିହାର ଆଇନ ଅମାନ୍ୟ ଆନ୍ଦୋଳନ ପରେ ମଧ୍ୟ ସେହି ଏକା ରକମର ଭଟ୍ଟା ରାଜନୀତିରେ । ଏସବୁ ସତ୍ତ୍ୱେ ଗାନ୍ଧୀ କେବେ ଧୈର୍ଯ୍ୟଚ୍ୟୁତ ହୋଇ ନାହାନ୍ତି । ସ୍ୱାଧୀନତା ସଂଗ୍ରାମରୁ ଅବସର ନେଇ ନାହାନ୍ତି । ସେହି ଦୃଷ୍ଟିରୁ ଦେଖିଲେ ଗାନ୍ଧୀ ରାଜନୀତିକୁ ଧୈର୍ଯ୍ୟର ରାଜନୀତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆନ୍ଦୋଳନର ଅଲିଖିତ ଭାବେ ସର୍ବମୟକର୍ତ୍ତା ହେବା ସତ୍ତ୍ୱେ ବି ତାଙ୍କ ପାଖରେ ଯଦି ନିର୍ଲିପ୍ତ

ହେବାର ସକ୍ଷମତା ନ ଥାନ୍ତା, ଅଯଥା ଭାବପ୍ରବଣ ହୋଇଥାନ୍ତେ ସେ । ତେଣିକି ନିଶ୍ଚୟ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଥାନ୍ତା । ଘଣ୍ଟାରେ ଠିକ୍ ଦଶଟା ବାଜିବା ବେଳକୁ ନିଘୋଡ଼ ନିଦରେ ଶୋଇ ଯାଇ ପାରୁନଥାନ୍ତେ । ଏହି ଦୃଷ୍ଟିରୁ, ଆଜିର କମ୍ପ୍ୟୁଟର ଯୁଗରେ ଯେଉଁ ସମାଜକର୍ମୀ ତଡ଼ିତ ବେଗରେ ଅଳ୍ପକେ ସବୁକିଛି ପାଇଯିବା କଥା ଚିନ୍ତା କରନ୍ତି, ତାଙ୍କୁ ଗାନ୍ଧୀଙ୍କ ଠାରୁ ଧୈର୍ଯ୍ୟର ପାଠ ପଢ଼ିବା ବଡ଼ ଜରୁରୀ ।

ସେହି ଲମ୍ବା ଅବଧି ଭିତରେ ଗାନ୍ଧୀଙ୍କର ଧୈର୍ଯ୍ୟଚ୍ୟୁତି ନ ଘଟିବା ପଛରେ ଏକ ବଡ଼ କାରଣ ହେଲା ଯେ, ଗାନ୍ଧୀ କୌଣସି ସମୟକୁ 'ଅଦରକାରୀ' ମଣି ନାହାନ୍ତି । ବରଂ ପ୍ରତିଟି ମୁହୂର୍ତ୍ତର ଉଚିତ ଉପଯୋଗ କରିବାକୁ ପ୍ରୟାସ କରିଛନ୍ତି । ପ୍ରତିଟି ମୁହୂର୍ତ୍ତରୁ ଶିଖିବାକୁ ଚାହିଁଛନ୍ତି । ଦକ୍ଷିଣ ଆଫ୍ରିକାର ରହଣି କେବଳ ତାଙ୍କ ଉପନିବେଶବାଦୀ ଶତ୍ରୁକୁ ବୁଝିବାରେ ସାହାଯ୍ୟ କରିନି, ସାଙ୍ଗରେ ଯେଉଁମାନଙ୍କୁ ନେଇ ସେ ଶତ୍ରୁ ବିରୁଦ୍ଧରେ ଲଢ଼ିବେ, ସେହି ସହଯୋଦ୍ଧାମାନଙ୍କୁ ମଧ୍ୟ ପରଖିବାକୁ ଅବସର ଯୋଗାଇଛି । ଗାନ୍ଧୀ ଦୃଢ଼ ନିଶ୍ଚିତ ଯେ, ସୈନ୍ୟମାନଙ୍କୁ ନେଇ ସଂଗ୍ରାମ, ସେନାପତି ତ ଏକ ସଂଯୋଜକ ମାତ୍ର । ସେ କ୍ଷେତ୍ରରେ ଗଣଆନ୍ଦୋଳନର ସହଭାଗୀମାନଙ୍କ ମାନସିକ ପ୍ରସ୍ତୁତି ରିହବା କଥା ଶତ୍ରୁକୁ ନେଇ, ଶତ୍ରୁ ବିରୁଦ୍ଧରେ ଲଢ଼ିବା ପାଇଁ ଆବଶ୍ୟକ ହେଉଥିବା 'ତ୍ୟାଗ'ର ପରିମାଣକୁ ନେଇ । ଗାନ୍ଧୀ ଲୋକଙ୍କୁ ବୁଝିବାକୁ ଚେଷ୍ଟା କରୁଥିଲେ ବୋଲି ଉପନିବେଶବାଦ ବିରୋଧୀ ଆନ୍ଦୋଳନରେ ଯୋଗ ଦେଇଥିବା ସାଧାରଣ କର୍ମୀ ଜେଲ୍ ଯିବା, ପୋଲିସ୍ ହାତରୁ ଲାଠି ଗୁଳି ଖାଇବା ଭଳି ନିଜ ସାମୟିକ ଦୁଃସ୍ଥିତି ପାଇଁ କେବେ ଗାନ୍ଧୀଙ୍କୁ ଦାୟୀ କରି ନାହାନ୍ତି । ଅନ୍ୟ ଅର୍ଥରେ କହିଲେ, ଗାନ୍ଧୀ କେବେ କାହା ଉପରେ ଜାତୀୟତା ଆନ୍ଦୋଳନ ବା କୌଣସି ନିର୍ଦ୍ଦିଷ୍ଟ ଜୀବନଶୈଳୀକୁ ଲଦି ଦେଇ ନାହାନ୍ତି, ବରଂ ଲୋକ ତାକୁ ନିଜର ଦାୟିତ୍ୱ ରୂପେ ନିଜେ ମୁଣ୍ଡେଇଛନ୍ତି । ଗାନ୍ଧୀ ଯାହା ବୁଝିଛନ୍ତି, ଅନ୍ୟକୁ ବୁଝେଇବାକୁ ପ୍ରୟାସ କରିଛନ୍ତି । ସାଂଗରେ ଅନ୍ୟଠାରୁ ବୁଝିବାକୁ ମଧ୍ୟ ଅନେଇ ରହିଛନ୍ତି । ଫଳତଃ, ଲୋକଙ୍କ ଭିତରେ ସ୍ୱତଃ ସୃଷ୍ଟି ହୋଇଥିବା ଦାୟିତ୍ୱବୋଧ ଗାନ୍ଧି ରାଜନୀତିକୁ ସଫଳ କରିଛି, ଗାନ୍ଧିଙ୍କୁ ସ୍ମରଣୀୟ କରି ରଖିଛି ।

୧୯୧୫ ମସିହାରେ ଗାନ୍ଧୀ ଯେତେବେଳେ ପ୍ରତ୍ୟକ୍ଷ ରୂପେ ଭାରତୀୟ ରାଜନୀତିରେ ଯୋଗ ଦେଲେ, ଜାତୀୟ କଂଗ୍ରେସରେ ସେତେବେଳେ ତୀବ୍ର ଗୋଷ୍ଠୀ ବିବାଦ । ଗୋଟିଏ ନରମପନ୍ଥୀଙ୍କ ଗୋଷ୍ଠୀ, ଅନ୍ୟଟି ଗରମପନ୍ଥୀଙ୍କର । ଉଭୟ ଗୋଷ୍ଠୀର ଦେଶ ପ୍ରତି ତ୍ୟାଗ କିମ୍ବା ପ୍ରତିବଦ୍ଧତା ଊଣା ନୁହେଁ । ଉଭୟେ ସମପରିମାଣରେ ଇଂରେଜ ଉପନିବେଶବାଦର ବିରୋଧୀ । ମାତ୍ର ଉଭୟଙ୍କ କାର୍ଯ୍ୟପନ୍ଥା ଅଲଗା

ଅଲଗା । ତେଣୁ ଗୋଷ୍ଠୀ ବିବାଦ । ବିବାଦର ମାତ୍ରା ଏତେ ଅଧିକ ଯେ, ୧୯୦୭ ମସିହାରେ ସୁରାଟରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନ ମଞ୍ଚରେ ଦଳ ଦୁଇ ଭାଗ ହେଲା । କଂଗ୍ରେସର 'ଅଧୋଃପତନ' ପାଇଁ ଗୋଟିଏ ଗୋଷ୍ଠୀ ଅନ୍ୟକୁ ଦାୟୀ କଲେ ।

ଏଭଳି ପରିସ୍ଥିତିରେ ଗାନ୍ଧୀ ଉଭୟ ଗୋଷ୍ଠୀରୁ ଏବଂ ତାଙ୍କ ବିବାଦରୁ କେବଳ ଊର୍ଦ୍ଧ୍ୱରେ ରହିଲେ ନାହିଁ, ବରଂ ଦଳର ଏକତା ପାଇଁ ମଧ୍ୟ ଚେଷ୍ଟା କଲେ । ୧୯୧୬ ମସିହାରେ କଂଗ୍ରେସ ପୁଣି ଏକୀକୃତ ହେଲା । ସାଙ୍ଗରେ 'ମୁସଲିମ୍ ଲିଗ୍' ସହ ମଧ୍ୟ କଂଗ୍ରେସର ଏକତା ହେଲା । ଉଭୟେ ମିଶି କାର୍ଯ୍ୟକ୍ରମମାନ ତିଆରିଲେ । ଗାନ୍ଧୀଙ୍କର ଦୀକ୍ଷାଗୁରୁ ଗୋପାଳକୃଷ୍ଣ ଗୋଖଲେ ଥିଲେ ନରମପନ୍ଥୀ । ଅନ୍ୟ ପକ୍ଷରେ ଗାନ୍ଧି ନେତୃତ୍ୱରେ ପରିଚାଳିତ ପ୍ରଥମ ସର୍ବଭାରତୀୟ ଗଣ ସଂଗ୍ରାମ (ଅସହଯୋଗ ଆନ୍ଦୋଳନ) ନିମନ୍ତେ ପାଣ୍ଠି ସଂଗୃହୀତ ହେଲା ପ୍ରମୁଖ ଗରମପନ୍ଥୀ ବାଳଗଙ୍ଗାଧର ତିଳକଙ୍କ ନାଁରେ, 'ତିଳକ ପାଣ୍ଠୀ' ରୂପରେ ।[1]

ଖାଲି ନରମପନ୍ଥୀ ଓ ଗରମପନ୍ଥୀ କାହିଁକି, ହିନ୍ଦୁ-ମୁସଲିମ୍ ଏକତା ଥିଲା ଅସହଯୋଗ ଆନ୍ଦୋଳନର ମୁଖ୍ୟ ସ୍ଲୋଗାନ୍ । ପରବର୍ତ୍ତୀ ସମୟରେ, ଆଇନ୍ ଅମାନ୍ୟ ଆନ୍ଦୋଳନର ଅବ୍ୟବହିତ ପୂର୍ବରୁ କଂଗ୍ରେସ ଭିତରେ ପୁରୁଣା ପିଢ଼ି ଓ ଯୁବ ଗୋଷ୍ଠୀ ମଧ୍ୟରେ ଯେଉଁ ବିବାଦ ସୃଷ୍ଟି ହେଲା ତାକୁ ଦୂର କଲେ ଗାନ୍ଧିଜୀ । ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ପୁରୁଣା ପିଢ଼ି ଚାହୁଁଥିଲେ, କଂଗ୍ରେସ ଇଂରେଜମାନଙ୍କଠାରୁ 'ଡୋମିନିଅନ୍' ପାହ୍ୟା କେବଳ ଦାବି କରୁ । ଅନ୍ୟ ପକ୍ଷରେ ଜବାହରଲାଲ ଓ ସୁଭାଷ ବୋଷଙ୍କ ନେତୃତ୍ୱରେ ଯୁବ ଗୋଷ୍ଠୀର ଦାବି ଥିଲା 'ପୂର୍ଣ୍ଣ ସ୍ୱାଧୀନତା' । ପୁରୁଣା ପିଢ଼ି ମତରେ, ପୂର୍ଣ୍ଣ ସ୍ୱାଧୀନତା ଦାବି କରିବାର ବେଳ ଆସିନି । ଅନ୍ୟ ପକ୍ଷରେ ଯୁବ ଗୋଷ୍ଠୀ ଦୃଢ଼ ନିଶ୍ଚିତ ଯେ, ପୁରୁଣା ପିଢ଼ି କଂଗ୍ରେସକୁ ଆବଶ୍ୟକ ମାତ୍ରାରେ ଆଗକୁ ବଢ଼ିବାକୁ ଦେଉନାହାନ୍ତି ।

ଉଭୟ ଗୋଷ୍ଠୀ ଭିତରେ ବିବାଦକୁ ଶେଷ କରିବାକୁ ଯାଇ ଗାନ୍ଧି ପ୍ରସ୍ତାବ ଦେଲେ ଯେ, ପ୍ରଥମେ ଡୋମିନିଅନ ମର୍ଯ୍ୟାଦା ଦାବି କରାଯାଉ । 'ଡୋମିନିଅନ୍' ମର୍ଯ୍ୟାଦା ଦାବି କରିବାର ବର୍ଷକ ମଧ୍ୟରେ ଯଦି ଉକ୍ତ ଦାବି ପୂରଣ ନ ହୁଏ, ଯୁବଗୋଷ୍ଠୀର ମତ ଅନୁଯାୟୀ କଂଗ୍ରେସର ଲକ୍ଷ୍ୟ ହେବ 'ପୂର୍ଣ୍ଣ ସ୍ୱରାଜ' । ଏ ଯେଉଁ ମଝି ରାସ୍ତା, ତା ଯୋଗୁଁ କଂଗ୍ରେସ ପୁଣି ଖଣ୍ଡ ଖଣ୍ଡ ହେବାରୁ ରକ୍ଷା ପାଇଲା, ପୂର୍ଣ୍ଣ ସ୍ୱାଧୀନତାକୁ ଲକ୍ଷ୍ୟ ରଖି ଆରମ୍ଭ ହେଲା ଲବଣ ସତ୍ୟାଗ୍ରହ ଓ ଆଇନ୍ ଅମାନ୍ୟ ଆନ୍ଦୋଳନ ।

ଯା' ପରେ ମଧ୍ୟ, ସାମ୍ୟବାଦୀ-ସମାଜବାଦୀଙ୍କଠାରୁ ଆରମ୍ଭ କରି ଦକ୍ଷିଣପନ୍ଥୀଙ୍କ ଯାଏ କଂଗ୍ରେସକୁ ସବୁ ରାଷ୍ଟ୍ରବାଦୀଙ୍କର ଏକ ମିଳିତ ମଞ୍ଚ କରିବା ପାଇଁ ବରାବର ଯେଉଁ ଉଦ୍ୟମ ହୋଇଛି, ତାହାରି ମୂଳରେ ରହିଛନ୍ତି ଗାନ୍ଧି । ମୋଟ କଥା ହେଲା, ଗାନ୍ଧି ଜାଣିଥିଲେ ଯେ, ଆନ୍ତରିକ କଳହ ଶତ୍ରୁକୁ ଅଧିକ ଶକ୍ତିଶାଳୀ ଏବଂ ନିଜକୁ ଅଧିକ ଦୁର୍ବଳ କରିଦିଏ । ତେଣୁ, ସେ ଦେଶ କ୍ଷେତ୍ରରେ ହେଉ ବା ପରିବାର କ୍ଷେତ୍ରରେ ହେଉ ଆନ୍ତରିକ କଳହରୁ ବ୍ୟକ୍ତିକୁ ଊର୍ଦ୍ଧ୍ୱକୁ ଉଠିବାକୁ ପଡ଼ିବ, ଅନ୍ୟଥା ସମୂହ ସ୍ୱାର୍ଥ କେବେ ପ୍ରାଥମିକତା ପାଇବନି । ଆଜି, ଦେଶର ବଡ଼ ବଡ଼ ନେତା ଯେତେବେଳେ ନିଜ ଦଳ ଯାକେ ବି ନୁହେଁ, ଦଳର କୌଣସି ଏକ କ୍ଷୁଦ୍ର ଗୋଷ୍ଠୀ ଭିତରେ ହିଁ ସୀମିତ ରହିଯାନ୍ତି, ତାଙ୍କ ରାଷ୍ଟ୍ର ପ୍ରୀତି ଲୋକଲୋଚନରେ ସନ୍ଦେହାସ୍ପଦ ହୁଏ । ନିଜ ଦଳର ଏକତା ପ୍ରତି ଯିଏ ପ୍ରତିବଦ୍ଧ ନୁହେଁ, ରାଷ୍ଟ୍ରର ଏକତା ବା ତା' ଦେଇ ସମ୍ଭବ ହେବ କେମିତି ?

୧୯୨୪ ମସିହାର ବେଳଗାଁଓରେ ଅନୁଷ୍ଠିତ କଂଗ୍ରେସକୁ ବାଦ୍ ଦେଲେ ଗାନ୍ଧୀ କେବେ କୌଣସି ଦଳୀୟ ପଦବଦବୀ ଗ୍ରହଣ କରି ନାହାନ୍ତି । ଅସହଯୋଗ ଆନ୍ଦୋଳନ ପରେ କଂଗ୍ରେସ ଦଳରେ ଯେଉଁ ଭଟ୍ଟା ପଡ଼ିଲା, କର୍ମୀମାନଙ୍କୁ ଉତ୍ସାହିତ କରିବା ଲକ୍ଷ୍ୟରେ ଜେଲ୍‌ରୁ ମୁକୁଳି ସେ ସେହି ଥରେ ମାତ୍ର କଂଗ୍ରେସର ସଭାପତି ହେଲେ । ଅନ୍ୟଥା, କ୍ଷମତା ଓ ପଦପଦବୀରୁ ଦୂରରେ ରହିବା ଥିଲା ଗାନ୍ଧୀ ରାଜନୀତିର ମୂଳ ତତ୍ତ୍ୱ । ୧୯୩୦ ଦଶକର ଉତ୍ତରାର୍ଦ୍ଧରୁ ସେ କଂଗ୍ରେସର ପ୍ରାଥମିକ ସଭ୍ୟ ପଦରୁ ମଧ୍ୟ ଓହରି ଗଲେ । ତା' ସତ୍ତ୍ୱେ କଂଗ୍ରେସ ଓ କଂଗ୍ରେସ ବାହାରେ ତାଙ୍କ ରାଜନୈତିକ ମହତ୍ତ୍ୱ କେବେ ଊଣା ହୋଇନାହିଁ । ବରଂ ବେଳୁବେଳ ବଢ଼ିଛି । ଯଦି ଗାନ୍ଧୀ ଆଜି ବି ଆମ ସମୟରେ ଜଣେ ଅତି ଶୀର୍ଷ ସ୍ଥାନୀୟ ନେତା, ତା' ପଛରେ ବଡ଼ କାରଣ ହେଲା ତାଙ୍କର ସେହି ତ୍ୟାଗଭାବ, ପଦପଦବୀରୁ ଦୂରରେ ରହିବାର ମନୋଭାବ । ପଦପଦବୀରୁ ଊର୍ଦ୍ଧ୍ୱରେ ରହିବା ଯୋଗୁଁ ତାଙ୍କ କର୍ତ୍ତୃତ୍ୱ ବଢ଼ିଛି ପଛେ, କମି ନାହିଁ । ଏହି ପରିପ୍ରେକ୍ଷୀରେ, ପଦପଦବୀକୁ ରାଜନୈତିକ ଓ ସାମାଜିକ ସଫଳତାର ଚାବିକାଠି ବୋଲି ଧାରଣା କରି ରଖି ଥିବା ବ୍ୟକ୍ତିମାନେ ପରଖିବା ଉଚିତ- ସେମାନେ ଭୁଲ୍, ନା ଗାନ୍ଧୀ ଠିକ୍ !

ଏକଥା ଅନସ୍ୱୀକାର୍ଯ୍ୟ ଯେ ଗାନ୍ଧୀଙ୍କର ଜୀବନ ଓ ଦୃଷ୍ଟି ପ୍ରତି କ୍ଷେତ୍ରରେ ଆଜି ପ୍ରାସଙ୍ଗିକ 'ଏ' ତ ଦୁଇ ତିନିଟି ସାନ ଉଦାହରଣ ମାତ୍ର । ତାଙ୍କ ଜୀବନ ଓ ଦୃଷ୍ଟିକୁ ଖୋଲି ଦେଇଛନ୍ତି ସେ– ଲେଖା ମାଧ୍ୟମରେ କଥା ମାଧ୍ୟମରେ, ପୁଣି କାର୍ଯ୍ୟ ମାଧ୍ୟମରେ । ତାଙ୍କୁ ଜାଣିବାକୁ, ବୁଝିବାକୁ ହେଲେ ଆମକୁ ବଡ଼ ଗବେଷକ ହେବାର

କିଛି ଆବଶ୍ୟକତା ନାହିଁ । ସବୁ କଥାରେ 'ଗାନ୍ଧୀ ନାମ' ନେବାର ବି କିଛି ଦରକାର ନାହିଁ । ସାମାନ୍ୟ ସାଧାରଣ ବୁଦ୍ଧି ବଳରେ ତାଙ୍କୁ ବୁଝିହେବ, ଜାଣିହେବ । ହେଲେ ତା' ପାଇଁ ପ୍ରଥମ ସର୍ତ୍ତ ହେବ, 'ବହୁଜନ ହିତାୟ' । କ୍ଷମତା ଓ ପଦପଦବୀ ତ ଦୂରର କଥା, ଏପରି କି ସାମୟିକ ପ୍ରସିଦ୍ଧି କିମ୍ବା 'ବଡ଼' ବୋଲି ପରିଗଣିତ ହେବା ଲୋଭରେ ସୁଦ୍ଧା ନା ଗାନ୍ଧିଙ୍କୁ ଅନୁଭବ କରିହେବ, ନା ତାଙ୍କଠାରୁ ପ୍ରେରଣା ପାଇହେବ । ସେହି କାରଣରୁ ଆଗାମୀ ଦିନରେ ଭାରତୀୟ ସମାଜ ପାଇଁ ଗାନ୍ଧି ଅଧିକରୁ ଅଧିକ 'ଅପହଞ୍ଚ', 'ଆକାଶ କୁସୁମ' ମନେ ହେବେ, କାରଣ ଆଜି ଆମେ ଧରି ନିଅନ୍ତି ଯେ, 'ବହୁଜନ ହିତାୟ' କେବଳ କେତେଜଣ ରାଜନେତାଙ୍କର କାମ । ସେମାନେ ହିଁ ପୂରା ସମାଜକୁ 'ଠିକ୍' ବା 'ଭୁଲ୍' ବାଟରେ ନିଅନ୍ତି । ବାକୀମାନଙ୍କର, ବିଶେଷ କରି ନିଜର, ସେଥିରେ କିଛି କରିବାର ନ ଥାଏ । ଏହା ଅସହାୟ ଭାବ ନୁହେଁ ବରଂ ପଳାୟନ ଭାବ । ନିଜେ କୌଣସି ଦାୟିତ୍ୱ ନ ମୁଣ୍ଡାଇବାର ଭାବ । ବିରୋଧୀ ଦଳ ଭାବନ୍ତି ସବୁ ଦାୟିତ୍ୱ ତଥା ଦୋଷ ସରକାରଙ୍କର, ଶିକ୍ଷକ ଦୃଷ୍ଟିରେ ଶିକ୍ଷାର ଅଧୋଃପତନ ପାଇଁ କେବଳ ପ୍ରଧାନଶିକ୍ଷକ ଦାୟୀ, ପରିବାରଜନଙ୍କ ମତରେ କେବଳ ଗୃହକର୍ତ୍ତା ଦାୟୀ ପରିବାରର ଭଲ ମନ୍ଦ ପାଇଁ ! ଫଳରେ ଭାର ବୋହିଥିବା ଲୋକଟି ଭାରଟିକୁ 'ଆତ୍ମସାତ୍' କରିବାଟାକୁ ନିଜର 'ହକ୍' ମଣେ । ନିଜେ କୌଣସି କାଦୁଅରେ ନ ପଡ଼ିବାର ଯେଉଁ ଆତ୍ମତୁଷ୍ଟି ବୋଧହୁଏ ତହିଁରୁ ବଳି ଗାନ୍ଧୀ ବିରୋଧୀ ବିଚାର ଆଉ କିଛି ହୋଇ ନ ପାରେ । ଗାନ୍ଧୀ ଓ ଗାନ୍ଧୀ ପିଢ଼ିର ଲୋକ ଯେତେ ବ୍ରିଟିଶ୍ ବିରୋଧୀ ଥିଲେ ତା'ଠାରୁ ଅଧିକ ବିରୋଧୀ ଥିଲେ ସେଭଳି ଆତ୍ମକୈନ୍ଦ୍ରିକତାର । ଏହି କାରଣରୁ ଆଗାମୀ ଦିନରେ ଗାନ୍ଧୀ କଚେରି ପ୍ରକୋଷ୍ଠରୁ ଆରମ୍ଭ କରି ପାଞ୍ଚଶହ ଟଙ୍କିଆ ନୋଟ୍ ଯାଏଁ ସବୁଠି ବିଦ୍ୟମାନ ରହିପାରନ୍ତି, ମାତ୍ର ତା ସତ୍ତ୍ୱେ ସେ ଆମକୁ ପ୍ରେରଣା ଦେବାରେ ଅସମର୍ଥ ହେବେ – ଏକଥା ନିଶ୍ଚିତ ।

❑❑

## ସଂଘୀୟ ଗାନ୍ଧୀ : ଗୋପବନ୍ଧୁ ଦାସ

୧୯୧୫ ମସିହାରେ ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ପ୍ରତ୍ୟାବର୍ତ୍ତନ କରିବାର ଅଳ୍ପ ସମୟ ଭିତରେ ଦେଶର ଜନମାନସରେ ଏକ ସ୍ୱତନ୍ତ୍ର ସ୍ଥାନ ଆବୋରି ପାରିଲେ । ତାଙ୍କ ଜନପ୍ରିୟତାର ଅନ୍ୟତମ କାରଣ ହେଲେ ପ୍ରାନ୍ତୀୟ ଓ ଆଞ୍ଚଳିକ ସ୍ତରରେ ସାମାଜିକ କାର୍ଯ୍ୟ କରୁଥିବା ଅନେକ ଅନେକ 'ଗାନ୍ଧୀ' । ସେମାନଙ୍କ ନିଷ୍ଠାପର ସମାଜ କାମ ସର୍ବଥା ମୂଲ୍ୟଭିତ୍ତିକ ରାଜନୀତି ସକାଶେ ଯଥେଷ୍ଟ ଆଧାର ଯୋଗାଇଲା । ତାହାପୁଣି ପରବର୍ତ୍ତୀ ସମୟରେ ଗାନ୍ଧୀଙ୍କ ସତ୍ୟାଗ୍ରହ ରାଜନୀତି ନିମନ୍ତେ ପଥ ପ୍ରଶସ୍ତ କଲା । ସେହି ପ୍ରାନ୍ତୀୟ ସ୍ତରର ଅନେକ 'ଗାନ୍ଧୀଙ୍କ' ବିନା ମହାତ୍ମା ଗାନ୍ଧି ଭାରତୀୟ ରାଜନୀତିର ଛାମୁଆ ନେତା ହୋଇ ପାରିନଥାନ୍ତେ— ଏହା ନିଶ୍ଚିତ କଥା । ସେମିତି ଜଣେ ସଂଘୀୟ, ଆଞ୍ଚଳିକ, ପ୍ରାନ୍ତୀୟ ଓ ସ୍ଥାନୀୟ ଗାନ୍ଧୀ ଥିଲେ ଓଡ଼ିଶାର 'ଦାସେ ଆପଣେ' 'ଉତ୍କଳମଣି ଗୋପବନ୍ଧୁ ଦାସ । ସ୍ୱାଧୀନୋତ୍ତର ଭାରତରେ ଆଜି ଯେତେବେଳେ ମାନବୀୟ ମୂଲ୍ୟବୋଧ ଭିତ୍ତିକ ରାଜନୀତି ଏକ ସଂକଟାପନ୍ନ ସ୍ଥିତିରେ, ସେତେବେଳେ ଗୋପବନ୍ଧୁଙ୍କ ପରି ଜଣେ ଜନନାୟକ ଏବେକାର ତଥା ଆଗାମୀ ପିଢ଼ି ପାଇଁ ପ୍ରେରଣାର ଉତ୍ସ ସଦୃଶ !

ଗୋପବନ୍ଧୁ ଦାସ (୧୮୭୭-୧୯୨୮)ଙ୍କ ଜନ୍ମ ଏକ ସାଧାରଣ ପରିବାରରେ । ବୟସରେ ମହାତ୍ମା ଗାନ୍ଧିଙ୍କ ଠାରୁ ମାତ୍ର ଆଠବର୍ଷ ସାନ ! ପରିବାରର ଆର୍ଥିକ ଦୁରାବସ୍ଥା ସତ୍ତ୍ୱେ କଠିନ ପରିଶ୍ରମ ଓ ଅଧ୍ୟବସାୟ ବଳରେ ସେ ରେଭେନ୍ସାରୁ ବି.ଏ. ଓ କଲିକତା ବିଶ୍ୱବିଦ୍ୟାଳୟରୁ ଆଇନ୍ ଡିଗ୍ରୀ ହାସଲ କରିପାରିଥିଲେ । ଗାନ୍ଧିଙ୍କ ପରି ସେ ଧନାଢ଼୍ୟ 'ଦେବାନ'ର ପୁଅ ନଥିଲେ । ନିଜ ସମୟରେ ଅନ୍ୟ ନରମପନ୍ଥୀ ରାଷ୍ଟ୍ରବାଦୀଙ୍କ ପରି ଗୋପବନ୍ଧୁ ଶିକ୍ଷାର ପ୍ରସାରକୁ ସାମାଜିକ ପରିବର୍ତ୍ତନ ଓ ଜାତୀୟ ଉନ୍ନତି ସକାଶେ ଏକ ପ୍ରମୁଖ ମାର୍ଗ ବୋଲି ବାଛି ନେଇଥିଲେ । ଫଳରେ ଓଡ଼ିଶାରେ ଶିକ୍ଷା ପରିବେଷଣ ହେଲା ତାଙ୍କ ଜୀବନର ବ୍ରତ । ଏହି କାମରେ ତାଙ୍କ

ଅନ୍ୟ ସହଯୋଗୀ ଥିଲେ ପଞ୍ଚସଖା ନାମରେ ପରିଚିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ହରିହର ଦାସ ଓ କୃପାସିନ୍ଧୁ ମିଶ୍ର । ସଭିଏଁ ମିଶି ବୁଲି ବୁଲି ପାଣ୍ଠୀ ସଂଗ୍ରହ କଲେ । ସ୍ଥାପିତ ହେଲା ସତ୍ୟବାଦୀ ବନବିଦ୍ୟାଳୟ । ସମସ୍ତେ ଥିଲେ ଉଚ୍ଚ ଶିକ୍ଷିତ । କେହି ଧନାଢ୍ୟ ନଥିଲେ । ତଥାପି ଉତ୍ସର୍ଗୀକୃତ ସମାଜକାମ ନିମନ୍ତେ ସେମାନଙ୍କ ନିଷ୍ପତ୍ତି ସମସାମୟିକ ଭାରତୀୟ ରାଜନୀତିର ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି । ଦ୍ୱିତୀୟତଃ ଗୋପବନ୍ଧୁ, ପଞ୍ଚସଖା ଓ ସତ୍ୟବାଦୀ ମଧ୍ୟରେ ଯେଉଁ ପରିପୂରକତା, ସେଥିରେ ଶେଷ ଯାଏଁ କେବେ ଫାଙ୍କ ପଡ଼ି ନଥିଲା । ସମାଜକାମ ନିମନ୍ତେ ବୈରଭାବହୀନ ଏଭଳି ନିବିଡ଼ ଗୋଷ୍ଠୀ ମନୋଭାବ କେବଳ ବିଂଶ ଶତାବ୍ଦୀର ଆରମ୍ଭ ଦଶକ ନୁହେଁ, ଆଜି ସତ୍ୟବାଦୀ ଆରମ୍ଭ ହେବାର ଶହେ ବର୍ଷ ପରେ ମଧ ବିରଳ କହିଲେ ଚଳିବ !

ସତ୍ୟବାଦୀର ଆଧାର ଥିଲା ସତ୍ୟନିଷ୍ଠା । ଜାତୀୟ ରାଜନୀତିକୁ ସତ୍ୟ-ଆଧାର-ଭିତ୍ତିକ ତଥା ଜନାଭିମୁଖୀ କରିବା ନିମନ୍ତେ ଏହା ଥିଲା ଏକ ସ୍ଥାନୀୟ ପ୍ରୟାସ । କେବଳ ଓଡ଼ିଶା କାହିଁକି ସମଗ୍ର ସମସାମୟିକ ଭାରତ ରାଜନୀତିରେ ଏହାକୁ ଏକ ମନୋଜ୍ଞ କଳ୍ପନା ରୂପେ ଦେଖା ଯାଇପାରେ । ମହାତ୍ମା ଗାନ୍ଧିଙ୍କ ସାବରମତି ଆଶ୍ରମ ପ୍ରତିଷ୍ଠାର ଆଠ ବର୍ଷ ପୂର୍ବରୁ ୧୯୦୯ ମସିହାରେ ଗ୍ରାମୀଣ ପରିବେଶରେ ପ୍ରତିଷ୍ଠିତ 'ସତ୍ୟବାଦୀ'ର ପରିଚୟ କେବଳ ଏକ ବିକଳ୍ପ ଶିକ୍ଷା ପରିବେଷଣ ନିମତେ ପ୍ରୟାସ ଅଥବା ମୁକ୍ତ ବିଦ୍ୟାଳୟ ରୂପରେ ନୁହେଁ, ତା ସହିତ ବିଦ୍ୟାଳୟ ସହ ସଂପୃକ୍ତ ବିଦ୍ୟାର୍ଥୀ ଓ ଶିକ୍ଷକଙ୍କୁ ଜାତୀୟତାରେ ଉଦ୍‌ବୁଦ୍ଧ କରୁଥିବା ଏକ ପ୍ରଶିକ୍ଷଣ କେନ୍ଦ୍ର ଭାବେ ମଧ୍ୟ ତାକୁ ଦେଖାଯାଇପାରେ । ତା'ଛଡ଼ା, ଆଞ୍ଚଳିକ ଓଡ଼ିଆ ସାମ୍ବାଦିକତାର ଏକ ଉତ୍‌ଥାନ ସ୍ଥଳୀ ('ସମାଜ' ଓ 'ସତ୍ୟବାଦୀ' ପତ୍ରିକାର ପ୍ରକାଶନ ସ୍ଥଳ) ଏବଂ ବନ୍ୟା ବିପତ୍ତି ବେଳର ଏକ ପ୍ରମୁଖ ରିଲିଫ୍ କେନ୍ଦ୍ର ରୂପେ ମଧ୍ୟ ସତ୍ୟବାଦୀକୁ ବିବେଚନା କରାଯାଇପାରେ । ପାଣ୍ଠୀ ସଂଗ୍ରହ କରିବା ତଥା ଶିକ୍ଷା, ପରିବେଷଣ ବ୍ୟତୀତ ସତ୍ୟବାଦୀର ବ୍ରାହ୍ମଣ ଶିକ୍ଷକ ଜମି ହଳ କରୁଥିଲେ, ନିଶ ରଖୁଥିଲେ । ତତ୍କାଳୀନ ବ୍ରାହ୍ମଣ ଶାସନର ରୁଢ଼ିବାଦୀତା ପରିପ୍ରେକ୍ଷୀରେ ଏସବୁ ପଦକ୍ଷେପକୁ ଗୋଟାଏ ଗୋଟାଏ ବିପ୍ଳବାତ୍ମକ କାମ ରୂପେ ଦେଖାଯାଇ ପାରେ । ସତ୍ୟବାଦୀର ଏକ ମୌଳିକ ଚରିତ୍ର ଥିଲା ତାର ଦରମା ବ୍ୟବସ୍ଥା । ଅନେକ ଶିକ୍ଷକ ପଦବୀ ଆଧାରରେ ଦରମା ନ ନେଇ ପାରିବାରିକ ଆବଶ୍ୟକତା ଆଧାରରେ ଦରମା ନେଉଥିଲେ । ଅର୍ଥାତ୍ ଗୋଦାବରୀଶଙ୍କ ପରିବାର ବଡ଼, ତେଣୁ ତାଙ୍କୁ

ହେଡ଼ମାଷ୍ଟର ନୀଳକଣ୍ଠ ଦାସଙ୍କ ଅପେକ୍ଷା ଦରମା ବେଶି ମିଳିବ । ଏହା ସତ୍ୟବାଦୀକୁ ମାର୍କ୍ସବାଦୀ ଭାଷାରେ ଏକ 'କମ୍ୟୁନ୍' ବା 'ସମୂଦାୟର ମାନ୍ୟତା' ଦିଏ । ମୋଟ ଉପରେ କହିଲେ ମହାତ୍ମା ଗାନ୍ଧି ଓ ଗାନ୍ଧି ପ୍ରସାରିତ ଚିନ୍ତନ 'ସତ୍ୟାଗ୍ରହ' ଭାରତଭୂମିରେ ଚେର ନେବା ଆଗରୁ ଗୋପବନ୍ଧୁ ଓ ସତ୍ୟବାଦୀ କର୍ମମୁଖର ହୋଇ ସାରିଥିଲେ । ତେଣୁ ଗୋପବନ୍ଧୁ ଦାସ ଓ ସତ୍ୟବାଦୀ ଆଶ୍ରମକୁ ଗାନ୍ଧି ଓ ସତ୍ୟାଗ୍ରହର ପୂର୍ବସୂରୀ ରୂପେ ଦେଖାଯାଇପାରେ ।

ଗୋପବନ୍ଧୁଙ୍କ ପ୍ରତିକଣରେ ଭରି ରହିଥିଲା ମହାଭାରତୀୟ ଜାତୀୟତାର ଉଚ୍ଛ୍ୱାସ । ସାଂଗରେ ଓଡ଼ିଆ ସମଜା ଓ ସଂସ୍କୃତି ପାଇଁ ତାଙ୍କର ପ୍ରେମ କେବେ ଊଣା ନଥିଲା । ୧୯୨୦ ମସିହାରେ ଜାତୀୟ କଂଗ୍ରେସର ଶାଖା ସ୍ଥାପନ ଓ ଅସହଯୋଗ ଆନ୍ଦୋଳନର ନେତୃତ୍ୱ ଗୋପବନ୍ଧୁଙ୍କ ଜୀବନର ଗୋଟାଏ ଗୋଟାଏ ବିଶିଷ୍ଟ କୃତି । ତାଙ୍କରି ଉଦ୍ୟମରେ ସ୍ୱତନ୍ତ୍ର ଓଡ଼ିଆ ଭାଷା ଓ ସଂସ୍କୃତି ଆନ୍ଦୋଳନ ଜାତୀୟ କଂଗ୍ରେସର ଅଂଶବିଶେଷ ହେଲା । ଅନ୍ୟଥା ଓଡ଼ିଆ ଆନ୍ଦୋଳନ ଓ ଜାତୀୟ କଂଗ୍ରେସ ଦୁଇଟି ସମାନ୍ତରାଳ ରେଖାରେ ଚାଲିଥିଲେ ଏବଂ ପ୍ରତ୍ୟକ୍ଷ ରୂପେ ଯଥେଷ୍ଟ ମାତ୍ରାରେ ଗୋଟାଏ ଅପରର ପରିପୂରକ ହୋଇପାରୁନଥିଲେ । ଓଡ଼ିଆ ଆନ୍ଦୋଳନକୁ ଜାତୀୟ କଂଗ୍ରେସରେ ବିଲୀନ କରିବା ପ୍ରୟାସରେ ସେ କେବଳ ଆନ୍ଦୋଳନର ନେତୃତ୍ୱରେ ରହିଥିବା ରାଜା ଜମିଦାର ଗୋଷ୍ଠୀର ତୀବ୍ର ବିରୋଧ କଲେ ତାହା ନୁହେଁ, ବରଂ ତା ସହିତ ଯୁକ୍ତି ବାଢ଼ିଲେ ଯେ ପ୍ରକୃତ ପ୍ରାଦେଶିକତା ଓ ରାଷ୍ଟ୍ରୀୟତା ମଧ୍ୟରେ ଅନ୍ତର୍ବିରୋଧ ନାହିଁ । ଉଭୟେ ଉଭୟଙ୍କର ପରିପୂରକ ଓ ବିଶ୍ୱମାନବିକତାର ପୁଷ୍ଟି ଦିଗରେ ଗୋଟାଏ ଲେଖା ପ୍ରୟାସ । ଏହି ଯୁକ୍ତିକୁ ବାଢ଼ିଥୋଇ ସେ ୧୯୨୫ ମସିହାରେ ପୁରୀ ଜିଲ୍ଲାର ବୋଲଗଡ଼ଠାରେ ଅନୁଷ୍ଠିତ ପ୍ରାଦେଶିକ ସମ୍ମିଳନୀରେ କହିଥିଲେ ଯେ ପରିବାରର ପ୍ରଗତି ଓ ଗ୍ରାମର ପ୍ରଗତି ମଧ୍ୟରେ ଯେମିତି କୌଣସି ଅର୍ନ୍ତଦ୍ୱଂଦ୍ୱ ନଥାଏ, ସେହିଭଳି ଆଞ୍ଚଳିକ ବିକାଶ ଓ ରାଷ୍ଟ୍ରର ସାମୂହିକ ବିକାଶ ମଧ୍ୟ କେହି କାହାରି ପରିପନ୍ଥୀ ନୁହଁନ୍ତି । ସାଙ୍ଗରେ, ଜାତୀୟ ପ୍ରଗତି କେବେ ବିଶ୍ୱ ପ୍ରଗତିର ବାଧକ ହୋଇ ନପାରେ । ଗ୍ରାମ, ଅଂଚଳ ରାଷ୍ଟ୍ର ଓ ବିଶ୍ୱ- ପ୍ରତ୍ୟେକ ପ୍ରତ୍ୟେକର ଅନୁପୂରକ । ଗୋଟିଏର ବିକାଶ ମଧ୍ୟରେ ଅନ୍ୟର ବିକାଶ ଅନ୍ତର୍ନିହିତ ।

ଗୋପବନ୍ଧୁଙ୍କ ଜାତୀୟତାରେ ରାଜା ରାଜୁଡ଼ାଙ୍କ ଅତ୍ୟାଚାର ପ୍ରତି ମୌନଭାବ ନଥିଲା । ସେ ଅତ୍ୟାଚାରୀ ରାଜାଙ୍କୁ 'ବାଜ' ପକ୍ଷୀ ଓ ନିରୀହ ପ୍ରଜାଙ୍କୁ 'ପାରା'

ସଙ୍ଗେ ତୁଳନା କରୁଥିଲେ । ୧୯୨୧-୨୨ ମସିହାରେ ତାଙ୍କରି ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ କଟକ ନିକଟସ୍ଥ କନିକା ଜମିଦାରୀରେ ଏକ ଶକ୍ତିଶାଳୀ କୃଷକ ଆନ୍ଦୋଳନର ରୂପ ନେଲା । ରାଜାରାଜୁଡ଼ାଙ୍କ ବିରୋଧ ଯୋଗୁଁ ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ ଏକାବେଳକେ ଉଭୟ ଉପନିବେଶବାଦ ଓ ସାମନ୍ତବାଦର ତୀବ୍ର ବିରୋଧୀ ହୋଇପାରିଛି ।

ଗୋପବନ୍ଧୁ ନିଜେ ଥିଲେ ଜଣେ ପ୍ରତିଭାବାନ୍ ଲେଖକ । ତାଙ୍କର ତଥା ତାଙ୍କ ସହଯୋଗୀଙ୍କର ସାହିତ୍ୟକ କୃତିର ଗୁଣାତ୍ମକମାନକୁ ଆଧାର କରି ସେ ସମୟକୁ ସାହିତ୍ୟର 'ସତ୍ୟବାଦୀ ଯୁଗ' ନାମରେ ନାମିତ କରାଯାଏ । ସାଧାରଣତଃ 'ସମାଜ' ଓ 'ସତ୍ୟବାଦୀ' ପତ୍ରିକାର ସଂପାଦକୀୟରେ ଗୋପବନ୍ଧୁଙ୍କ ସୃଜନୀର ନିଦର୍ଶନ ମିଳେ । ତା'ଛଡ଼ା, ନିଜର ରାଜନୈତିକ ବ୍ୟସ୍ତତା ସତ୍ତ୍ୱେ ସେ 'ଧର୍ମପଦ' 'ନଚିକେତା ଉପାଖ୍ୟାନ', 'କାରା କବିତା' ଆଦି କେତେଗୁଡ଼ିଏ କାବ୍ୟ ରଚନା କରିଛନ୍ତି । ଗୋପବନ୍ଧୁଙ୍କ ଲେଖାଗୁଡ଼ିକ ତାଙ୍କ ବ୍ୟକ୍ତିତ୍ୱ ପରି ବେଶ୍ ସରଳ, ସ୍ୱଚ୍ଛ ଓ ସିଧା ସଳଖ । ବିଂଶ ଶତାବ୍ଦୀର ଆରମ୍ଭରେ ସେ ନିଜ ଲେଖନୀ ମାଧ୍ୟମରେ, ତାଙ୍କ କଳ୍ପିତ ଶିଶୁ 'ସମାଜ' ଖବରକାଗଜର ପୃଷ୍ଠା ମାଧ୍ୟମରେ ବାହାର ଦୁନିଆଁକୁ ତଥା ରାଜନୀତିକୁ ଗାଁ ଦାଣ୍ଡ ଯାଏଁ ପହଁଚେଇ ପାରୁଥିଲେ ବୋଲି ଓଡ଼ିଆ ଭାଷାରେ 'ଖବର କାଗଜ'ର ଲୌକିକ ସ୍ତରରେ ନାଁ ହେଲା 'ସମାଜ' । ଯେଉଁ ସହଜ, ସରଳ ଭାଷାରେ ସେ ଜଟିଳରୁ ଜଟିଳତର କଥାଗୁଡ଼ିକୁ ନିଜ ସଂପାଦକୀୟ ଲେଖାରେ ବୁଝେଇ ଦିଅନ୍ତି, ତାହା ସାମାଜିକ ଜୀବନରେ ତାଙ୍କର ପୂର୍ଣ୍ଣ-ସଂପୃକ୍ତିକୁ ହିଁ ଦର୍ଶିତ କରେ । ବିଷୟବସ୍ତୁ ପରିବେଷଣରେ ଗୋପବନ୍ଧୁ ସର୍ବଦା ସମାଜ ଓ ଗୋଷ୍ଠୀର ସାମୂହିକ ବିକାଶକୁ ବ୍ୟକ୍ତିର ଐକିକ ବିକାଶ ଅପେକ୍ଷା ଅଧିକ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ସମାଜ ଗଠନ ନିମନ୍ତେ ବ୍ୟକ୍ତିର ସ୍ୱାର୍ଥ ତ୍ୟାଗ ଏବଂ ଆତ୍ମବଳିଦାନ ଏକାନ୍ତ ଆବଶ୍ୟକ । ତେଣୁ ଆତ୍ମକୈନ୍ଦ୍ରିକ ସମାଜ ତୁଳନାରେ ସମାଜକୈନ୍ଦ୍ରିକ ବ୍ୟକ୍ତି ଗୋପବନ୍ଧୁଙ୍କ ଆଦର୍ଶ ଚରିତ୍ର । ଏହି କାରଣରୁ କିମ୍ବଦନ୍ତୀର ବାଳକ 'ଧର୍ମପଦ' ତାଙ୍କ 'ଧର୍ମପଦ' କାବ୍ୟର ପ୍ରମୁଖ ଚରିତ୍ର, କାରଣ ବାରଶହ ବଢ଼େଇର ପ୍ରାଣରକ୍ଷା ସକାଶେ ସେ ଅକୁଣ୍ଠ ଚିତ୍ତରେ ଆତ୍ମବଳି ଦେଇଛି । ଠିକ୍ ସେହିଭଳି କିଶୋର 'ନଚିକେତା'କୁ ମୃତ୍ୟୁର ଭୟ କେବେ ଗ୍ରାସ କରିନାହିଁ । ବରଂ ସେ ନିର୍ଭୟ ଚିତ୍ତରେ ମୃତ୍ୟୁ ଦେବତା ଯମ ସହ ଶାସ୍ତ୍ରାର୍ଥ କରିବାକୁ ଆଗଭର ହୋଇଛି । ଗୋପବନ୍ଧୁଙ୍କ ଦୃଷ୍ଟିରେ 'ଧର୍ମପଦ' ଓ 'ନଚିକେତା' ମରିସୁଦ୍ଧା ମୃତ୍ୟୁ ଜେତା । ଧର୍ମପଦ ଓ ନଚିକେତାର ବଳିଦାନ ଓ ଅଭୟଭାବ କବିଙ୍କୁ କେତେ ଉଦ୍‌ପ୍ରେରିତ କରିଛି ଯେ ଗୋପବନ୍ଧୁ ନିଜେ ଦେଶର

ସ୍ୱରାଜ୍ୟ କଳ୍ପେ ଆତ୍ମବଳି ଦେବାକୁ ଗୋଡ଼ ଟେକିଛନ୍ତି । ଆବେଗଭରା କଣ୍ଠରେ ସେ ଗାଇଛନ୍ତି—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ତହିଁ ମୋର ମାଂସହାଡ଼ ।

ଆଧୁନିକ ଭାରତ ହେଲା ଅନେକ ପ୍ରାନ୍ତ ଓ ପ୍ରଦେଶର ଏକ ସଂଘ, ଥୋକ ସମୂହ ! ତହିଁରେ ଗୋପବନ୍ଧୁ ଭଳି ଜନନାୟକଙ୍କ ଅନୁପସ୍ଥିତିରେ କେବଳ ଜଣେ ମହାତ୍ମା ଗାନ୍ଧି କ'ଣ ଦେଶର ରାଜନୀତିକୁ ଲୋକସ୍ତରକୁ ଆଣିବାରେ ସଫଳ ହୋଇଥାନ୍ତେ ? ଯଦି ନା, ତେବେ ଗୋପବନ୍ଧୁଙ୍କ ସାମାଜିକ ମହତ୍ତ୍ୱ କି ଗାନ୍ଧିଙ୍କଠାରୁ ଊଣା ହେବ ??



# ଯେମିତି ମନେପଡ଼ନ୍ତି ଫତୁରାନନ୍ଦ

୧୯୮୬ ମସିହା କଥା । ଫତୁରାନନ୍ଦଙ୍କ (୧୯୧୫-୧୯୯୫) 'ମଙ୍ଗଳବାରିଆ ସାହିତ୍ୟ ସଂସଦ' ପଢ଼ିଲା ପରେ ବହିର 'ଇନର କଭର' ପୃଷ୍ଠାରେ ପ୍ରଦତ୍ତ ଠିକଣାରେ ତାଙ୍କ ପାଖକୁ ଏକ ପୋଷ୍ଟକାର୍ଡ଼୍ ପଠାଇଲି । ଅନେକ ସମୟରେ ଲେଖା ଭଲ ଲାଗିବା ପରେ ମନ ହୁଏ ଲେଖକଙ୍କ ପାଖକୁ ପ୍ରତିକ୍ରିୟା ଜଣାଇ ଚିଠିଟିଏ ଲେଖିବାକୁ । ଲେଖା ମାଧ୍ୟମରେ ଯେଉଁ ସମ୍ବନ୍ଧଟିଏ ଅଙ୍କୁରିତ ହୋଇଥାଏ, ତାକୁ ମାଟି ପାଣି ଦେଇ ବଞ୍ଚେଇ ରଖିବାକୁ ଆଗ୍ରହ ହୁଏ । ପୁଣି ଲାଗେ ମୋ ଭଳି ଅନେକ ଲୋକଙ୍କୁ ତ ଭଲ ଲାଗିଥିବ ଲେଖାଟି । ସଫଳ ସ୍ରଷ୍ଟା ରୂପରେ ଅନେକ ଚିଠି ମିଳୁଥିବ ଲେଖକଙ୍କୁ । ମୋ ଚିଠି ବା କୋଉ ଅଲଗା ହେବ ଯେ ତାଙ୍କ ପାଇଁ । ଭିଡ଼ ଭିତରେ ଜଣେ ହେବା ସତ୍ତ୍ୱେ ବ୍ୟକ୍ତି ସ୍ୱତନ୍ତ୍ର ଆତ୍ମପରିଚୟ ଲୋଡ଼େ, ଅନେକଙ୍କ ଭିତରେ ଏକ ହେବାଠାରୁ ଭିନ୍ନ କିଛି । ଖାସ୍ କରି କୈଶରାବସ୍ଥା ଓ ଉତ୍ତର କୈଶୋରାବସ୍ଥାରେ । ନିଜକୁ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ କରି ଗଢ଼ିବାର ଯେଉଁ ଅଭିଳାଷ ଥାଏ ବ୍ୟକ୍ତି ମନରେ, ସେଥିରେ ତା ପୋଷାକପତ୍ର, ହାବଭାବ, ଚିଠିପତ୍ର ସବୁଗୁଡ଼ିକୁ ଗୋଟାଏ ଗୋଟାଏ ଉପଜୀବ୍ୟ ଭାବରେ ଦେଖେ ସେ । ଫତୁରାନନ୍ଦଙ୍କୁ ଚିଠିଟି ଲେଖିବା ଭିତରେ ବୋଧେ ସେହି ସ୍ୱତନ୍ତ୍ର ଭାବ ଆସୁଥିଲା ମୋ ମନରେ । ମୋ ଚିଠି ତାଙ୍କ ଅନେକ ପ୍ରଶଂସକଙ୍କ ଚିଠି ଭିତରେ ଖୁନ୍ଦି ହୋଇ ରହିଯିବ । ନା ଜଣା ସାହିତ୍ୟିକ ସେ । ବଡ଼ ବଡ଼ ପୁରସ୍କାରପ୍ରାପ୍ତ ଲେଖକଙ୍କୁ ଲୋକ ଜାଣି ନଥାଇ ପାରନ୍ତି, ହେଲେ ତାଙ୍କୁ କେଉଁ ଓଡ଼ିଆ ପାଠକ ବା ନ ଜାଣେ ଯେ ? ଆଗରୁ ତାଙ୍କ 'ନାକଟା ଚିତ୍ରକର' 'କଲିକତି ଚେଙ୍କ' ଆଦି କେତୋଟି ଲେଖା ପଢ଼ିଥିଲି । ସେତେବେଳେ ମୋ ଅଭିମାନ ଚିଠି ଲେଖାରୁ ମୋତେ ବାରଣ କରିଥିଲା । ହେଲେ ଏଥର ଏ ବହିଟି ପ୍ରଥମ ପଢ଼ାରେ ମୋତେ ଏତେ ହସେଇଥିଲା ଯେ ମୁଁ ଆତ୍ମସମର୍ପଣ କରିଗଲି । ନିଜ ଭିତରେ ସ୍ୱତନ୍ତ୍ର ହେବାର ଅଭିଳାଷ ବଳି ପଡ଼ୁ ପଛେ ତାଙ୍କୁ ଚିଠି ଲେଖିଲି । ଚିଠିର ପ୍ରାରମ୍ଭରେ ସମ୍ବୋଧନ ଉତ୍ତାରୁ ଏହି ଭାବଟି ଅଭିବ୍ୟକ୍ତ ମଧ୍ୟ କରିଥିଲି, 'ଆପଣଙ୍କୁ ତ ପାଠକ ମାନଙ୍କଠାରୁ ଅନେକ ଚିଠି ମିଳୁଥିବ, ତଥାପି ମୁଁ ଲେଖୁଛି ।'

ଆଠ ଦଶ ଦିନ ପରେ ଉତ୍ତରଟିଏ ଆସିଲା ତାଙ୍କଠାରୁ । ତାଙ୍କ ଚିଠିର ପ୍ରକୃତ ଉଦ୍ଧରଣ କରିପାରୁନି; ତଥାପି ଚିଠିର ଉଲ୍ଲିଖିତ ବକ୍ତବ୍ୟ ହେଲା ଯେ ପାଠକଠାରୁ ତାଙ୍କ କ୍ୱଚିତ୍ ଚିଠି ମିଳେ । ବରଂ ପରିଚିତ ମହଲରେ ଅନେକ ନିନ୍ଦା ସମାଲୋଚନା ତାଙ୍କୁ ଲେଖାର । ଅନେକ ବଡ଼ ସାହିତ୍ୟିକ ତାଙ୍କୁ ସାହିତ୍ୟିକ ବୋଲି ବି ଗଣନ୍ତିନି । ସେ ସବୁ ନିନ୍ଦା ସମାଲୋଚନାକୁ 'ସୁଜି ଉପମାରେ ପଡ଼ିଥିବା ଲାଲ ଲାଲ ରାଗ ଲଙ୍କା ତୁଲ୍ୟ' ମନେ କରି ହଜମ୍ କରି ଯାଆନ୍ତି । ଚିଠି ପଢ଼ିଲା ପରେ ଲାଗିଲା, ଚିଠି ନ ଦେଇ ମୁଁ ବଡ଼ ଭୁଲ୍ କରିଥାନ୍ତି । ମୋ ଚିଠିଟି ତାଙ୍କ ପାଇଁ ଅଦରକାରୀ ନୁହେଁ ଜାଣିଲା ପରେ ମୋ ଭିତରର ବାକୀ ଅଭିମାନ ଟିକକ ବି ପାଣି ପାଣି ହୋଇଗଲା ଯେମିତି ।

ତାଙ୍କ ଚିଠିରେ ଅନେକ ବ୍ୟାକରଣଗତ ଅଶୁଦ୍ଧି । ହସ୍ତାକ୍ଷରରେ ପକ୍ୱତା ନାହିଁ । ମୁଁ ନିଜେ ବି ଅନେକ ଶବ୍ଦର ଭୁଲ୍ ବନାନ କରେ । ମାତ୍ର ଏ ଚିଠିର ତ ଗୁରୁତର ଅବସ୍ଥା । ଚିଠି ଶେଷରେ ଛୁଆ ଖେଳିଲା ପରି ଡେଙ୍ଗା ମେଙ୍ଗା ଅକ୍ଷରରେ ଦସ୍ତଖତଟିଏ 'ପତୁରାନନ୍ଦ' । ଦେଖିଲାକ୍ଷଣି ଚିଠିଟିକୁ ଅନୁମାନ କରି ହେଉଛି ଦସ୍ତଖତଦାତା ଓ ଚିଠି ଲେଖକ ଜଣେ ବ୍ୟକ୍ତି ନୁହନ୍ତି । ସେ ଯାଏଁ ମତେ ଜଣା ନ ଥିଲା, ପତୁରାନନ୍ଦ ଶାରୀରିକ ଭାବେ ଅକ୍ଷମ । ତାଙ୍କ ଲେଖାଗୁଡ଼ିକ ସେ ନିଜ ହାତରେ ଲେଖି ପାରନ୍ତି ନାହିଁ; ବରଂ ଲେଖାଟିକୁ ଡାକି ଦିଅନ୍ତି ସେ । ଆଉ କେହି ଲେଖେ । ପାଣ୍ଡୁଲିପି ତିଆରି ସରିଲା ପରେ ପଢ଼ି ବି ପାରନ୍ତି ନାହିଁ ସେ । କେହି ପଢ଼ି ଶୁଣାଇଦିଏ । ବନାନ ଅଶୁଦ୍ଧି ରହିଯାଏ, ଖାସ୍ କରି ବ୍ୟକ୍ତିଗତ ଚିଠି ପତ୍ରରେ । ଛପା ବହି କଥା ଅଲଗା । ପ୍ରକାଶକ ନିଜ ସ୍ୱାର୍ଥରେ ବନାନ ଠିକ୍ କରାଏ । ତାଙ୍କ ଲେଖା ପଢ଼ିଲା ପରେ ମୋ ମନରେ ତାଙ୍କୁ ନେଇ ଯେଉଁ ଚିତ୍ର ଆଙ୍କି ହୋଇ ଯାଇଥିଲା, ଏକ ସଫଳ ସମ୍ପନ୍ନ, ସକ୍ଷମ, ବଳିଷ୍ଠ ବ୍ୟକ୍ତିତ୍ୱର, ସେ ଚିତ୍ର ଏ ଚିଠି ପଢ଼ି ଧୀରେ ଧୀରେ ଝାପ୍‌ସା ହେବାକୁ ଲାଗିଲା ।

ସେ ଯାହାହେଉ, ଲେଖକଙ୍କ ଲେଖା ପଢ଼ି ଚିଠି ଦିଆହେଲା, ଲେଖକଙ୍କଠାରୁ ଉତ୍ତର ଆସିଲା । ବେଶ୍ ଏତିକିରେ ଲେଖକ- ପାଠକ ସମ୍ବନ୍ଧର ଚରମ ପରିଣତି ଘଟେ । ତେଣିକି ସ୍ୱତନ୍ତ୍ର ଖାମ୍‌ରେ ଲେଖକଙ୍କ ଚିଠିଟି ସାଇତା ହୋଇ ରହେ ସିନା, ସମ୍ବନ୍ଧକୁ ଆଗକୁ ବଢ଼ିବାର ଆଉ ଅବକାଶ ରହେନା । ମୋ କ୍ଷେତ୍ରରେ ବି ସେଇୟା ହେଲା ।

୧୯୮୭ ମସିହାରେ ଗବେଷଣା ପରିପ୍ରେକ୍ଷୀରେ ମତେ କଟକରେ କିଛିଦିନ ରହିବାର ଅବସର ମିଳିଲା । କାର୍ଯ୍ୟକ୍ଷେତ୍ର ଶ୍ରୀରାମଚନ୍ଦ୍ର ଭବନର 'ମଧୁସୂଦନ ଗ୍ରନ୍ଥାଗାର' । ୟା ପୂର୍ବରୁ ଥରେ ପରିବାର ମେଳରେ ପୁରୀ ଯିବା ବାଟରେ ଏବଂ ଆଉ ଥରେ ବନ୍ଧୁମେଳରେ ନନ୍ଦନକାନନ, କୋଣାର୍କ ପିକ୍‌ନିକ୍ ଯିବା ବାଟରେ କଟକ

ବାଟ ଦେଇ ଯାଇଥିଲି କେବଳ । ବେଶ୍ ସେତିକି ମୋର ପରିଚୟ ଓଡ଼ିଶାର ଐତିହାସିକ ସହର କଟକ ସହ । ତେଣୁ, ଏଥର ଗବେଷଣା କାମ ବାହାରେ, କଟକ ରହଣି ଅବଳେ କ'ଣ ସବୁ କରିବି, ସେ ନେଇ ସ୍ଥିର ମନରେ ବିସ୍ତୃତ ଯୋଜନା ତିଆରି ଥାଏ । ଯେହେତୁ ପରିଚିତ ସହର ନୁହେଁ, ଅନେକ ପରିଚିତ ବ୍ୟକ୍ତି ବି ନାହାନ୍ତି ସେଠି । ଅଳ୍ପ ପରିଚିତଙ୍କ ମଧ୍ୟରେ ଥିଲେ ଫତୁରାନନ୍ଦ, ସମ୍ପର୍କର ସୂତ୍ର ସେହି ଚିଠି ଗୋଟାକ ଯାହା । ଦେଖିନି କେବେ, ଜାଣେନି କୋଉଠି ରହନ୍ତି ସେ । ତା' ସତ୍ତ୍ୱେ ବିଶ୍ୱାସ ଥାଏ ମନରେ, ଚିହ୍ନି ପକେଇବି ତାଙ୍କୁ, ଖୋଜି ପକାଇବି ତାଙ୍କ ଘର । ମହାନଗରୀ ଦିଲ୍ଲୀରୁ ଆସିଥାଏ ମୁଁ । ତେଣୁ, ବାସ୍ତବିକତାଠାରୁ ଅଧିକ 'ସାନ' ମନେ ହେଉଥାଏ କଟକ ସହର୍ । ସବୁକିଛି ଯେମିତି ହାତପାହାନ୍ତା ହୋଇଥିବ ସେଠି ।

ମୋ କଟକ ରହଣିର ଦ୍ୱିତୀୟ ବା ତୃତୀୟ ଦିନରେ ଶ୍ରୀରାମଚନ୍ଦ୍ର ଭବନରେ ସାହିତ୍ୟ ସଭାଟିଏ ହେଉଥାଏ । ସେହି ଉପଲକ୍ଷେ ମଧୁସୂଦନ ଗ୍ରନ୍ଥାଗାର ସମୟ ଆଗରୁ ବନ୍ଦ ହେବ ବୋଲି ସୂଚନା ମିଳିଥାଏ । ଗ୍ରନ୍ଥାଗାରରୁ ବାହାରି ସାହିତ୍ୟ ସଭାର ଭିଡ଼ରେ ମିଶିଗଲି ମୁଁ । ମୋ ପାଇଁ କୌଣସି ନିମନ୍ତ୍ରଣ ନ ଥିଲା, ନିମନ୍ତ୍ରଣର ଆବଶ୍ୟକତା ବି ନ ଥିଲା । ଓଡ଼ିଶାର 'ପ୍ରାଣକେନ୍ଦ୍ର' କଟକ ଓ କଟକର ସଂସ୍କୃତି କେନ୍ଦ୍ର ଶ୍ରୀରାମଚନ୍ଦ୍ର ଭବନରେ ସାହିତ୍ୟସଭା ସବୁ ହୁଏ ବୋଲି ଶୁଣିଥାଏ ସିନା, ଆଗରୁ କୌଣସି ପ୍ରତ୍ୟକ୍ଷ ଅନୁଭବ ନ ଥାଏ ମୋର । ତେଣୁ, ସଭାର ବକ୍ତାଙ୍କଠାରୁ ଆରମ୍ଭ କରି ଦର୍ଶକ ମଣ୍ଡଳୀ ଓ ସଭାପରେ ପଙ୍‌କ୍ତିଭୋଜନ– ସବୁ ଗୋଟାଏ ଗୋଟାଏ ନୂଆ ଅନୁଭୂତି ମୋ ପାଇଁ ।

ପଙ୍‌କ୍ତି ଭୋଜନ ବେଳେ ନଜର ପଡ଼ିଲା ଜଣେ ଗୈରିକବସନଧାରୀ କଳା ଚଷମା ପରିହିତ ବୃଦ୍ଧ ବ୍ୟକ୍ତିଙ୍କ ଉପରେ । ଚକ୍ଷୁହୀନ ନିଶ୍ଚୟ ସେ; ମାତ୍ର ନିୟମିତ ଚକ୍ଷୁହୀନମାନଙ୍କ ଅପେକ୍ଷା ମଧ୍ୟ ଅଧିକ ନିର୍ଭରଶୀଳ ସେ ଅନ୍ୟମାନଙ୍କ ଉପରେ । ଖାଇବା ବେଳେ ହାତ ଧୋଇବାବେଳେ, ଏପରିକି ନିଜର ଜୋତା (ହାଫ୍ ସୁ) ଖୋଲିଲା ବେଳେ ଜଣେ ଯୁବତୀ ତାଙ୍କ ପରିଚର୍ଯ୍ୟାରେ ଲାଗିଥାନ୍ତି । ଯୁବତୀଙ୍କ ହାବଭାବରୁ ମନେ ହେଉଥାଏ ସେ ସମ୍ପର୍କୀୟ ବା ନିୟମିତ ପରିଚାରିକା ଗୋଷ୍ଠୀର ନୁହନ୍ତି । ସ୍ୱଭାବସୁଲଭ ଢଙ୍ଗରେ ଜଣେ ଅନ୍ଧ ବ୍ୟକ୍ତିଙ୍କୁ ସହାୟତା କରିବା ଉଦ୍ଦେଶ୍ୟ ତାଙ୍କର । ଅନେକ ଉପସ୍ଥିତ ଲୋକ ତାଙ୍କୁ (ଅନ୍ଧ ବ୍ୟକ୍ତିଙ୍କୁ) ନମସ୍କାର ହେଉଥାନ୍ତି । ଯେହେତୁ ସେ ମଞ୍ଚାସୀନ ନ ଥିଲେ, ତାଙ୍କ ନାଁ ଜାଣିବାର ସେଯାଏଁ ଅବକାଶ ମିଳି ନ ଥାଏ । ପଚାରି ବୁଝିଲି, ସେ ହେଉଛନ୍ତି- ଫତୁରାନନ୍ଦ । ସାଙ୍ଗେ ସାଙ୍ଗେ ଭେଟି

ପାରିଲି ନାହିଁ । ଭେଟିବାକୁ ଚାହୁଁଥିବା ଜଣକୁ ହଠାତ୍ ଆକସ୍ମିକ ଭାବେ ବିନା ପ୍ରସ୍ତୁତିରେ ଭେଟିଲେ, ଭେଟିବାର ମହତ୍ତ୍ୱ କାଳେ ଊଣା ହୋଇଯାଇପାରେ । ସେହି ଆଶଙ୍କା ବୋଧେ ମୋ ଆଗରେ ଏବେ ପ୍ରତିରୋଧକ ହେଲା ।

ପରଦିନ କାମ ସାରି ପୀଠାପୁରସ୍ଥ ଡଗର ପ୍ରେସ୍‌କୁ ତାଙ୍କୁ ଭେଟିବାକୁ ଗଲି । ସେତେବେଳେ 'ଡଗର' ନ ଥାଏ ସେଠି । ଭୁବନେଶ୍ୱରକୁ ଉଠି ସାରିଥାଏ । ଫତୁରାନନ୍ଦଙ୍କ ଦାଦାପୁଅ ଭାଇ ଶ୍ୟାମସୁନ୍ଦର ମିଶ୍ରଙ୍କ ପୁଅର ତତ୍ତ୍ୱାବଧାନରେ ସେଠି ଚାଲିଥାଏ ଆଉ ଏକ ଛାପାଖାନା- ଆନନ୍ଦ ପ୍ରେସ୍ । ହେଲେ ଲୋକ ଜାଣନ୍ତି 'ଡଗର ପ୍ରେସ୍' ନାମରେ ଘରଟିକୁ । ବାଟଘରେ ବଡ଼ ଟେବୁଲ୍‌ଟିଏ, ତାର ଦୁଇକଡ଼େ ଦୁଇଟି ଚଉକି । ଗୋଟାକରେ ଫତୁରାନନ୍ଦ ବସିଥାନ୍ତି, ଆଉ ଗୋଟାକରେ ଜଣେ ଆଗନ୍ତୁକ । ତାଙ୍କ ବ୍ୟକ୍ତିତ୍ୱ ପରି ଖୋଲାମେଲା ଶରୀର । ଗଞ୍ଜିଟିଏ ବି ପିନ୍ଧିନାହାନ୍ତି ।

ଦେଖିପାରୁ ନଥିବା ଜଣକ ସହ ଦେଖା ହେଲେ, ଆଖିରେ ଆଖିରେ କଥାଭାଷା, ପ୍ରାରମ୍ଭିକ ପରିଚୟ ଦିଆନିଆ ହୋଇପାରେନା, ପାଟି ଖୋଲି ନିଜ ପରିଚୟ ଘୋଷଣା କରିବାକୁ ପଡ଼େ । ମୁଁ ବି ଘୋଷଣା କଲି 'ମୁଁ ହେଉଛି... । ଆପଣଙ୍କର ଜଣେ ପାଠକ । ଦିଲ୍ଲୀରୁ ଆସିଛି ।' ଶେଷଧାଡ଼ିକ ଉଚ୍ଚାରଣ କଲାପରେ, ଆଗରୁ ବସିଥିବା ଆଗନ୍ତୁକ ଚେୟାର ଛାଡ଼ି ଉଠିଗଲେ । ମତେ 'ବସନ୍ତୁ' ଏବଂ ତାଙ୍କୁ 'ମୁଁ ଆସୁଛି' କହି ତେଣିକି ସେ ଚାଲିଗଲେ । ପାଞ୍ଚ ଦଶ ସେକେଣ୍ଡ ପାଇଁ ହଠାତ୍ ସବୁକିଛି ଚୁପ୍‌ଚାପ୍ । ଉଚ୍ଚପାଟିରେ କଥାବର୍ତ୍ତା, ଠୋ ଠୋ ହସ- ସବୁଥିରେ ଯେମିତି ଏକ ଆସ୍ତରଣ ଘୋଡ଼ି ହୋଇଗଲା । ମୋ ଅଜାଣତରେ ମୋ ଉପସ୍ଥିତି ଖୁଣ୍ଟ ଭଳି ପୋତି ହୋଇ ରହିଲା ଯେମିତି । ଦିଲ୍ଲୀରୁ ଆସିବାର ଗର୍ବରେ ଆତ୍ମଗର୍ବୀ ମୁଁ ସେହି କ୍ଷଣିକର ନିସ୍ତବ୍ଧତା ପଛରେ ଯେ ଆଉ କାରଣ ରହିଥାଇପାରେ ତାହା ଦେଖି ପାରିଲିନି । ପରିଚୟ ହେଲା ଉତ୍ତାରୁ ଅନେକ ଦିନ ପରେ ତାହା ଉଦ୍‌ଘାଟିତ ହେଲା ।

ପରିଚୟ ହେବାର ଅନେକ ଦିନ ପରେ ଦିନେ ଘଟଣାକ୍ରମରେ ଫତୁରାନନ୍ଦ ମୋର ପ୍ରଥମ ଭେଟ କଥା ମନେପକାଇ କହିଲେ- ବୁଝିଲ, ତୁମ ପରିଚୟ ଶୁଣି ମୁଁ ତ ଡରିଗଲି । ଭାବିଲି ପ୍ରୀତୀଶ ନନ୍ଦୀ ଆସିଛି ଦିଲ୍ଲୀରୁ । ମୋତେ ଜେରା କରି 'ଇଲଷ୍ଟ୍ରେଟେଡ୍ ୱିକ୍‌ଲୀ ପେପର୍‌ରେ କ'ଣ ସବୁ ଲେଖିଦବ । ମୋ ପରିଚୟ ଶୁଣି କେଇ ମିନିଟ୍ ସ୍ତବ୍ଧ ହୋଇଯିବାର କାରଣ ମୁଁ ସେଦିନ ଯାଇ ବୁଝିପାରିଲି । ପରେ ପରେ ତାଙ୍କ ସହ ଘନିଷ୍ଠରୁ ଘନିଷ୍ଠତର ହେବାର ଅବସରରେ ମୁଁ ପାଇବାକୁ ଆରମ୍ଭ କରିଥିଲି ଜଣେ ନିଷ୍କପଟ ଏବଂ ସରଳ ମଣିଷର ମମତାର ଅମୃତ ସ୍ପର୍ଶ ।

ସେଦିନ (ଯେଉଁଦିନ ତାଙ୍କୁ ପ୍ରଥମ ଥର ପାଇଁ ଭେଟିଲି) ଅନେକ ବେଳ ଧରି ଫତୁରାନନ୍ଦଙ୍କ ପାଖରେ ବସି ରହିଲି ମୁଁ । 'ସାମାନ୍ୟ ପରିଚୟ' ପରେ 'ବିଶେଷ ପରିଚୟ'ର ପର୍ବ ଆରମ୍ଭ ହେଲା । 'ଘର କେଉଁଠି ?' 'କ'ଣ କରୁଛ ?' ଅସତର୍କ ଭାବରେ ଯେତେବେଳେ ସୂଚନା ଦେଲି ଯେ ମୁଁ ବି ଲେଖାଲେଖି କରେ, ଭାରି ଆଗ୍ରହରେ କହିଲେ 'ଆପଣ ନିଜ ଲେଖା ଆଣି ମତେ ଶୁଣାଇବେ ।' ସେହି ପ୍ରଥମ ଦିନର କଥାବାର୍ତ୍ତା ମତେ ଏତେ ସ୍ୱାଭାବିକ ତଥା ଆମୋଦଦାୟୀ ମନେହେଲା ଯେ, ତା'ପରେ କଟକ ରହଣିର ପ୍ରାୟ ଦିନ ମୁଁ ତାଙ୍କ ପାଖକୁ ଯାଏ । ଘଣ୍ଟା ଘଣ୍ଟା ଧରି ବସେ । ଆଗରୁ ଯେଉଁ ଧାରଣା ଥିଲା, ନାଁ କରା ଲେଖକ ଭାବରେ ତାଙ୍କ ଆଖପାଖରେ ବହୁତ କାମ ଥିବ, ବହୁତ ଭିଡ଼ ଥିବ, ତାହା ଦୂର ହେଇଗଲା । ବରଂ ସେଠି ସ୍ଥିତି ଅଲଗା । ଆଖିକୁ ଦିଶେନି ବୋଲି ଜଣକର ସହାୟତା ବିନା ସେ ପଢ଼ିବା ଲେଖି ପାରିବେନି । ପଢ଼ି ପାରନ୍ତିନି ବୋଲି ସାହିତ୍ୟ ଶୁଣିବାର ଯେଉଁ ଦୁର୍ବାର ଆଗ୍ରହ, ସେଇଥିପାଇଁ ବୋଧେ ମୋତେ କହୁଥିଲେ, ମୋ ଲେଖା ପଢ଼ି ଶୁଣାଇବାକୁ । କିଛିଦିନ ପରେ ଏମିତି ହେଲା ଯେ ମୋର ଆସିବାଟାକୁ ସେ ଚାକି ରହିଥାନ୍ତି । କେବେ ନ ଆସି ପାରିଲେ ପଚାରନ୍ତି, 'କାଲି ଆସିଲନି ଯେ ।' ବେଶ୍ ଏଥିରୁ ଅଧିକ ଅଧିକାରବୋଧ ଜାହିର କରିବା ସେ ଯେମିତି ଶିଖି ନାହାନ୍ତି । 'ଏବେ ଯାଉଛି' ବୋଲି କହିଲା ପରେ କେବେ ଆକଟ କରନ୍ତିନି ଆଉ ଟିକେ ବସନ୍ତୁ ବୋଲି । ମୁଁ ତାଙ୍କୁ ଯେତେ 'ବଡ଼ ଲେଖକ' ବୋଲି ଭାବେ, ତାଙ୍କୁ ସେ ସେତେ 'ଛୋଟ' କରି ପରଷନ୍ତି । ତାଙ୍କର ସେହି 'ତୁଚ୍ଛ ଭାବ' ଭିତରେ ଯେଉଁ ନମ୍ରତା ଓ ଯୁଗଦୃଷ୍ଟି ଥାଏ, ଶ୍ରୋତାକୁ ହସେଇ ପାରିବାର କଳାକୌଶଳ ଥାଏ ତାହା ତାଙ୍କର 'ବଡ଼ପଣ'କୁ ଦେଖିବାର ଅବସର ଦିଏ । ମୋର ସ୍ୱଭାବ ଯାହା, କୌଣସି ମୁହୂର୍ତ୍ତରେ ଯଦି ଅନୁଭବ ହୋଇଥାନ୍ତା ଫତୁରାନନ୍ଦ ନିଜକୁ ଜଣେ 'ବଡ଼ ଲୋକ', 'ଜ୍ଞାନୀଜନ' ବୋଲି ବିଚାରନ୍ତି, ବୋଧହୁଏ ତତ୍‌କ୍ଷଣାତ୍ ମୋର ମୋହଭଙ୍ଗ ଘଟିଥାନ୍ତା । ମିଶିବା ପାଇଁ ଆଉ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ଜନ୍ମି ନ ଥାନ୍ତା । ସାଧାରଣରୁ ଅତି ସାଧାରଣ ଭାବେ ନିଜକୁ ଉପସ୍ଥାପିତ କରିବାର ଶୈଳୀ ଯୋଗୁଁ କେବଳ ତାଙ୍କର ମୋ ପରି ପାଠକ ସୃଷ୍ଟି ହୁଅନ୍ତିନି, ସାଙ୍ଗରେ ତାଙ୍କ 'ଅସାଧାରଣତ୍ୱ' ବି ଦେଖାପଡ଼େ । ତାଙ୍କ ବ୍ୟକ୍ତିତ୍ୱ ମତେ ଟାଣି ରଖେ । ଚୁମ୍ବକ ପରି ।

ଫତୁରାନନ୍ଦଙ୍କ ସହ ତେଣିକି ମୁଁ ଏତେ ଖୋଲିଗଲି ଯେ, ସେ ସମ୍ପର୍କକୁ ଜଣେ ସାହିତ୍ୟିକ ସହ ପରିଚୟ ସ୍ତରରେ ସୀମିତ କରାଯାଇପାରିବନି । ମୋ ମନରେ ଏମିତି କିଛି କଥା ନ ଥିବ- ଶ୍ଳୀଳ ଓ ଅଶ୍ଳୀଳ ଉଭୟ—ଯାହା କହିବାକୁ ଚାହିଁ, ତାଙ୍କ

ଆଗରେ ନ କହିଛି । ବୋଧେ ଠିକ୍ ସେମିତି ସେ ବି । ମୋ ଠାରୁ ପ୍ରାୟ ତିନିଗୁଣା ଅଧିକ । ବୟସ ବନ୍ଧୁତା ଆଗରେ ବାଧକ ହୋଇପାରେନା । ଲେଖକ, ଅଲେଖକ, ବଡ଼ ଲେଖକ, ସାନ ଲେଖକ ଭିତରେ ଯେମିତି ସେ ତଫାତ୍ ଦେଖନ୍ତିନି । ପିଲା-ବୁଢ଼ା ମଧ୍ୟରେ ବି ପାର୍ଥକ୍ୟ ଦେଖନ୍ତି ନାହିଁ ।

ମଧୁସୂଦନ ଗ୍ରନ୍ଥାଗାରରୁ ନିଜ ପଢ଼ା କାମ ସାରିବା ପରେ, ବାକୀ ସମୟତକ ମୁଁ ତାଙ୍କ ପାଖରେ ବ୍ୟୟ କରୁଥିଲି ଅଥବା ବ୍ୟୟ କରିବାକୁ ଇଚ୍ଛା ପ୍ରକାଶ କରୁଥିଲି । ମୋ ପହଞ୍ଚିବା ବେଳକୁ ସେହି ବଡ଼ କାଠ ଟେବୁଲ୍ ଉପରେ ସାହିର ନଗ୍ନ, ଅର୍ଦ୍ଧ-ନଗ୍ନ କେତୋଟି ଛୁଆ ବସିଥିବେ ଏବଂ ଫତୁରାନନ୍ଦ ତାଙ୍କୁ ଗପ କହୁଥିବେ । ରାମାୟଣ, ମହାଭାରତଠାରୁ ଆରମ୍ଭ କରି ବାଘ, ସିଂହ ଯାଏ ସବୁ କିସମର ଗପ । ସେହି ବାଟରେ ପ୍ରେସ୍ କର୍ମଚାରୀ ଆଦିଙ୍କ ଯିବାଆସିବା ଚାଲିଥିବ, ହତା ଭିତରେ ଥିବା ପାଣି ପମ୍ପରୁ ସାହିର ଅନେକ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ସ୍ତ୍ରୀଲୋକ ପାଣି କାଢ଼ି ନେଉଥିବେ, ସାହିର କାହା ଘରେ ଯଦି କ'ଣ ହେଲା, ତା'ର ଖବର ନେଇ ଫତୁରାନନ୍ଦଙ୍କ ପାଖକୁ ଆଉମାନେ ଆସୁଥିବେ । ପୂରା ପରିବେଶ କଟକ ସହରର କେନ୍ଦ୍ରସ୍ଥଳୀରେ ରହିବା ସତ୍ତ୍ୱେ ସଂପୂର୍ଣ୍ଣ ରୂପେ ଗାଁ । ସବୁଗୁଡ଼ିକ ଯେମିତି ତାଙ୍କ 'ସାହି ମହାଭାରତ' ପାଇଁ କଞ୍ଚାମାଲ ଯୋଗାଇଛନ୍ତି । ଏହି ସମୟରେ ଯେତେବେଳେ ମୁଁ ପହଞ୍ଚି ଘୋଷଣା କରେ ମୋର ଉପସ୍ଥିତି 'ନମସ୍କାର' ମାଧ୍ୟମରେ ତେଣିକି ଗପକୁହା ଅଧାରୁ ବନ୍ଦ ହୁଏ, ଛୁଆଏ ମତେ ଗାଳି କରନ୍ତି ନିଶ୍ଚୟ, ଯାହା ସେମାନଙ୍କୁ ଶଙ୍କିତ ନୟନରୁ ସ୍ପଷ୍ଟ ବାରିହୁଏ । ସେମାନଙ୍କ ଆନନ୍ଦର ଅପହର୍ତା ମୁଁ !

ପ୍ରଥମ ଦିନର ପଙ୍‌କ୍ତି ଭୋଜନର ଘଟଣାକୁ ମନେ ପକାଇ ଦିନେ କହିଲି, 'ଆପଣଙ୍କ ପରିଚର୍ଯ୍ୟାରେ ତ ସେଦିନ ଯୁବତୀଟି ବେଶ୍ ଲାଗିଥିଲା । ହାତଧୁଆଠାରୁ ଆରମ୍ଭ କରି ଜୋତା ପିନ୍ଧେଇବା ଯାଏଁ ସବୁ ସେ ନିଜ ହାତେ ହାତେ କରୁଥାଏ ।' ମହିଳାମାନଙ୍କୁ ନେଇ ଦୁଇଜଣ ପୁରୁଷଲୋକ ଭିତରେ ଏଭଳି ମନ୍ତବ୍ୟ 'ଅଶାଳୀନ' ପଦବାଚ୍ୟ ହୁଏନା ଆମ ସମାଜରେ । ମହିଳାର ଦୁର୍ବଳତା ଥିବା ସିଦ୍ଧ କରି, ପୁରୁଷ ଯେମିତି 'ବଳଶାଳୀ' ହୁଏ, ଯୁବତୀଟିର ଆଚରଣର ଅବତାରଣା କରି ଜଣେ ପୁରୁଷ ଭାବରେ ମୁଁ ମଧ୍ୟ ଆଉ ଜଣେ ପୁରୁଷ, ଫତୁରାନନ୍ଦଙ୍କୁ ମୋ ଶୈଳୀରେ ବୋଧହୁଏ 'ବଳ' ଯୋଗାଇବାକୁ ପ୍ରଚେଷ୍ଟା କରୁଥିଲି । ଉତ୍ତରରେ ତାଙ୍କର ସେହି ମନଖୋଲା ସ୍ୱୀକାରୋକ୍ତି, 'ହଁ ମ ଭାରି ବଢ଼ିଆ ଲାଗୁଥାଏ ତାହା (ସ୍ପର୍ଶ) ।' ଶେଷ ଶବ୍ଦଟି ସେ ନ କହିଲେ ବି ବେଶ୍ ସ୍ପଷ୍ଟ ଜଣାପଡୁଥାଏ ତାଙ୍କ ହାବଭାବରୁ । ଅବବାହିତ

ଫତୁରାନନ୍ଦ, ସ୍ତ୍ରୀ ଚରିତ୍ରକୁ ସଂପୂର୍ଣ୍ଣ ରୂପେ ବାଦ୍ ଦେଇ ସାହିତ୍ୟ ସୃଷ୍ଟି କରିଥିବା ଫତୁରାନନ୍ଦ, 'ସତୁରି' ଟପି ସାରିଥିବା ଫତୁରାନନ୍ଦ ଯେ ପୁଣି ଏମିତି ରସାଳ ମନ୍ତବ୍ୟଟିଏ ଦେବେ, ନ ଶୁଣିବା ଯାଏଁ ବିଶ୍ୱାସ ହେବନି । କିନ୍ତୁ ତାଠାରୁ ବଡ଼ କଥା, ସେହି ଝିଅର ସ୍ପର୍ଶ ଯୋଗୁଁ ତାଙ୍କୁ ଭଲ ଲାଗିବାଟା ଯଦି ତାଙ୍କର ବ୍ୟକ୍ତିକ ଦୁର୍ବଳତା ଏବଂ ତା' ଯୋଗୁଁ ତାଙ୍କୁ 'ଲୋକହସା' ହେବାକୁ ପଡ଼ିପାରେ, ତାଙ୍କ ନ୍ୟୁନ ହେବାରେ ଯଦି କିଛି ଲୋକ ଆନନ୍ଦ ପାଆନ୍ତି, ସେ କି ତାଙ୍କ ପକ୍ଷେ ସାନ ଉପଲବ୍ଧିଟିଏ ? ଦ୍ୱିତୀୟତଃ, କାଳେ ମୁଁ ସେଥିପାଇଁ ଯୁବତୀଟିକୁ ଦୋଷ ଦେଇପାରେ, ତା ପୂର୍ବରୁ ସେ (ଫତୁରାନନ୍ଦ) ନିଜକୁ ଦୋଷୀ ଘୋଷଣା କରିବା ପାଇଁ ଆଗଭର । ନିଜକୁ ନ୍ୟୁନ ଘୋଷଣା କରିବା ପଛରେ, 'ଲୋକହସା' ହେବା ପାଇଁ ଆଗଭର ହେବା ପଛରେ, ସବୁ ଦୋଷକୁ ମୁଣ୍ଡେଇ ନେବା ପଛରେ ଫତୁରାନନ୍ଦଙ୍କର ସେହି ଯେଉଁ ଆଦର୍ଶ, ତାହା ତାଙ୍କର ପ୍ରତିଟି ରଚନାରେ ପ୍ରତିଫଳିତ ହୁଏ, ତାଙ୍କର ବିଶ୍ୱଦୃଷ୍ଟିକୁ ସୂଚାଏ । ହସଖୁସି ସମାଜକୁ ସୁସ୍ଥତା ଦିଏ । ହେଲେ ଆମେ ହସିବାକୁ ଚାହାନ୍ତି, ଅନ୍ୟକୁ ଦେଖି । ନିଜେ ନିଜ ଉପରେ ହସି ପାରିବେନି । ସେତେବେଳେ 'ଅନ୍ୟ'ର ଯେଉଁ ଖୋଜା ପଡ଼େ । ହସି ହସି 'ଫତୁରାନନ୍ଦମାନେ' ଅଭାବ ପୂରଣ କରନ୍ତି ।

'ଗୋଷ୍ଠୀ', 'ସମୂହ' ବା 'ପର' ପାଇଁ, (ସେ ହସେଇବା ଲକ୍ଷ୍ୟରେ ହେଉ ବା ଯୁଗ ନିର୍ମାଣ ଉଦ୍ଦେଶ୍ୟରେ ହେଉ) ଯଦି ବ୍ୟକ୍ତିର ଦେହ ମାଟିରେ ମିଶିବାକୁ ପ୍ରସ୍ତୁତ, ତାଠାରୁ ଉଚ୍ଚାଦର୍ଶ ଆଉ କ'ଣ ହୋଇପାରେ ? ବଡ଼ ସମାଜସେବୀ ଆଉ କିଏ ହୋଇପାରେ ?' 'ପ୍ରାଣୀଙ୍କ ଆରତ, ଦୁଃଖ ଅପ୍ରମିତ'କୁ ଫତୁରାନନ୍ଦ ସ୍ୱ-ଜୀବନ ଜଞ୍ଜାଳର ଆଧାରରେ ମର୍ମେ ମର୍ମେ ଅନୁଭବ କରି ପାରିଥିଲେ । ବ୍ୟକ୍ତିଗତ ସ୍ତରରେ ନିଜକୁ ତୁଚ୍ଛ ପ୍ରମାଣିତ କଲେ, ଅପର ପ୍ରାଣୀ ସ୍ୱ-ଅପ୍ରମିତ ଦୁଃଖକୁ ଭୁଲି କାଳେ ମନଖୋଲି ହସିବ, ଖୁସି ଅନୁଭବ କରିବ, ଏହି ଆଶାରେ ନିଜ 'ବିଫଳତାକୁ' ଫେଣେଇ ଫେଣେଇ ସେ କହୁଥିଲେ । 'ବିଫଳତା' ମେଡ଼ିକାଲ ପରୀକ୍ଷାରେ ବାରମ୍ବାର ଫେଲ୍ ହେବା ଘଟଣାକୁ ନେଇ ହେଉ ବା କୁଷ୍ଠ ରୋଗରେ ଆକ୍ରାନ୍ତ ହେବା ଘଟଣାକୁ ନେଇ ହେଉ । ସେ କହିବା ପଛରେ ଗଭୀର ଆବେଗର ଭାଷା ରହିଛି, ଅନ୍ୟର ମନପ୍ରାଣରେ ହସଖୁସି ଭର୍ତ୍ତି କରିବା ପାଇଁ ଆପ୍ରାଣ ଚେଷ୍ଟା ରହିଛି । 'ଝାଡ଼ା' 'ପରିସ୍ରା', 'ଶଳା' ଭଳି 'ଅଶ୍ଳୀଳ' ଶବ୍ଦ ରହିବା ସତ୍ତ୍ୱେ ତାହା ଗଭୀର ଆଦର୍ଶର ଭାଷା ଓ ସାହିତ୍ୟ । 'ମଧ୍ୟବିତ୍ତୀୟ ସାହିତ୍ୟିକ ରୁଚି'ର ଚାରିକାନ୍ଥ ଭିତରେ ତାକୁ ଆବଦ୍ଧ କରାଯାଇ ନ ପାରେ, ସମଗ୍ର ମାନବତା ଲାଗି ସେ ଉଦ୍ଦିଷ୍ଟ । ମଧ୍ୟବର୍ଗୀୟ ସାହିତ୍ୟିକ ସମ୍ମାନ ପାଇଁ ସେ ଭାଷା ଲାଳାୟିତ ନୁହେଁ, 'ପର' ପାଇଁ 'ନର୍କେ' ପଡ଼ିବା ତା'ର

ନିୟତି । ତାତ୍ତ୍ୱିକ କ୍ଲିଷ୍ଟତାକୁ ଅନ୍ତରାଳରେ ରଖି, କେବଳ ବାହ୍ୟ ସ୍ତରରେ ହସେଇବା ତା'ର ଉଦ୍ଦେଶ୍ୟ । ସେ ଥିଲେ ସରଳ । ସରଳତା ଯୋଗୁଁ ଆର୍ଥିକ ଦୃଷ୍ଟିରୁ ଜୀବନସାରା ସେ ଠକି ହେଇଛନ୍ତି, ନିସ୍ୱ ହେଇଛନ୍ତି । ହେଲେ ପରମାର୍ଥିକ ଦୃଷ୍ଟିରୁ ବିଶାଳତା ପାଇଛନ୍ତି, ମହାନତାର ନିକଟତର ହୋଇଛନ୍ତି ।

ପାଖରୁ ଦେଖିଲା ପରେ ତାଙ୍କ ଜୀବନର ଏକୁଟିଆ ପଣକୁ ଦେଖି ହେଇଯାଏ । ସେ ଲୁଚେଇ ପାରନ୍ତି ନାହିଁ । ଆର୍ଥିକ ସ୍ୱଚ୍ଛଳତା ତ ଆଦୌ ନଥିଲା । ତାଙ୍କ ରହଣିକୁ କେବେ ବାସୋପଯୋଗୀ କୁହାଯାଇ ନ ପାରେ । ବାଟ ଘରକୁ ଦୁଇଟି ଆଲମାରି ଦେଇ ଦୁଇଭାଗ କରା ହେଇଛି । ଅଧକରେ ଖଟ ଓ ଟେବୁଲ୍ ପଡ଼ିଛି । ବାକୀ ଅଧକରେ ତାଙ୍କ ରହଣି । ସେହି ଆଲମିରା ହିଁ ତାଙ୍କ ସମ୍ବଳ- ପୁସ୍ତକଠାରୁ ଆରମ୍ଭ କରି ରନ୍ଧା ଖାଦ୍ୟ ଯାଏ, ସବୁ ଭର୍ତ୍ତି ଥାଏ ତା' ଭିତରେ । ତା' ପାଖରେ ଖଟଟିଏ । ବିଶ୍ୱସ୍ତ ସେବକ 'ଦେବ' ରନ୍ଧାବଢ଼ା କରି ରଖିଦିଏ ଏବଂ ଚାଲିଯାଏ କାମକୁ । ତା'ର ଫେରିବା ଯାଁ ସେ ନିଃସଙ୍ଗ । ବିନା 'ଦେବ'ର ସହାୟତାରେ ଯୋତା ବି ପିନ୍ଧି ପାରିବେନି । 'ଡଗର' କଟକରୁ ଭୁବନେଶ୍ୱରକୁ ଚାଲିଗଲା ପରେ ସେ ଶୂନ୍ୟପ୍ରାଣ ହେଇଗଲେ ଯେମିତି । ସେ ଯାଏଁ 'ଡଗର' ତାଙ୍କୁ କାର୍ଯ୍ୟକ୍ଷମ କରି ରଖିଥିଲା । ତେଣିକି ପୂରାପୂରି 'ଅକ୍ଷମ' ମଣିଲେ ସେ ନିଜକୁ । ତା ସତ୍ତ୍ୱେ, ମୁଁ ଯେତେବେଳେ ଯାଇଛି, ହସି ହସି ଫେରିଛି । ବୋଧହୁଏ ନିଜ ସ୍ୱାର୍ଥରେ ପ୍ରତିଥର କଟକ ରହଣି ବେଳେ ସୁବିଧା ଉଣ୍ଡି ହସିବା ପାଇଁ ଯାଉଥିଲି ତାଙ୍କ ପାଖକୁ । କଥାବାର୍ତ୍ତାରେ ଆଦୌ ଆତ୍ମଦୟା ପ୍ରବୃତ୍ତି ନ ଥାଏ, ଅଭାବ ଅସୁବିଧାର ବର୍ଣ୍ଣନା ନ ଥାଏ । ଆର୍ଥିକ ସହାୟତା ତ ଦୂର କଥା, ମାନସିକ ସାହାଯ୍ୟ ବି ମାଗନ୍ତିନି କେବେ । ତାଙ୍କ ନିଜ ଚକ୍ରବ୍ୟୂହର ନିଜେ ଅଭିମନ୍ୟୁ ସେ । ସବୁ ଦୁଃଖ ଯନ୍ତ୍ରଣାକୁ ଗିଳିଭୁଞ୍ଜି ଦେଇଛନ୍ତି ଯେମିତି । ନିଜ ଦୁଃଖ କଥା କହି କାହାକୁ ଭାରାକ୍ରାନ୍ତ କରିବାକୁ ଚାହାନ୍ତିନି । ଶୈଶବରେ ବାପ ଛେଉଣ୍ଡ ହୋଇଛନ୍ତି; ଯୁବ ବୟସରେ ଆଖି ହରେଇଛନ୍ତି, କୁଷ୍ଠ ରୋଗଗ୍ରସ୍ତ ହେଇଛନ୍ତି; ପୈତୃକ ସମ୍ପତ୍ତି ହାତଛଡ଼ା ହେଇଛି; ପରିବାରଜନଙ୍କଠାରୁ ସେବା ଶୁଶ୍ରୁଷା ମିଳିନି; ନିଜ ନାଆର ଏକାକୀ ନାଉରୀ ସେ; ବାଆ ପାଣି ବି ତାଙ୍କର 'ସାଥ' ଦେଇନି; ତଥାପି ଯେମିତି ଦୁଃଖୀ ନୁହନ୍ତି ସେ । ଏ କି ଛୋଟିଆ ଯୁଗଦୃଷ୍ଟିଟିଏ ?

ତାଙ୍କ ମୃତ୍ୟୁର ଦୁଇ ତିନିବର୍ଷ ପୂର୍ବରୁ ତାଙ୍କ ଆଡୁ ଚିଠିର ଜବାବ ଆସିବା ବି ବନ୍ଦ ହେଇଗଲା । ସେତେବେଳେ ସୁଦୂର ଅରୁଣାଚଳ ପ୍ରଦେଶରେ ଅବସ୍ଥାପିତ ଥାଏଁ ମୁଁ । ପ୍ରତି ଚିଠିରେ ଅରୁଣାଚଳକୁ ନେଇ କେତେ ଜିଜ୍ଞାସା ଭରା ପ୍ରଶ୍ନ ରହୁଥିଲା ।

ଅରୁଣାଚଳର ସ୍ମୃତି ସବୁକୁ କାଗଜ କଲମରେ ସାଉଁଟିବାକୁ କହନ୍ତି । ନିଜ 'ଡଗର' ପରିଚାଳନା ଓ 'ଛାପାଖାନା'ର ଅନୁଭୂତି ସବୁକୁ ପୂର୍ଣ୍ଣତଃ ସାଉଁଟି ପାରିନଥିବାରୁ ମନ ଦୁଃଖ କରନ୍ତି । ଚିଠି ନ ଆସିବା ଯୋଗୁଁ ସବୁ ଯୋଗାଯୋଗ ଯେମିତି ବନ୍ଦ ହେଇଗଲା । ମୃତ୍ୟୁର କିଛି ମାସ ପୂର୍ବରୁ (୧୯୯୫ ମେ ମାସ) ଥରେ କଟକ ଆସିବା ଅବସରରେ ଭେଟିବାକୁ ଗଲି । ଭେଟିବା ଅବସ୍ଥାରେ ଆଉ ନ ଥିଲେ ସେ । ଏପରି କି 'ନମସ୍କାର'ର ବି କୌଣସି ଆବଶ୍ୟକତା ନ ଥିଲା । ତାଙ୍କର ସେହି ପୁରୁଣା ଖଟରେ ପଡ଼ିଥାନ୍ତି । ବୋଧହୁଏ ଚେତାଶୂନ୍ୟ ଅବସ୍ଥା । କଷ୍ଟ ଅନୁଭବ କରିବା ସ୍ଥିତିରେ ନାହାନ୍ତି । ଏ ଯାଏଁ ଜୀବନର ପ୍ରତିଟି ଯନ୍ତ୍ରଣାକୁ ହସି ଉଡ଼େଇ ଦେଇଥିବା ଫତୁରାନନ୍ଦଙ୍କୁ ଶେଷରେ କବଳିତ କଲାପରେ ବି, ପାଖରେ ପାଇଲା ପରେ ବି ଯନ୍ତ୍ରଣା ଯେମିତି ଜିତି ପାରି ନଥାଏ । ସେ ବଂଚିଛନ୍ତି, ଅଥଚ କଷ୍ଟଭୋଗ କରିବା ସ୍ଥିତିରେ ବି ନାହାନ୍ତି । 'ଯନ୍ତ୍ରଣା' ପାଇଁ ଯା'ଠାରୁ ବଡ଼ ଯନ୍ତ୍ରଣା ବା ଆଉ କ'ଣ ହୋଇପାରେ ? 'ଭେଟି' ସାରିବା ପରେ ପ୍ରଥମ ଥର ପାଇଁ ସେଦିନ ମୁଁ ଆଉ ହସି ପାରିଲି ନାହିଁ । ନିଜେ 'ଝିଅ' ହୋଇଥିଲେ କାନ୍ଦିଥାନ୍ତି ବୋଧେ । ମାତ୍ର ପଥର ହୃଦୟ ପୁରୁଷ ପିଲା ପାଇଁ କାନ୍ଦିବା ଏକ ଦୁର୍ବଳତା । ଫତୁରାନନ୍ଦଙ୍କର 'ଅନ୍ୟକୁ' ହସେଇ ପାରିବାର କଳାକୌଶଳ ପ୍ରଥମ ଥର ପାଇଁ ସେଦିନ ମୋ ଆଗରେ ଫେଲ୍ ମାରିଲା ବୋଧେ ।' ମନେହେଲା, ଯା ପରେ ତାଙ୍କ ବଞ୍ଚିବାର ଆଉ କୌଣସି ଯଥାର୍ଥତା ନାହିଁ । ଏଣିକି ସେ ଯେତେ ଶୀଘ୍ର 'ଚାଲିଯିବେ' ସେତେ ଭଲ । ମନେ ମନେ ହାତଯୋଡ଼ି କହିଲି । ପୀଠାପୁରର ଗଳି ରାସ୍ତାରେ ନିଜ ରହଣି ସ୍ଥଳକୁ ଚାଲି ଚାଲି ଫେରିବା ବେଳେ ମେ' ମାସର ଗରମ ବେଳୁ ବଳ ଦୁର୍ବିସହ ହେଉଥାଏ ।

□□

# ସୂର୍ଯ୍ୟକାନ୍ତ ଦାସ : କିଛିଟା ପରିଚିତିର ଆଧାରରେ

୧୯୯୧ ମସିହା କଥା । ଅରୁଣାଚଳ ରହଣି ସମୟରେ ପ୍ରକାଶିତ ମୋର କୌଣସି ଏକ ଲେଖାର ପ୍ରତିକ୍ରିୟା ରୂପେ ପୋଷ୍ଟ୍ କାର୍ଡ଼୍‌ଟିଏ ମିଳିଲା । ମାର୍ଜିନ୍‌କୁ ବାଦ୍ ଦେଲେ ଚିଠିରେ ଟିକିଏ ବି ଜାଗା ବଳିନି । ପୂରା ପୋଷ୍ଟ୍‌କାର୍ଡ଼୍ ସାରା ଲେଖା । ଜାଗାର ଅଧିକ ଉପଯୋଗ ପାଇଁ 'ଆପଣଙ୍କ ସୌଜନ୍ୟମୁଗ୍ଧ' ଓ ନିଜ ନାଁକୁ ତଳ-ଉପର ଦୁଇ ଧାଡ଼ିରେ ନ ରଖି ପତ୍ରପ୍ରେରକ ଗୋଟିଏ ଧାଡ଼ିରେ ରଖିଛନ୍ତି । ଚିଠିରେ ମୋ ଲେଖା ସଂପର୍କରେ, 'ଆପଣଙ୍କ ଅମୁକ ଲେଖାଟି ପଢ଼ିଲି', ବ୍ୟତୀତ ଆଉ କିଛି ଉଲ୍ଲେଖ ନାହିଁ । କେବଳ ଅନେକଗୁଡ଼ିଏ ଜିଜ୍ଞାସା-ଭରା ପ୍ରଶ୍ନ ଅରୁଣାଚଳକୁ ନେଇ ।

ପତ୍ରପ୍ରେରକଙ୍କ ନାଁ ସ୍ଥାନରେ ଉଲ୍ଲେଖ ଥିଲା, 'ସୂର୍ଯ୍ୟକାନ୍ତ ଦାସ, ଅବସରପ୍ରାପ୍ତ ବାଣିଜ୍ୟ ଅଧ୍ୟାପକ ।' ଦୁର୍ଭାଗ୍ୟକୁ ସେତେବେଳେ ସୂର୍ଯ୍ୟକାନ୍ତ ଦାସଙ୍କୁ ଜାଣି ନ ଥିଲି ଲେଖକ ଭାବରେ, ନା ଜାଣିଥିଲି ଜଣେ ପ୍ରବୁଦ୍ଧ ବାଣିଜ୍ୟ ଅଧ୍ୟାପକ ରୂପରେ । ଚିଠିରେ ଯେହେତୁ ମୋ ଲେଖାର ପ୍ରଶଂସା କିମ୍ବା ନିନ୍ଦା ବି ନଥିଲା, ପୋଷ୍ଟ୍‌କାର୍ଡ଼୍‌ଟି ଏମିତି ପଡ଼ି ରହିଲା । ଟେବୁଲ୍ ଉପରେ ବିନା ଆଦରରେ । ଦୁଇ ଦିନ ପଡ଼ିରହିଲା ପରେ ଅନ୍ୟ ଜଣେ ବନ୍ଧୁଙ୍କ ନଜରରେ ପଡ଼ିଲା ପତ୍ର ଏବଂ ପତ୍ର ପ୍ରେରକଙ୍କ ନାଁ । ତାଙ୍କଠାରୁ ଜାଣିଲି ଯେ, ସୂର୍ଯ୍ୟକାନ୍ତ ଦାସ ବାଣିଜ୍ୟ ପ୍ରଫେସର, ଚର୍ଚ୍ଚିତ ଲେଖକ ଏବଂ ଜଣେ ଅଭୂତପୂର୍ବ ଶିକ୍ଷକ । ବନ୍ଧୁଙ୍କ ଦ୍ୱାରା ସୂର୍ଯ୍ୟକାନ୍ତ ଦାସ ଆକସ୍ମିକ ଭାବେ ଆବିଷ୍କୃତ ହେବାପରେ ମୋ ନଜରରେ ଚିଠିଟିର ଓଜନ ବଢ଼ିଗଲା । ପନ୍ଦର ପଇସିଆ ପୋଷ୍ଟ୍ କାର୍ଡ଼୍‌ଟି ହଠାତ୍ ଅମୂଲ୍ୟ ମଣିରତ୍ନ ପରି ଡାଏରୀରେ ସଜା ସାଇତା ହେଲା । ଅନ୍ୟ ପକ୍ଷରେ ବନ୍ଧୁଙ୍କ ନଜରରେ ଲେଖକ ଭାବରେ ମୋର ମଧ୍ୟ ସମ୍ମାନ ବଢ଼ିଗଲା । ପାଖ ପଡ଼ୋଶୀ ହେବା ସତ୍ତ୍ୱେ ଆଜିଯାଏଁ ମୋର କୌଣସି ଲେଖା ପଢ଼ି ନ ଥିବା ବନ୍ଧୁ ଜଣକ ଏଣିକି ମୋ ଲେଖା ପ୍ରତି ଆଗ୍ରହ ଦେଖାଇଲେ । କଥା ଛଳରେ ବନ୍ଧୁଜଣକ ସୂର୍ଯ୍ୟକାନ୍ତ ଦାସଙ୍କ ସହ ନିଜର ଅନୁଭୂତି ବର୍ଣ୍ଣନା କଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ କୌଣସି ଏକ ସଭାରେ ମୁଖ୍ୟବକ୍ତା ରୂପେ 'ବୁଢ଼ା'ର ଆସିବାର ଥାଏ । ନିର୍ଦ୍ଧାରିତ ସମୟରେ 'ବୁଢ଼ା'କୁ ଆଉ କିଏ ଯାଇ ଆଣିବ କ'ଣ, ସେ ନିଜେ

ଶ୍ରୋତା ଓ ଆୟୋଜକଙ୍କ ପହଞ୍ଚିବା ଆଗରୁ ସଭା ମଞ୍ଚରେ ହାଜର । କିଛି ବେଳ ଅପେକ୍ଷା କଲା ପରେ ସୁଦ୍ଧା ଯେତେବେଳେ ଆୟୋଜକଙ୍କ ଦର୍ଶନ ମିଳିଲା ନାହିଁ, ସେ ସଭାସ୍ଥଳରୁ ଫେରି ମଧ୍ୟ ଆସିଲେ । 'ବୁଢ଼ା' ଶବ୍ଦର ତାଙ୍କ ନାଁ ସ୍ଥାନରେ ପ୍ରୟୋଗ ସତ୍ତ୍ୱେ ସୂର୍ଯ୍ୟକାନ୍ତ ଦାସଙ୍କ ପାଇଁ ବନ୍ଧୁଙ୍କ ମନରେ ଅନେକ ଭକ୍ତି !

ସୂର୍ଯ୍ୟକାନ୍ତ ଦାସଙ୍କୁ ଆବିଷ୍କାର କଲା ପରେ ସାଂଗେ ସାଂଗେ ମୁଁ ଉତ୍ତର ଲେଖିଲି । ତେଣିକି ପୁଣି ଚିଠି ଆସିଲା, ଏଥରର ମୁଖ୍ୟ ପ୍ରସଙ୍ଗ ଥିଲେ ଆମର ଜଣେ ସହଯୋଗୀ ଅଧ୍ୟାପକ ବନ୍ଧୁ । ସୂର୍ଯ୍ୟକାନ୍ତ ଦାସ ଓ ଆମ ଅଧ୍ୟାପକ ବନ୍ଧୁ ଏକା ସମୟରେ ନାଗାଲାଣ୍ଡ ବିଶ୍ୱବିଦ୍ୟାଳୟରେ କିଛି ସମୟ ପାଇଁ ଅବସ୍ଥାପିତ ଥିଲେ । ଏଥରର ଚିଠିରେ ଉକ୍ତ ଅଧ୍ୟାପକଙ୍କ ସୁଖଦୁଃଖ ଜାଣିବା ଥିଲା ତାଙ୍କ ପ୍ରମୁଖ ଉଦ୍ଦେଶ୍ୟ । ତା'ଛଡ଼ା, ଥରେ ନିଜେ ଅରୁଣାଚଳ ପ୍ରଦେଶକୁ ପରିଭ୍ରମଣରେ ଆସିବା ପାଇଁ ସେ ଆଗ୍ରହ ପ୍ରକାଶ କରିଥିଲେ ଏବଂ ତା' ପାଇଁ ବିଶ୍ୱବିଦ୍ୟାଳୟ ଅତିଥି ଗୃହରେ ରହଣିର ବ୍ୟବସ୍ଥା ହୋଇ ପାରିବ ନା ନାହିଁ ତଥା ସେଠି ପାଶ୍ଚାତ୍ୟ ଶୈଳୀର 'କମୋଡ୍' ପାଇଖାନା ଅଛି ନା ନାହିଁ ଜାଣିବାକୁ ଚାହିଁଥିଲେ । ଆଣ୍ଠୁ ଦରଜ ଯୋଗୁଁ କେବଳ ପାଶ୍ଚାତ୍ୟ ଶୈଳୀର ପାଇଖାନା ବ୍ୟବହାର କରିବା ତାଙ୍କ ପାଇଁ ସମ୍ଭବ ହେଉଥିଲା ।

ସୂର୍ଯ୍ୟକାନ୍ତ ଦାସଙ୍କୁ ଅଧିକରୁ ଅଧିକ ଜାଣିବା ଥିଲା ଏଣିକି ମୋ ପାଇଁ ଏକ ବିଶେଷ ଆଗ୍ରହ । ସହଯୋଗୀ ଅଧ୍ୟାପକ ବନ୍ଧୁ ଏଥିରେ ମୋତେ କିଛିଟା ସାହାଯ୍ୟ କଲେ । ତାଙ୍କ ମତରେ 'ବୁଢ଼ା ଭାରି ଭଲ ଲୋକ । ବିଶ୍ୱବିଦ୍ୟାଳୟର ଉପ-କୁଳପତି ଭାବରେ ନାଗାଲାଣ୍ଡରେ କାହାକୁ ହଇରାଣ କରିନି । ହେଲେ ଭାରି କୃପଣ ।' 'ବୁଢ଼ା'ର କୃପଣତାକୁ ଦର୍ଶାଇବା ପାଇଁ ସେ ଯେଉଁ ଉଦାହରଣ ଦେଲେ, ତାହା ଠିକ୍ ଏହିପରି । ଥରେ ଭୁଲ୍‌ବଶତଃ 'ବୁଢ଼ା'ଙ୍କ ଜମାଖାତାରେ ବ୍ୟାଙ୍କ ଦୁଇ ଟଙ୍କା କମ୍ ସୁଧ ହିସାବ କଲା । ବୁଢ଼ା ମୌଖିକ ଅଭିଯୋଗ କଲେ, କର୍ତ୍ତୃପକ୍ଷ ଗୁରୁତ୍ୱ ଦେଲେନି । ତେଣିକି ବୁଢ଼ା ଓ ବ୍ୟାଙ୍କ୍ କର୍ତ୍ତୃପକ୍ଷ ମଧ୍ୟରେ ଚାଲିଲା ପତ୍ର ଯୁଦ୍ଧ । ଉପର ଏବଂ ତା' ଉପର ବ୍ୟାଙ୍କ୍ କର୍ତ୍ତୃପକ୍ଷଙ୍କୁ ବୁଢ଼ା ଲେଖିଲେ । ସବୁଯାକ ରେଜିଷ୍ଟାର୍ଡ୍ ଚିଠି । ଖର୍ଚ୍ଚ ହୋଇଥିବା ଅନ୍ୟୂନ ଦୁଇ ଶହ ଟଙ୍କା । ଶେଷରେ ପାଇଲେ କେତେ ? ମାତ୍ର ଦୁଇ ଟଙ୍କା । କହିସାରି ବନ୍ଧୁ ଆମର ପ୍ରଶ୍ନ କଲେ, 'ଏତେ କୃପଣ ଲୋକ କେଉଁଠି ଦେଖିଛ ?' ପରେ ଅନେକ ଦିନ ଯାଏଁ ଏହି ଉଦାହରଣଟିକୁ ଉଲ୍ଲେଖ କରି ମୁଁ ବନ୍ଧୁଙ୍କ ଦୃଷ୍ଟି କେତେ ସ୍ଥୂଳ ଓ ପୃଥୁଳ, ତାହା ପ୍ରମାଣ କରିବାକୁ ଚେଷ୍ଟା କରେଁ । ଏହି ଉଦାହରଣଟିରୁ ସୂର୍ଯ୍ୟକାନ୍ତ ଦାସ କେତେ ମାତ୍ରାରେ ନିୟମବଦ୍ଧ, ତା'ର ସୂଚନା ମିଳେ ।

ମୁଁ ପଢୁଥିବା ହାଇସ୍କୁଲରେ 'ଆନନ୍ଦ ଛାତ୍ରବୃତ୍ତି' ନାମରେ ଏକ ମେଧାବୃତ୍ତି ମିଳୁଥିଲା । ଛାତ୍ରର ଉଭୟ ମେଧା ଓ ଆର୍ଥିକ ସ୍ଥିତିକୁ ଆଧାର କରି ତା' ପାଇଁ ଛାତ୍ର

ମନୋନୀତ ହେଉଥିଲେ । ଜଣେ ଆମେରିକୀୟଙ୍କ ପ୍ରଦତ୍ତ ପାଣ୍ଠିରେ ଓଡ଼ିଶାର ମାତ୍ର କେତୋଟି ହାଇସ୍କୁଲରେ ଏହି ଛାତ୍ର ବୃତ୍ତିର ବ୍ୟବସ୍ଥା ଥିଲା ବୋଲି ଆମେ ଛାତ୍ରମାନେ ଶୁଣୁ । ମତେ ମଧ୍ୟ ଉକ୍ତ ଛାତ୍ରବୃତ୍ତି ମିଳିଛି । ଆର୍ଥିକ ଦୃଷ୍ଟିରୁ ନ ହେଉ ପଛେ (ମାସକୁ ପନ୍ଦର ଟଙ୍କା ମିଳେ), ଆମମାନଙ୍କ ମନରେ ଆତ୍ମବିଶ୍ୱାସ ସୃଷ୍ଟି କରିବାରେ ତା'ର ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥିଲା ।

ପତ୍ର ସଂପର୍କ ହେଲା ପରେ ଗୋଟାଏ ଚିଠିରେ ସୂର୍ଯ୍ୟକାନ୍ତ ଦାସ ଲେଖିଲେ, 'ଆପଣ (ମୋର ସବୁ ବାରଣ ସତ୍ତ୍ୱେ ସେ 'ଆପଣ' ସଂବୋଧନ କରନ୍ତି) ସୋହେଲା ହାଇସ୍କୁଲରେ ପଢ଼ିବା ବେଳେ ଆନନ୍ଦ ଛାତ୍ରବୃତ୍ତି ପାଉଥିଲେ । ସେଠାରୁ ପାଠ ପଢ଼ି ଆଜି ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଛନ୍ତି । ଭଲ କଥା ।' ତାଙ୍କ କଥା ମୋତେ ଜ୍ୟୋତିଷର ବାଣୀ ପରି ମନେହେଲା କାରଣ ସେ ଯାଏଁ ମତେ ଜଣା ନଥିଲା ଯେ, ଛାତ୍ରବୃତ୍ତିର ମୁଖ୍ୟ ସଂଯୋଜକ ଥିଲେ ସେ । କିନ୍ତୁ ତା'ଠାରୁ ବଡ଼ କଥା ମୋ ପରି ଆନନ୍ଦ ମେଧାବୃତ୍ତିଧାରୀ ଛାତ୍ରମାନଙ୍କୁ ଫାଇଲ୍ ମାଧ୍ୟମରେ ହେଉ ପଛେ, ସେ ଅନ୍ତରଙ୍ଗ ଭାବେ ଜାଣିଥିଲେ ଏବଂ ପରେ କିଏ କ'ଣ କଲା, ତା'ର ଖବର ବି ରଖୁଥିଲେ ।

ବରଗଡ଼ରୁ ପ୍ରକାଶିତ 'ବିକଳ୍ପ ବିଚାର' ପତ୍ରିକାର ଏକ ଉପହାର କପି ତାଙ୍କ ପାଖକୁ ନିୟମିତ ପଠାଯାଏ । ପତ୍ରିକା ପାଇଁ ଯେତେଥର ତାଙ୍କୁ ଅନୁରୋଧ କରାଯାଇଛି, ପ୍ରତିଥର ନିର୍ଦ୍ଧାରିତ ସମୟ ସୀମା ପୂର୍ବରୁ ସେ ଲେଖା ପଠାଇଛନ୍ତି । ଗତ ଛଅମାସ ତଳେ ତାଙ୍କର ଏକ ଚିଠି ଆସିଲା, 'ସମୟ ଅଭାବରୁ ପତ୍ରିକାଟି ଆଉ ପଢ଼ି ହେଉନି । ତେଣୁ ପତ୍ରିକାଟିକୁ ମୋ ବଦଳରେ ଆଉ କାହାକୁ ପଠାଗଲେ ମୁଁ ଖୁସି ହେବି ।' ପତ୍ରପତ୍ରିକାର ପ୍ରକୃତ ଉପଯୋଗ ପାଇଁ ସେ କେତେ ଚିନ୍ତିତ ଥିଲେ, ତାହା ଏଥିରୁ ଅନୁମେୟ । ଭୁବନେଶ୍ୱର ରହଣି ବେଳେ ମୁଁ ତାଙ୍କ ପାଖକୁ ଯାଇଛି, ଫୋନ୍‌ରେ କଥାବାର୍ତ୍ତା କରିଛି, ସଭାସମିତିରେ ଭେଟିଛି, ଅନ୍ତତଃ ଦୁଇଥର ଅନ୍ୟ କାମରେ ଆମ ଅନୁଷ୍ଠାନକୁ ଆସିବା ବେଳେ ସେ ବନ୍ଧୁର ମର୍ଯ୍ୟାଦା ଦେଇ ମତେ ଭେଟିଛନ୍ତି । ଏସବୁ ସତ୍ତ୍ୱେ ତାଙ୍କ ସାଙ୍ଗରେ ମୋର ନିବିଡ଼ ସମ୍ପର୍କ ଓ ବନ୍ଧୁତା ଥିଲା ବୋଲି ଦାବି କରି ହେବନି; ପରିଚୟର ପରିମାଣ ସାମାନ୍ୟ ମାତ୍ର ! ଏସବୁ ସଂପର୍କ ମଧ୍ୟରେ ତାଙ୍କ ବିଚାର ଆଉ କାମ, ତଥା ସାମାଜିକ ଜୀବନ ଆଉ ବ୍ୟକ୍ତିଗତ ଜୀବନ ମଧରେ ସାମାନ୍ୟ ପାର୍ଥକ୍ୟଟିଏ ସୁଦ୍ଧା ଖୋଜି ପାଇନି । ସେ ଆଉ ମୋ ପାଇଁ ଆଲୋଚ୍ୟ ସ୍ତରରେ ରହି ନାହାନ୍ତି, ଆରାଧ୍ୟ ହୋଇ ଯାଇଛନ୍ତି । ତାଙ୍କ ସମୟ ନିଷ୍ଠା, ନିୟମବର୍ତ୍ତିତା, ମଣିଷ ପ୍ରତି ଅନାବିଳ ସ୍ନେହ ଏବଂ ସମାଜକୁ ଅଧିକରୁ ଅଧିକ ଭଲ ଭାବେ ଜାଣିବାର ଜିଜ୍ଞାସା ତାଙ୍କୁ ସେ ସ୍ତରକୁ ନେଇଯାଇଛି ।



# ଏତେ ପାଖ ଅଥଚ ଅପହଞ୍ଚ, ଏତେ ଜାଣି ବି ଅଜଣା

# ଜଣେ ଅନ୍ତରଙ୍ଗ ମଣିଷ : କିଶନ ପଟ୍ଟନାୟକ

ସତୁରୀ ଦଶକର ମଧଭାଗର କଥା, ପ୍ରାୟ ୧୯୭୩-୭୪ ମସିହା । କିଶନ ପଟ୍ଟନାୟକ(୧୯୨୯-୨୦୦୪) ଆସିଥାଆନ୍ତି ଆମ ଗାଁକୁ (ବରଗଡ଼ ଜିଲ୍ଲାର ଗର୍ଭଣା ଗାଁ) । ତାଙ୍କ ସାଙ୍ଗରେ ଥାନ୍ତି ବରଗଡ଼ ବାହାରୁ କେତେଜଣ ସମାଜବାଦୀ କର୍ମୀ । ଅନୌପଚାରିକ ଢଙ୍ଗରେ ଏକ ବୈଠକ ଚାଲିଥାଏ । ବୈଠକ ପରେ ଆମ ଗାଁର କେହି ଜଣେ ସଭାରେ ଉପସ୍ଥିତ ଜଣେ ଦର୍ଶକଙ୍କର ପରିଚୟ ଦେଲେ, 'ତପନ ସାହୁ, ଏ ଅଞ୍ଚଳର ପ୍ରଥମ ସମାଜବାଦୀ କର୍ମୀ । ଗର୍ଭଣା ତଥା ଆଖ ପାଖ ଅଞ୍ଚଳର ଘରେ ଘରେ ସେ କିଶନ ବାବୁଙ୍କୁ ୧୯୬୦-୬୧ ମସିହାରେ ପରିଚିତ କରାଇଛନ୍ତି ।'

ମୋର ହେତୁ ହେଲା ଦିନରୁ ଲକ୍ଷ୍ୟ କରିଛି, ଆମ ଗାଁ ସମେତ ଆଖପାଖର କେତୋଟି ଗାଁ ହେଲେ ସମାଜବାଦୀ ଦଳର ଅଭେଦ୍ୟ ଦୁର୍ଗ । ନିର୍ବାଚନ ବେଳେ ନିଜ ଘରୁ ଖାଇ ଲୋକମାନେ ସାଇକଲ ଚଢ଼ି ଗାଁ ଗାଁ ବୁଲି ସମାଜବାଦୀ ଦଳ ଅର୍ଥାତ୍ 'କିଶନ ବାବୁଙ୍କ ଦଳ' ପାଇଁ ଭୋଟ ପ୍ରଚାର କରନ୍ତି, ବ୍ୟକ୍ତିଗତ ସ୍ତରରେ ଅନୁରୋଧ ଜଣାଇ ଆତ୍ମୀୟ, ବନ୍ଧୁବାନ୍ଧବଙ୍କୁ ସମାଜବାଦୀ ପ୍ରାର୍ଥୀଙ୍କ ପାଇଁ ସମର୍ଥନ ଭିକ୍ଷା କରନ୍ତି । ନିଜର କୌଣସି ସାମାନ୍ୟତମ ସ୍ୱାର୍ଥ ନାହିଁ । ନିଃସ୍ୱାର୍ଥ ନିଃସର୍ତ୍ତ ଭାବେ ଜଣେ ସାମାଜିକ କାମ କରୁଛି ତ, ବେଶ୍ ତା ପଛରେ ଛିଡ଼ା ହେବାର ଦମ୍ଭ ଓ ଆଗ୍ରହ । ସେହି ନିଶାରେ ଲୋକ କିଶନ ବାବୁଙ୍କ ସମର୍ଥକ । କିଶନ ବାବୁଙ୍କ ସହ ନିଜକୁ ଯୋଡ଼ି ଲୋକ ଭାବନ୍ତି ସମାଜବାଦକୁ ପାଇଛନ୍ତି । ଅମୂର୍ତ୍ତ ତତ୍ତ୍ୱ ଓ ଚିନ୍ତନ ଲୌକିକ ସ୍ତରରେ ମୂର୍ତ୍ତ ଅଭିବ୍ୟକ୍ତ ହେବା କାଳରେ ବ୍ୟକ୍ତିସତ୍ତାର ରୂପ ନିଏ ! ସମାଜବାଦୀ ଦଳ, କିଶନ ପଟ୍ଟନାୟକ ଓ ନିଷ୍ଠାପର ସମାଜକାମ— ଗାଁ ଲୋକଙ୍କ ଆଖିରେ ଏ ତିନୋଟି ପରିପୂରକ ଶବ୍ଦ ମାତ୍ର । ଗୋଟିଏକୁ ଅଲଗା କରି ଅନ୍ୟକୁ ଗ୍ରହଣ ଅବା ପରଖ କରାଯାଇ ପାରେ ନା !

ସେତେବେଳେ କଂଗ୍ରେସ ଦଳ ଥାଏ ଶାସନ ଗାଦିରେ । ସବୁଆଡ଼େ ତା'ର ପ୍ରଭୂତ ପ୍ରଭାବ । କଂଗ୍ରେସର ସମର୍ଥନ ଅର୍ଥ ସରକାରର ପ୍ରୀତିଭାଜନ ହେବା ।

ସ୍ଥାନୀୟ କଂଗ୍ରେସ୍ ନେତାମାନେ ଆସି ଅନେକ ପ୍ରଲୋଭନ ଦେଖାନ୍ତି ଆମ ଗାଁବାଲାଙ୍କୁ । କେହି କେହି କହନ୍ତି, ସମାଜବାଦୀ ଦଳର ସମର୍ଥନ କରି ଗାଁ ଅନେକ ସରକାରୀ ସହାୟତାରୁ ବଞ୍ଚିତ ହୋଇଛି, ସରକାର ଦ୍ୱାରା ସର୍ବଦା ଉପେକ୍ଷିତ । ତଥାପି ଗାଁ ଲୋକଙ୍କ ଖାତିର୍ ନାହିଁ । ସ୍ରୋତର ପ୍ରତିକୂଳରେ ଯିବା ଲୋକ ବି ଆତ୍ମିକ ସୁଖ ଅନୁଭବ କରେ । ସେହି ଆଧାରରେ, ବୋଧହୁଏ ଗାଁଲୋକ ଗର୍ବିତ ଯେ କିଶନ ବାବୁଙ୍କ ପରି ଜଣେ ସ୍ୱଚ୍ଛ, ନିଷ୍ପାପର ରାଜନୀତିଜ୍ଞଙ୍କ ରାଜନୀତିର ସେମାନେ ସହଭାଗୀ । କେହି ଯଦି ନିଃସ୍ୱାର୍ଥପର ଭାବେ ସମୂହ ପାଇଁ କିଛି କାମ କରୁଛି ତେବେ ଗାଁରେ ଲୋକ କହନ୍ତି, 'କିଶନ ପଟ୍ଟନାୟକ ପରି କାମ କରୁଛି ।' ଗାଁ ନଜରରେ 'ନିଷ୍ପାପର କାମ'ର ଏକ ପର୍ଯ୍ୟାୟବାଚୀ ପ୍ରତୀକାତ୍ମକ ଶବ୍ଦ ହୁଏ 'କିଶନ ପଟ୍ଟନାୟକ' ।

ସେହି ପିଲାଦିନେ ମନରେ କୌତୂହଳ ସୃଷ୍ଟି ହୁଏ, କିଏ ଆଗ କରି ଆଣିଥିବ ଆମ ଗାଁକୁ କିଶନ ବାବୁଙ୍କୁ ? କିଏ, ଭଗୀରଥ ପରି, ଗାଁରେ ସମାଜବାଦୀ ଦଳର ଆଦର୍ଶ, ଲକ୍ଷ୍ୟ ଓ ଅଭିପ୍ରାୟର ନିରୁତାପଣ ବଖାଣିଥିବ ? ପ୍ରଥମ ସଭାରେ ଗାଁର କେଉଁ ଲୋକ ବାଢ଼ିଥିବ କିଶନ ବାବୁଙ୍କ ପରିଚୟ ? କାରଣ ଆମେ ଜାଣୁ, ସ୍ଥାନୀୟ ସାହାଯ୍ୟ ବିନା କୌଣସି ତତ୍ତ୍ୱ ଓ ଆଦର୍ଶ ଗାଁ ସମାଜରେ ଚେର ମାଡ଼େ ନା । କେବଳ ବାହାର ଲୋକଙ୍କ ଭରସାରେ ଆସିଥିବା ତତ୍ତ୍ୱ ଚେର ନ ମାଡୁଣୁ ବାହାରକୁ ବାହାରିଯାଏ ବାହାର ଲୋକଙ୍କ ପରି । ସେ ଦିନର ସେହି ବୈଠକ ପରେ ପ୍ରଶ୍ନଗୁଡ଼ିକର ଉତ୍ତର ମିଳିଗଲା ମତେ । ଗାଁବାସୀ ତପନ ସାହୁଙ୍କ ନୂଆଁ ପରିଚୟ ଶୁଣି, ତେଣିକି ମନେ ମନେ ତାଙ୍କ ବ୍ୟକ୍ତିତ୍ୱକୁ ତର୍ଜମା କରିବାକୁ ଚେଷ୍ଟା କଲି । ତପନ ସାହୁ । ବୟସ ଷାଠିଏ-ସତୁରୀ ବର୍ଷ ହେବ ସେତେବେଳକୁ । ସାଧାରଣ ଚାଷୀ ଜଣେ । ଗାଁର ମୁଖ୍ୟ ଲୋକଙ୍କ ଭିତରେ କଦାଚିତ ତାଙ୍କୁ ଗଣାଯାଏନି । ନିରକ୍ଷର ନିଶ୍ଚୟ । ଦେହ କେବେ କୁରୁତା ଖଣ୍ଡିଏ ପିନ୍ଧି ନ ଥିବ । ଗାଁ ବାହାରେ ତାଙ୍କ ଦୁନିଆର ସୀମା ପାଞ୍ଚ କିଲୋମିଟର ଦୂର ସୋହେଲା ହାଟରୁ ଆଉ ଆଗକୁ ନୁହେଁ । ନିଜର କୌଣସି ବ୍ୟକ୍ତିଗତ, ରାଜନୈତିକ ଉଚ୍ଚାଭିଳାଷ ନାହିଁ । କୌଣସି ଅନୌପଚାରିକ ସଭାର ଅନୌପଚାରିକ ମଞ୍ଚରେ ବି ସେ କେବେ ଆସୀନ ହୋଇ ନ ଥିବେ । ଗାଁ ପଞ୍ଚାୟତର ସଭ୍ୟ ବି ନୁହଁନ୍ତି । ଅନ୍ୟ ପକ୍ଷରେ, କିଶନ ବାବୁଙ୍କ ଜ୍ଞାତି ପରିଜନ ବି ନୁହଁନ୍ତି । ବୟସରେ କିଶନ ବାବୁଙ୍କଠାରୁ ଯଥେଷ୍ଟ ବଡ଼ । ଏସବୁ ସତ୍ତ୍ୱେ କ'ଣ ବିଶେଷତ୍ୱ ସେ ଦେଖିଛନ୍ତି କିଶନ ବାବୁଙ୍କ ଠାରେ ଯେ, ଆଜୀବନ ତାଙ୍କୁ ଛାଡ଼ି ଯାଇ ପାରି ନାହାନ୍ତି । ଭୋଟ ବେଳେ କିଶନ ବାବୁଙ୍କ ପାଇଁ ପ୍ରଚାର କରିଛନ୍ତି । କିଶନ ବାବୁଙ୍କୁ ଶୁଣିବା ପାଇଁ କ୍ଷେତ ଖଳା ଛାଡ଼ି ଧାଇଁ ଆସିଛନ୍ତି । କିଶନ ବାବୁଙ୍କ ସପକ୍ଷରେ ଯୁକ୍ତି-

ପ୍ରତିଯୁକ୍ତି ବାଢ଼ିଛନ୍ତି । ଗାଁର ସେହି ଅଗଣିତ ତପନ ସାହୁମାନଙ୍କର ଏ ଯେଉଁ ନିଷ୍ଠା, କିଶନ ବାବୁ ଏବଂ ତାଙ୍କ ରାଜନୀତିକୁ ପରଖିବା ସକାଶେ ସର୍ବଦା ମୋ ଆଗରେ କଷଟି ପଥର ତୁଲ୍ୟ କାମ କରିଛି । ପରେ ଭିନ୍ନ ଭିନ୍ନ ମତାଦର୍ଶର ସଂସର୍ଗରେ ଆସି ବାଟ ହୁଡ଼ିବାର ସଂଧିକ୍ଷଣରେ ପହଁଚିଛି ଯେତେବେଳେ, ଆଗକୁ ଆସିଛନ୍ତି କିଶନ ବାବୁ, ତାଙ୍କ ସାଙ୍ଗରେ ଆସିଛନ୍ତି ଆମ ଗାଁର ତପନ ସାହୁମାନେ । ଷାଠିଏ-ସତୁରୀ ବର୍ଷ ବୟସର ସରଳ ନିଷପଟ ମଣିଷମାନେ ସେମାନେ । ଜୀବନକୁ ଜୀଇଁବା ଅବସରରେ କୁଢ଼ କୁଢ଼ ସେମାନଙ୍କର ଅନୁଭୂତି । ମାଡ଼ି ନ ଥାନ୍ତୁ ପଛେ ବିଶ୍ୱବିଦ୍ୟାଳୟର ବାଟମୁହଁ । ନ ଥାଉ ପଛେ ସେମାନଙ୍କ ନାଁ ଆଗରେ ତତ୍ତ୍ୱବିଦର ସଂଜ୍ଞା ! ତଥାପି ଜୀବନର ଏତେ ଲମ୍ୱା ସିଡ଼ି ଚଢ଼ିବା ଅବସରରେ ଯଦି କିଶନ ବାବୁଙ୍କ ବ୍ୟକ୍ତିତ୍ୱ ଓ ଚିନ୍ତନରେ ସେମାନେ ଭୁଲଭଟକା ଦେଖି ନାହାନ୍ତି, ସେତକ କ'ଣ ବଡ଼ କଥା ନୁହେଁ ?

୧୯୮୨ ମସିହାରେ ଉଚ୍ଚଶିକ୍ଷା ପାଇଁ ଦିଲ୍ଲୀ ଯିବାକୁ ପଡ଼ିଲା । ସ୍ଥିର କରିଥାଏଁ, ଯଦି କେହି ପଚାରନ୍ତି, କେଉଁଠି ଘର, ମୋର ଉତ୍ତର ହେବ, 'ଓଡ଼ିଶା' । ଆଶଙ୍କା ଥାଏ, ଆମ ଗାଁ କଥା ତ ଛାଡ଼, ସମ୍ୱଲପୁରର ନାଁ ବି ବୋଧେ ଲୋକ ଦିଲ୍ଲୀରେ ଶୁଣି ନଥିବେ । ସତକଥା । ବଡ଼ ଯାଗାରେ ସାନ ପରିଚୟଟି ସଭା ହରାଏ । ସୁତରାଂ ତାକୁ ଯଥାସମ୍ଭବ ବଡ଼ ପରିଚୟ ସାଙ୍ଗରେ ଯୋଡ଼ି ରଖିବାକୁ, ଘୋଡ଼ି ରଖିବାକୁ ପଡ଼େ । ସମ୍ୱଲପୁରରେ ମଧ୍ୟ ଆମ ଗାଁର ସ୍ୱତନ୍ତ୍ର ପରିଚୟ ରହିପାରେ ନା, ବରଗଡ଼ର ବଡ଼ ପରିଚୟ ଭିତରେ ତାକୁ ସମାହିତ ହେବାକୁ ପଡ଼େ । ସତକୁ ସତ, ଦିଲ୍ଲୀ ରହଣିର ଦୁଇଦିନ ପରେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଜଣେ ଛାତ୍ର ପଚାରିଲେ, 'କେଉଁଠି ଘର ?' ମୋର ପୂର୍ବ ପ୍ରସ୍ତୁତି ମତେ ଉତ୍ତର ଦେଲି 'ଓଡ଼ିଶା' । ତେଣିକି ନୂଆଁ ପରିଚିତ ବନ୍ଧୁଜଣକ ପଚାରିଲେ, 'କିଶନ ପଟ୍ଟନାୟକ'ଙ୍କ ନାଁ ଶୁଣିଛ ? ଥରେ ସେ ସମ୍ୱଲପୁରରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ ।' ବନ୍ଧୁଙ୍କ ମନ୍ତବ୍ୟ ଶୁଣି ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏଠି ବି କିଶନ ବାବୁ ଏତେ ଜଣାଶୁଣା ? କ'ଣ ଏଠି କିଶନ ପଟ୍ଟନାୟକଙ୍କ ପରିଚୟର ବ୍ୟାପକ ପରିଧି ଭିତରେ ସମ୍ୱଲପୁର ଓ ଓଡ଼ିଶାକୁ ଖୋଜିବାକୁ ପଡ଼ିବ ? ସେହି ପ୍ରଥମ ଘଟଣା ମୋତେ ଜେ.ଏନ୍.ୟୁ ପରିସରରେ ଦୁନିଆଁର ବା ସମାଜର 'ଉନ୍ନତି ଓ ପ୍ରଗତି' କୁ ଓଲଟା ଦେଖିବାକୁ ଅନୁପ୍ରେରିତ କଲା । ଯାହା ଦେଖନ୍ତି ଆମେ, ତାହା ହୁଏତ ସତ୍ୟ ବି ହୋଇ ନ ପାରେ । ତେଣୁ, ତାକୁ ଓଲଟା କରି ଦେଖିବାର ଆବଶ୍ୟକତା ଅଛି ।

ନେହେରୁ ବିଶ୍ୱବିଦ୍ୟାଳୟ ସେତେବେଳେ ପ୍ରଗତିଶୀଳ ରାଜନୀତିର ଏକ ପ୍ରମୁଖ ଦୁର୍ଗ । ଛାତ୍ର, ଶିକ୍ଷକ, କର୍ମଚାରୀ ସମସ୍ତେ ସେଠି ତତ୍ତ୍ୱ ଓ ଆଦର୍ଶକୁ

ରାଜନୀତିରେ ଖୋଜି ପାଆନ୍ତି । ରାଜନୀତି ସେଠି ଘୃଣ୍ୟ, ପରିତ୍ୟଜ୍ୟ ନୁହେଁ, ବରଂ ଜୀବନର ଜଟିଳତାକୁ ବୁଝିବା ନିମିତ୍ତ ଏକ ଚାବିକାଠି । ୧୯୮୦ ଦଶକରେ ବିଶ୍ୱବିଦ୍ୟାଳୟର ଛାତ୍ର ରାଜନୀତିରେ ଥିଲେ ଦୁଇଟି ପ୍ରମୁଖ ଗୋଷ୍ଠୀ । ପ୍ରଥମ ଗୋଷ୍ଠୀର (ଏସ୍.ଏଫ୍.ଆଇ. ଓ ଏ.ଆଇ.ଏସ୍.ଏଫ୍.) ଆଦର୍ଶ ସାମ୍ୟବାଦ, ଅନ୍ୟଟିର (ସମତା ଯୁବଜନ ସଭା ବା ଏସ୍.ୱାଇ.ଏସ୍) ଆଦର୍ଶ ସମାଜବାଦ । ଏ ଦୁଇ ଗୋଷ୍ଠୀକୁ ବାଦ୍ ଦେଲେ ଏକ ମୁକ୍ତ ଚିନ୍ତକ ବା ଫ୍ରି ଥିଙ୍କର୍ସ ଗୋଷ୍ଠୀ ବି ଥାଆନ୍ତି । ଛାତ୍ର ରାଜନୀତିରେ ଆଦୌ ଉପସ୍ଥାନ ନ ଥିଲା ସାମ୍ପ୍ରଦାୟିକ ଏ.ବି.ଭି.ପି. ଓ କଂଗ୍ରେସୀ ଏନ୍.ଏସ୍.ୟୁ.ଆଇ.ର । ସେ ଯାହାହେଉ, ସାମ୍ୟବାଦୀ ଛାତ୍ର ସଭାକୁ ବ୍ୟାଖ୍ୟାନ ଦେବାକୁ ଆସନ୍ତି ଇ.ଏମ୍.ଏସ୍. ନମ୍ବୁଦ୍ରିପଦ, ସି.ରାଜେଶ୍ୱର ରାଓ ଓ ଅଶୋକ ମିତ୍ର ଆଦି, ଆଉ ସମାଜବାଦୀ ଗୋଷ୍ଠୀର ମୁଖ୍ୟ ଆକର୍ଷଣ ହେଲେ କିଶନ ପଟ୍ଟନାୟକ । ବର୍ଷକୁ ଚାରି ପାଞ୍ଚ ଥର ବକ୍ତୃତା ହୁଏ କିଶନ ବାବୁଙ୍କର । କେବେ ସମ୍ପ୍ରଦାୟବାଦ ପ୍ରଶ୍ନକୁ ନେଇ ତ କେବେ ଆସାମ ଛାତ୍ର ଆନ୍ଦୋଳନର ମହତ୍ତ୍ୱକୁ ନେଇ, ତ ପୁଣି ଆଉ କେବେ ସାମ୍ପ୍ରତିକ ଯୁଗରେ ମହାତ୍ମା ଗାନ୍ଧିଙ୍କର ପ୍ରାସଙ୍ଗିକତାକୁ ନେଇ । ଏହି କାରଣରୁ ଅଶୀ ଦଶକରେ ସେଠି ପାଠ ପଢ଼ିଥିବା ଏମିତି କେହି ଛାତ୍ର ନ ଥିବେ, ଯିଏ କିଶନ ବାବୁଙ୍କ ନାଁ ଶୁଣି ନ ଥିବେ, ବକ୍ତୃତା ଶୁଣି ନ ଥିବେ । ଏହିଭଳି ରାଜନୀତିକରଣର ପରିଣାମ ସ୍ୱରୂପ, ୧୯୮୨ ମସିହାରେ ସମାଜବାଦୀ ଗୋଷ୍ଠୀ ଛାତ୍ର ସଂସଦ ନିର୍ବାଚନ ଜିଣିଲେ । ଆସାମ ଛାତ୍ର ଆନ୍ଦୋଳନର ସମର୍ଥନରେ ଦିଲ୍ଲୀରୁ ଗୌହାଟୀ ସାଇକଲ୍ ଯାତ୍ରା ଏବଂ ଅକାଳୀ ଆନ୍ଦୋଳନକୁ ନେଇ ଜନସଚେତନତା ସୃଷ୍ଟି କରିବା ପାଇଁ ଦିଲ୍ଲୀରୁ ଅମୃତସର ପଦଯାତ୍ରାର ଆୟୋଜନ ମଧ୍ୟ ନେହେରୁ ବିଶ୍ୱବିଦ୍ୟାଳୟର ସମାଜବାଦୀ ଛାତ୍ରମାନଙ୍କ ଦ୍ୱାରା ୧୯୮୦ ଦଶକରେ ସମ୍ଭବପର ହୋଇଥିଲା । ଆଜି ସେମାନଙ୍କ ମଧ୍ୟରୁ ଅନେକ ଛାତ୍ର ସମାଜବାଦୀ ଆଦର୍ଶକୁ ଜୀବନର ଦୀକ୍ଷା ରୂପେ ଗ୍ରହଣ କରିଛନ୍ତି । ଉଚ୍ଚ ବେତନ ଓ ବଡ଼ ପଦପଦବୀର ମୋହ ଛାଡ଼ି ସେମାନେ ସମାଜ କାମ ପାଇଁ ସମର୍ପିତ ପୂର୍ଣ୍ଣକାଳୀନ କାର୍ଯ୍ୟକର୍ତ୍ତା ହୋଇଛନ୍ତି । ସେମାନଙ୍କର ରାଜନୈତିକ ଦୀକ୍ଷା ଓ ତ୍ୟାଗ ମୂଳରେ କିଶନ ପଟ୍ଟନାୟକ ଯେ ଅନ୍ତରଙ୍ଗ ଭାବେ ଜଡ଼ିତ— ଏଥିରେ ଆଦୌ ଅତିଶୟୋକ୍ତି ନାହିଁ ।

କିଶନ ବାବୁଙ୍କ ପ୍ରତି ବଡ଼ ଆକର୍ଷଣ ହେଲା ତାଙ୍କ ବକ୍ତୃତା । କୌଣସି କୃତ୍ରିମତା ନ ଥାଏ ଅଭିବ୍ୟକ୍ତିରେ । ପ୍ରତିଟି ଯୁକ୍ତିରେ ବକ୍ତାର ନିଷ୍ଠା ଓ ପ୍ରତିବଦ୍ଧତା ସୁସ୍ପଷ୍ଟ । ବିଷୟ ସହ ବକ୍ତା କିଶନ ବାବୁଙ୍କ ସମ୍ବନ୍ଧ ଏତେ ଅନ୍ତରଙ୍ଗ ଯେ, ବକ୍ତୃତାର ଶୈଳୀ, ଭାଷା, ବ୍ୟାକରଣଗତ ଶୁଦ୍ଧି-ଅଶୁଦ୍ଧି ପ୍ରଶ୍ନ ଶ୍ରୋତା ଆଗରେ କେବଳ ଗୌଣ ହୁଅନ୍ତି ନାହିଁ, ବରଂ ଉଭେଇ ଯାଆନ୍ତି । ବକ୍ତବ୍ୟର ପରିପାଟୀ ଆପେ ଆପେ ପରିସ୍ଫୁଟ,

ମୂର୍ତ୍ତ ହୋଇପଡ଼େ । ତା ସତ୍ତ୍ୱେ, କିଶନ ବାବୁଙ୍କ ବ୍ୟକ୍ତିତ୍ୱ ଏମିତି ଯେ, ତାଙ୍କ ଆଗରେ ତାଙ୍କ ବକ୍ତୃତାର ପ୍ରଶଂସା କରିବା ବି ଅସମ୍ଭବ ମନେ ହୁଏ । ଯେମିତି 'ବାସ୍ତବିକତା'କୁ 'ଭଲ' ବା 'ଖରାପ' ଆଦି ବିଶେଷଣ ଦ୍ୱାରା ପରିଭାଷିତ କଲେ, ବିଶେଷଣମାନ ନିଜ ଓଜନ ହରାନ୍ତି, କିଶନ ବାବୁଙ୍କ ବକ୍ତୃତାକୁ ପ୍ରଶଂସା କଲେ ପ୍ରଶଂସକ ହାଲୁକା ପଡ଼ିଯିବାର ଡର ରହେ । ଆମ ଗାଁର ମାଟି ପିଣ୍ଡାରେ ଆଣ୍ଠୁ ପାରି ଖାଣ୍ଟି ସମ୍ବଲପୁରୀରେ ଶହ ଶହ ତପନ ସାହୁମାନଙ୍କ ଆଗରେ ବିଶ୍ୱ ରାଜନୀତିର ଗୂଢ଼ତତ୍ତ୍ୱ ବଖାଣୁଥିବା ସେହି କିଶନ ପଟ୍ଟନାୟକ ପୁଣି ଦିଲ୍ଲୀର ବୁଦ୍ଧିଜୀବୀ ମହଲରେ ସୁନ୍ଦର ହିନ୍ଦୀ ଓ ନିର୍ଭୁଲ ଇଂରାଜୀରେ ନର-ନାରୀ, ଜଗତିକରଣ, ଟେକନୋଲୋଜି ଆଦି ପ୍ରଶ୍ନ ଉପରେ ନିଜ ବିଚାରକୁ ଏତେ ତର୍କସାପେକ୍ଷ, ଯୁକ୍ତିନିଷ୍ଠ କରି ବାଢ଼ି ପାରନ୍ତି– ଏହା ନ ଦେଖିବା, ନ ଶୁଣିବା ଲୋକ ବିଶ୍ୱାସ ହୁଏତ କରିବ ନି । କେବଳ ତତ୍ତ୍ୱ ନୁହେଁ, ସଠିକ୍ ଓ ସରଳ ଶବ୍ଦ ଚୟନ ପାଇଁ ମଧ୍ୟ ତାଙ୍କର ପ୍ରତ୍ୟେକ ବକ୍ତବ୍ୟ ଓ ଲେଖା ଅନନ୍ୟ । ସାଂପ୍ରତିକ ବିଶ୍ୱ ସମାଜର ଜଟିଳତାକୁ ଅଭିବ୍ୟକ୍ତ କରିବା ଅବସରରେ ସେ ଶ୍ରୋତାକୁ ବୁଝାନ୍ତି ଯେତେ, ତା'ଠାରୁ ଅଧିକ ବୁଝନ୍ତି ବୋଧେ ନିଜେ । ଫଳରେ ତାଙ୍କ ଭାଷାରେ ଅନେକ ନୂଆଁ ଶବ୍ଦ ମିଳେ । ନିଜେ ସବୁକିଛି ବୁଝି ଥିବାର ଆତ୍ମଗର୍ବ ତାଙ୍କର ପାଖ ମାଡ଼େନି ବୋଲି, ଗ୍ରହଣଶୀଳତା ତାଙ୍କ ବକ୍ତୃତାର (ଏବଂ ଲେଖାର) ଏକ ପ୍ରମୁଖ ବୈଶିଷ୍ଟ୍ୟ ହୁଏ । ଯେହେତୁ କିଛି ଜ୍ଞାନ ଦାନ କରିଥିବାର ଅଭିମାନ ନ ଥାଏ ତାଙ୍କ ଠାରେ, ପ୍ରତିଦାନରେ ପ୍ରଶଂସା ବା ଆଉ କିଛି ପାଇବାର ବ୍ୟାକୁଳତା ବି ନ ଥାଏ ତାଙ୍କ ଆଚରଣରେ ।

୧୯୮୯ ଲୋକସଭା ନିର୍ବାଚନ ସମୟର କଥା । ଅନେକ ଦିନରୁ ପ୍ରସ୍ତୁତି ହୋଇଥାଏ, କିଶନ ବାବୁ ସମ୍ବଲପୁର ଲୋକସଭା ଆସନ ପାଇଁ ସ୍ୱାଧୀନ ପ୍ରାର୍ଥୀ ହେବେ । ୧୯୮୦ ମସିହାରେ ତାଙ୍କ ନେତୃତ୍ୱରେ ଗଠିତ 'ସମତା ସଂଗଠନ' ଦଶ ବର୍ଷ ଯାଏ ନିର୍ବାଚନ ନ ଲଢ଼ି ରାଜନୈତିକ ପ୍ରସ୍ତୁତି କରିବ ବୋଲି ଯେଉଁ ନିଷ୍ପତ୍ତି ନେଇଥିଲା, ତାର ମିଆଦ ପୁରୁଥାଏ ସେତେବେଳେ । ବିଶ୍ୱନାଥ ପ୍ରତାପ ସିଂ (ଭି.ପି.ସିଂ) କଂଗ୍ରେସ ଦଳରୁ ଇସ୍ତଫା ଦେବା ପରେ ଲୌକିକ ସ୍ତରରେ କଂଗ୍ରେସ ବିରୋଧୀ ଜନମତ ବୃଦ୍ଧି ପାଇଥାଏ । ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ସେହି ବିରୋଧୀ ଜନମତର କର୍ଣ୍ଣଧାର ସାଜିଥାଏ । କିଶନ ବାବୁଙ୍କୁ ସମ୍ବଲପୁରରୁ ଜନତା ଦଳର ପ୍ରାର୍ଥୀ ହେବାକୁ ଅର୍ଥାତ୍ ଦଳୀୟ ଚିହ୍ନ ନେବାକୁ ଖୋଲାଖୋଲି ନିମନ୍ତ୍ରଣ ମିଳିଥାଏ । ହେଲେ କିଶନ ବାବୁଙ୍କ ତର୍କ କଂଗ୍ରେସର ପ୍ରାର୍ଥୀକୁ ପରାଜିତ କରିବା ଯଦି ମୁଖ୍ୟ ଉଦ୍ଦେଶ୍ୟ, ଜନତା ଦଳ ନିଜେ ପ୍ରାର୍ଥୀ ନ ଦେଇ

ସମ୍ବଲପୁରରେ ତାଙ୍କ ସମର୍ଥନ କରୁ । ଅନ୍ୟ ଅର୍ଥରେ, ଜନତା ଦଳର ପ୍ରାର୍ଥୀତ୍ୱ ତାଙ୍କ ପାଇଁ କେବେ ଗ୍ରହଣୀୟ ହୋଇ ନ ପାରେ ।

କିଶନ ବାବୁଙ୍କ ଅନେକ ଶୁଭଚିନ୍ତକ ମଧ୍ୟ ଜନତା ଦଳର ସର୍ତ୍ତକୁ ମାନିନେବାକୁ ଚାପ ଦେଲେ । ଜନତା ଦଳକୁ ଏ କିଶନବାବୁଙ୍କୁ ଦିଆ ସର୍ତ୍ତ ମଞ୍ଜୁର ହେବ ନାହିଁ । ତାଙ୍କ ବିରୋଧୀ ପ୍ରାର୍ଥୀ କଂଗ୍ରେସ ବିରୋଧୀ ଜନମତର ଲାଭ ଉଠାଇବ । ତ୍ରିକୋଣୀୟ ପ୍ରତିଦ୍ୱନ୍ଦ୍ୱିତାରେ କିଶନ ବାବୁ ପରାଜିତ ହେବେ । ମୋଟ କଥା ହେଲା, ଜନତା ଦଳର ନିର୍ବାଚନ ସଂକେତ ନେଇ ଲୋକସଭାକୁ ଗଲା ପରେ ପାର୍ଲାମେଣ୍ଟକୁ ମଞ୍ଚ ରୂପେ ବ୍ୟବହାର କରାଯାଇପାରେ ବିକଳ୍ପ ରାଜନୀତିର ପ୍ରଚାର- ପ୍ରସାର ପାଇଁ । ଆମେ ନିଜ ନିଜ ଭିତରେ କଥାବାର୍ତ୍ତା କଲା ବେଳେ କିଶନ ବାବୁଙ୍କ ସହ ଅସହମତି ପ୍ରକାଶ କରି କହୁଁ, 'କିଶନ ବାବୁ ଜାଣି ଶୁଣି ଅତି ସହଜରେ ସାଂସଦ ହେବାର ସୁଯୋଗକୁ ହାତଛଡ଼ା କରୁଛନ୍ତି ।' କିଶନ ବାବୁଙ୍କର କିନ୍ତୁ ଦୃଢ଼ ଯୁକ୍ତି, ''ଜନତା ଦଳ କେବେ ବିକଳ୍ପ ରାଜନୀତି ନିମିତ୍ତ ପ୍ରକୃଷ୍ଟ ମଞ୍ଚ ହୋଇ ନ ପାରେ । ଜନତା ଦଳ ସହ ନିଜକୁ ଯୋଡ଼ିଲେ ତାତ୍କାଳିକ ଲାଭ ସିନା ହେବ— ସେ ଭିନ୍ନ କଥା । ମାତ୍ର ଲୋକସଭାକୁ ନିର୍ବାଚିତ ହେବା ଅପେକ୍ଷା ସାମ୍ପ୍ରତିକ ସମାଜ ପାଇଁ ଅଧିକ ଆବଶ୍ୟକ ଦୀର୍ଘସ୍ଥାୟୀ ବିକଳ୍ପ ରାଜନୀତିର ।' ତେଣିକି ନିର୍ବାଚନରେ ଜନତା ଦଳ ପ୍ରାର୍ଥୀ ଦେଲେ, ତ୍ରିକୋଣୀୟ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇ କିଶନ ବାବୁ ପରାଜିତ ହେଲେ । କଂଗ୍ରେସ ଓ ଜନତା ଦଳର ଦଳାଦଳିରେ ସ୍ୱାଧୀନ ପ୍ରାର୍ଥୀର ବା ସ୍ଥାନ କେଉଁଠି ?ହେଲେ ମାତ୍ର ଦୁଇ ବର୍ଷ ପରେ ଯେତେବେଳେ ଜନତା ଦଳର ରାଜନୈତିକ ଅଧୋପତନ ଘଟିଲା, ଭି.ପି. ସିଂ ବା ଚନ୍ଦ୍ର ଶେଖରଙ୍କ ହାତରେ ସରକାର ତିଷ୍ଠି ପାରିଲା ନାହିଁ ବୋଲି ଲୋକସଭା ଭାଙ୍ଗିଲା, ଆମେ ସମସ୍ତେ ବୁଝିଲୁ କିଶନ ବାବୁଙ୍କ ଦୂରଦୃଷ୍ଟି କେତେ ଗଭୀର ଓ ପରିବ୍ୟାପ୍ତ । ମାତ୍ର ଦୁଇ ବର୍ଷ ପାଇଁ ଜନତା ଦଳର ଅନୁକମ୍ପାରେ ସେ ଯଦି ସାଂସଦ ହୋଇଥାନ୍ତେ ତାଙ୍କ ବିକଳ୍ପ ରାଜନୈତିକ ଚିନ୍ତନକୁ କିଏ ବା ଭରସା କରିଥାନ୍ତା ? ବ୍ୟକ୍ତିଗତ ଲାଭକ୍ଷତିର ଊର୍ଦ୍ଧ୍ୱକୁ ଅକ୍ଳେଶରେ ଉଠି ପାରିବାର ଯେଉଁ ମୋହମୁକ୍ତି ଓ ମାନସିକ ପରିପକ୍ୱତା ଲୋଡ଼ା, ତା ଯୋଗୁଁ କିଶନ ବାବୁଙ୍କ ବ୍ୟକ୍ତିତ୍ୱ ଓ ଚିନ୍ତନ ପରସ୍ପର ଭିତରେ ସମାହିତ ହୋଇ ରହି ପାରୁଥିଲେ । ଦୁହିଁଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ନ ଥିଲା ।

୧୯୮୯ ନିର୍ବାଚନ ପ୍ରଚାର ବେଳର କଥା । ବିଜେପୁରରେ ତାଙ୍କ ସଭା ଭଣ୍ଡୁର କରିବା ପାଇଁ ଜନତା ଦଳ ଲୋକ ଉଦ୍ୟମ କଲେ । ସଭା ଭଣ୍ଡୁର ହେବା ଅର୍ଥ କିଶନ ବାବୁଙ୍କୁ ଅପମାନିତ କରିବା । ସଭାମଞ୍ଚ ଉପରକୁ ଟେକା ପଥର ମାଡ଼ ହେଲା । ସଭାରେ ମୁଁ ନିଜେ ଉପସ୍ଥିତ ଥିଲି । ଦେହରେ ଟେକାପଥର ବାଜିବାରୁ ଆମେ ସବୁ ଇତସ୍ତତ ହେଲୁଁ, ଉଦ୍‌କ୍ଷିପ୍ତ ମଧ୍ୟ । ମାତ୍ର କିଶନ ବାବୁ କୌଣସି ପ୍ରତିକ୍ରିୟା

ପ୍ରକାଶ ନ କରି ନିର୍ବିକାର ଚିତ୍ତରେ ଅବିଚଳିତ ଭାବେ ମଞ୍ଚ ଉପରେ ଛିଡ଼ା ହୋଇଥାନ୍ତି । ନିଜ ଉପରେ ପଡୁଥିବା ଧୂଳି, ବାଲି, ଗୋଡ଼ି, ପଥର, ଅଶ୍ରାବ୍ୟ ଗାଳିଗୁଲଜ ପ୍ରତି କୌଣସି ଭ୍ରୂକ୍ଷେପ ନାହିଁ । ଶେଷରେ ପୋଲିସ ତାଙ୍କୁ କର୍ଡନ୍ କରି ବାହାରକୁ ଆଣିଲା । ବାହାରକୁ ଆସିବା ପରେ ତାଙ୍କର ପ୍ରଥମ ପ୍ରଶ୍ନ, 'ପରବର୍ତ୍ତୀ ସଭା ପାଇଁ ଏବେ କେଉଁଠିକି ଯିବାର ଅଛି ?' ମୁଁ ଉତ୍ତର ଦେଲି, 'ବିଞ୍ଝେପୁର ସଭା ପରେ ପାଣିମୋରାରେ ସଭା ପାଇଁ ଯୋଜନା ଥିଲା । କିନ୍ତୁ ଏ ଘଟଣା ପରେ ସେଠାକୁ ଯିବା କି ଆଉ ଉଚିତ ହେବ ?' କିଶନ ବାବୁଙ୍କ ପାଲଟା ପ୍ରଶ୍ନ, 'କାହିଁକି ? ଚାଲ ସେଠିକି ଯିବା ।' ମନେହେଲା, ହାରିବା, ଥକିବା କିମ୍ବା ବ୍ୟକ୍ତିଗତ ଭାବେ ଅପମାନିତ ବୋଧ କରିବା ତାଙ୍କ ଧାତକରେ ନାହିଁ ।

ଯା ପରେ ଆମେ ପାଣିମୋରା ଗଲୁଁ । ସେଠି ରୀତିମତ ସଭା ହେଲା । କିଶନ ବାବୁଙ୍କ ଭାଷଣରେ ବିଞ୍ଝେପୁର ଗଣ୍ଡଗୋଳର କୌଣସି ସୂଚନା ନାହିଁ । ଜହ୍ନ ଆଲୁଅରେ ଗାଁ ମନ୍ଦିର ପିଣ୍ଡାରେ ତାଙ୍କ ବକ୍ତୃତା ଶୁଣି ସେଦିନ ଲାଗୁଥିଲା, ବିକଳ୍ପ ରାଜନୀତିର ପ୍ରସାର ପାଇଁ ସେ ଲୋକସଭାର ସଭାଗୃହଠାରୁ ଏଭଳି ଅବସରକୁ କମ୍ ମହତ୍ତ୍ୱପୂର୍ଣ୍ଣ ମନେ କରନ୍ତି ନାହିଁ । ସେଇଥିପାଇଁ ବୋଧହୁଏ ତାଙ୍କ ବ୍ୟକ୍ତିତ୍ୱକୁ ସାଂସଦ ହେବାର ମୋହ କାବୁ କରି ପାରେ ନା । ସଭା ପରେ ଜଣେ ଶ୍ରୋତା ବିଞ୍ଝେପୁର ଘଟଣା କଥା ପଚାରିଲେ । ଯାହା ଯେମିତି ଘଟିଥିଲା, ସେ ଅବିକଳ ସବୁ କିଛି କହିଗଲେ । କୌଣସି ଅତିରଞ୍ଜନ ନାହିଁ, କୃତ୍ରିମତା ନାହିଁ । ସବୁକିଛି ଖୋଲି କହି ପାରିବାର ସେହି ସାମର୍ଥ୍ୟ ତାଙ୍କୁ ବିଞ୍ଝେପୁର ପରି ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ସ୍ଥିର, ପ୍ରଶାନ୍ତ, ଅବିଚଳ ଓ ବସ୍ତୁନିଷ୍ଠ ରହିବାରେ ସାହାଯ୍ୟ କରେ । ଟେକା ପଥର ଓ ଅଶ୍ରାବ୍ୟ ଗାଳି ତାଙ୍କ ବ୍ୟକ୍ତିତ୍ୱ ଓ ଚିନ୍ତନକୁ କେବେ ଦୁର୍ବଳ କରିପାରେ ନା, ଆଘାତ ଦେଇ ପାରେନା ।

ବିଞ୍ଝେପୁର ଗଣ୍ଡଗୋଳର ଖଳନାୟକ ବୋଲି ଯାହାଙ୍କୁ କୁହାଗଲା, ସେ ଥିଲେ କିଶନ ବାବୁଙ୍କ ଜଣେ ପୂର୍ବ ପରିଚିତ । ଲୋକସଭା ପରେ ହେବାକୁ ଥିବା ବିଧାନ ସଭା ନିର୍ବାଚନ ବେଳେ ଜନତା ଦଳର ଟିକେଟ ପାଇବା ଆଶାରେ କୁଆଡ଼େ ସେ ସଭା ଭଣ୍ଡୁର କରାଇଥିଲେ । ଅବଶ୍ୟ ପରେ ତାଙ୍କୁ ବିଧାନ ସଭା ପାଇଁ ଟିକେଟ ମଧ୍ୟ ମିଳିଲା ନାହିଁ । ଏହି ଘଟଣାର କିଛି ବର୍ଷ ପରେ ଥରେ ସେ ବେମାର ପଡ଼ିଲେ । ବିଞ୍ଝେପୁରରେ କିଶନ ବାବୁଙ୍କର ଏକ କାର୍ଯ୍ୟକ୍ରମ ଥାଏ । କାର୍ଯ୍ୟକ୍ରମ ସାରି ସେ ଉକ୍ତ ରୋଗାକ୍ରାନ୍ତ ବନ୍ଧୁଙ୍କୁ ଭେଟିବାକୁ ଗଲେ । ବନ୍ଧୁ ଜଣକ କୁଆଡ଼େ କିଶନ ବାବୁଙ୍କୁ ପାଖରେ ପାଇ ଭୋ ଭୋ ହୋଇ କାନ୍ଦି ପକାଇଲେ । ଏତେ ଅପମାନିତ କଲା ପରେ ବି କିଶନ ବାବୁ ଯେ ପୁଣି ରୋଗଶଯ୍ୟାରେ ତାଙ୍କୁ ଭେଟିବାକୁ ଆସିବେ- ଏ

ଆଶା ବା ସେ କରନ୍ତେ କେମିତି ? କିଶନ ବାବୁଙ୍କ ପାଇଁ କେହି ପର ନୁହଁନ୍ତି । କାହାରି ସାଙ୍ଗରେ ତାଙ୍କର ବ୍ୟକ୍ତିଗତ ଶତ୍ରୁତା, ମନ ଅମେଳ ନ ଥାଏ । ସବୁ ସମ୍ବନ୍ଧ ତାଙ୍କର ବ୍ୟକ୍ତିଗତ ସମ୍ବନ୍ଧ ଏବଂ ସବୁ ବ୍ୟକ୍ତିଗତ ସମ୍ବନ୍ଧକୁ ସେ ଏକ ସାମାଜିକ ଓ ରାଜନୈତିକ ପ୍ରକ୍ରିୟାର ପରିଧି ଭିତରେ ସୀମିତ ରଖି ପାରନ୍ତି । ଏହି କାରଣରୁ, ଏକଦା ଅତି ଅନ୍ତରଙ୍ଗ ଥିବା ସହକର୍ମୀ ବି ଯେତେବେଳେ ତାଙ୍କର କ୍ଷମତାଶୂନ୍ୟ ରାଜନୀତି ଛାଡ଼ି କ୍ଷମତା ରାଜନୀତିରେ ପଶନ୍ତି କିଶନ ବାବୁ ଭାଙ୍ଗି ପଡ଼ନ୍ତି ନାହିଁ କିମ୍ବା ଉକ୍ତ 'କ୍ଷମତାଧାରୀ' ସହକର୍ମୀର ସାହଚର୍ଯ୍ୟ ମାଗନ୍ତି ନାହିଁ । ବରଂ ନୂଆଁ ସହକର୍ମୀ ତିଆରିରେ ଲାଗି ପଡ଼ନ୍ତି । ଲାଗେ, ନିରନ୍ତର ସହକର୍ମୀ ଓ ସମାଜକର୍ମୀ ତିଆରିବା କିଶନ ବାବୁଙ୍କ ଜୀବନର ବ୍ରତ ଥିଲା; ଯେଣିକି ରାଜନୈତିକ ଓ ସାମାଜିକ ସଂଘର୍ଷ ବ୍ୟକ୍ତିଗତ ସ୍ତରରେ ନ ରହି ସାମୂହିକ ହେବ, ସାମଗ୍ରିକ ହେବ !!

୨୦୦୦ ମସିହା କଥା । କିଶନ ବାବୁଙ୍କ ହିନ୍ଦୀ ଭାଷାରେ ରଚିତ ''ବିକଳ୍ପହୀନ ନହିଁ ହେ ଦୁନିଆଁ'' ପୁସ୍ତକ ଉନ୍ମୋଚିତ ହେବାର ଖବର ମିଳିଲା । ସ୍ଥାନ ଦିଲ୍ଲୀର ରାଜେନ୍ଦ୍ର ଭବନ ସଭା କକ୍ଷ । ମନରେ ଆଶଂକା ସୃଷ୍ଟି ହେଲା, ମହାନଗରୀର କର୍ମ ଜଂଜାଳ ଓ ନାହିଁ ନଥିବା ବ୍ୟସ୍ତତା ଭିତରେ କ'ଣ ଉନ୍ମୋଚନ ଉତ୍ସବକୁ ଲୋକ ଜୁଟିବେ ? କିଶନ ବାବୁଙ୍କର ନା ପଦପଦବୀ ଅଛି, ନା ଅଛି ବଡ଼ ସମାଜସେବୀର ନାମଫଳକ । ଏସବୁ ନଥିଲେ କିଏ ବା ଲେଖକଙ୍କୁ ଆଦର କରି ଆସିବ ? ଉତ୍ସବକୁ କୌଣସି ଛୋଟ ସଭାଗାରରେ ପାଳନ କରିବା କଥା ଥିଲା । ହେଲେ ମୋର ଆଶଂକାର କୌଣସି ଆଧାର ନ ଥିଲା । ମୋର ସେଠି ପହଞ୍ଚିଲା ବେଳକୁ ସଭାଗୃହ ଭର୍ତ୍ତି । କିଛି ଲୋକ ବସିବାକୁ ଜାଗା ନ ପାଇ ଛିଡ଼ା ହେଲେଣି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଧୀରୁଭାଇ ସେଠ, କୃଷ୍ଣ କୁମାର, ସମାଜବାଦୀ ସୁରେନ୍ଦ୍ର ମୋହନ, କବି ଗିରିଧର ରାଠୀ ପୁସ୍ତକଟିର ଯେଉଁ ଅନ୍ତରଙ୍ଗ ସମୀକ୍ଷା ପ୍ରସ୍ତୁତ କଲେ, ତାହା ମୋ ପରି କିଶନ ବାବୁଙ୍କ ପ୍ରତ୍ୟେକ ପରିଚିତଙ୍କୁ ଆନନ୍ଦରେ ଅଧୀର କରି ପକାଇଥିବ ନିଶ୍ଚୟ ! ତତ୍ ସହ ଦୁଃଖ ମଧ୍ୟ ଲାଗିଲା, ମୋ ପରି ବ୍ୟକ୍ତି ଅବସର ମିଳିବା ସତ୍ତ୍ୱେ କିଶନ ବାବୁଙ୍କୁ ଯଥେଷ୍ଟ ଅଧ୍ୟୟନ କରନ୍ତି ନାହିଁ, ଏତେ ପାଖରେ ପାଇ ସୁଦ୍ଧା ତାଙ୍କ ଜୀବନଶୈଳୀକୁ ଆପଣେଇ ପାରନ୍ତି ନାହିଁ, କେବଳ ତାଙ୍କର ଆଉ କେହି ପ୍ରଶଂସା କଲେ ଆତ୍ମବିଭୋର ହୋଇପଡ଼ନ୍ତି । ଏତେ ପାଖରେ ଥାଇ ବି କିଶନ ବାବୁ ଅପହଞ୍ଚ ହୋଇ ପଡ଼ନ୍ତି ଆମ ପାଇଁ । ତାଙ୍କ ଭଳି ବିବେକର ବାଣୀକୁ ଶୁଣି, ଆହ୍ୱାନକୁ ସମ୍ବଳ କରି ଆମେ ଜୀଇଁବା ଜାଣନ୍ତି ନାହିଁ । ଏହା କେବଳ ଆମର ଦୁର୍ଭାଗ୍ୟ ନୁହେଁ, ସମସାମୟିକ ଯୁଗର ଏକ ବ୍ୟାଧି ଓ ବିଲକ୍ଷଣ ମଧ୍ୟ ।

◘◘

ସମକାଳୀନ ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ ଇତିହାସ ଜଗତରେ ଅଧ୍ୟାପକ ପ୍ରୀତୀଶ ଆଚାର୍ଯ୍ୟ ସୁପରିଚିତ । ସେ ନୂତନ ରଙ୍ଗ ରାଗରେ ସାହିତ୍ୟର ସମାଲୋଚନା କରିବା ସହିତ ଇତିହାସର ସମୀକ୍ଷା ଭିନ୍ନ ଭାବରେ କରିଛନ୍ତି । ତାଙ୍କର ଜନ୍ମ ୯ ମାର୍ଚ୍ଚ ୧୯୬୩ ବରଗଡ଼ ଜିଲ୍ଲାର ଗର୍ଭଣା ଗ୍ରାମରେ । ସେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ନୂଆଦିଲ୍ଲୀରୁ ଇତିହାସରେ ସ୍ନାତକୋ-ତ୍ତର ଶିକ୍ଷା ସମାପ୍ତ କରି ୧୯୮୯ରୁ ୧୯୯୭ ପର୍ଯ୍ୟନ୍ତ ଅରୁଣାଞ୍ଚଳ ବିଶ୍ୱବିଦ୍ୟାଳୟ, ଇଟାନଗରରେ ଇତିହାସ ଅଧ୍ୟାପକ, ୧୯୯୭ରୁ ଏନ୍.ସି.ଇ.ଆର୍.ଟିରେ ଇତିହାସ ପ୍ରାଧ୍ୟାପକ ଭାବରେ ଅବସ୍ଥାପିତ । ସଂପ୍ରତି ଭୁବନେଶ୍ୱର-ସ୍ଥିତ ଆଂଚଳିକଶିକ୍ଷା ପ୍ରତିଷ୍ଠାନରେ କାର୍ଯ୍ୟରତ ।

ଗଳ୍ପ ସଂକଳନ- 'ପୌଷ ପାହିଲେ ଯାଇ (୧୯୮୬)', 'ଆତ୍ମଲିପି (୧୯୮୯)' 'ପାତ୍ରୀ ଅନ୍ୱେଷଣ (୨୦୦୧)' ।

ନିବନ୍ଧ- ଅପନିନ୍ଦା ଉପାଖ୍ୟାନ (୨୦୦୪) ।

ଅନୁବାଦ - ସାଂପ୍ରଦାୟିକତା ଏକ ପରିଚୟ (୨୦୦୪), ଇନ୍ଦିରା ଗାନ୍ଧି (୨୦୦୭) ।

ସଂପାଦନା ଓ ସଂକଳନ- ସ୍ମୃତିରେ ଶିକ୍ଷକ (୨୦୦୬) ଗ୍ରନ୍ଥ ପ୍ରଭୃତି ପ୍ରୀତୀଶ ଆଚାର୍ଯ୍ୟ ସାରସ୍ୱତ ପ୍ରତିଭାର ପରିଚୟ ଦିଏ ।

'ଇତିହାସର ସମୀକ୍ଷା' ଏକ ନବଦିଗନ୍ତର ସନ୍ଧାନ ଦେବ ଆମର ଆଶା ।

ପ୍ରକାଶକ